

ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱତା ।
ପ୍ରଣୀତଂ ପ୍ରଭୁଦତ୍ତେନ ମାଲା 'ଭଗବତୀ କଥା' ॥

: ଶ୍ରୀ ହରି :

# ଭାଗବତ କଥା

( ପଞ୍ଚାଶତ୍ ଖଣ୍ଡ )

ଲେଖକ :

ପୂଜ୍ୟପାଦ ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ଅନୁବାଦ :

ପଣ୍ଡିତ ଉପେନ୍ଦ୍ର ନାଥ ହୋତା

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

( ପଞ୍ଚାଶତ୍ତମ ଖଣ୍ଡ )

ପ୍ରକାଶକ :
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ—ଅକ୍ଷୟ ତୃତୀୟା—୧୯୯୫

ପ୍ରକାଶନ ଉପଦେଷ୍ଟା ଓ ସମ୍ପାଦନା :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ମୁଦ୍ରଣ :
ଶଶିକା ପ୍ରିଣ୍ଟିଂ ପ୍ରେସ
ଅଲିଶାବଜାର, କଟକ-୨

ମୂଲ୍ୟ : ଟ ୩୦-୦୦ ମାତ୍ର

# BHAGABAT KATHA

50th Part

*Publisher* :
Cuttack Students' Store
Balubazar, Cuttack-753002

*Editor & Publication Adviser* :
Sri N. P. Mishra

First Edition : 1995

Price : Rs. 30·00 only

# ସୂଚୀ

# ଧର୍ମରାଜଙ୍କର ରାଜସୂୟ ଯଜ୍ଞ

**ମେନିରେ କୃଷ୍ଣଭକ୍ତସ୍ୟ ସପପନ୍ନମବିସ୍ମିତାଃ ।**
**ଅଯାଜୟନ୍ ମହାରାଜଂ ଯାଜକା ଦେବବର୍ଚସଃ ।**
**ରାଜସୂୟେନ ବିଧିବତ୍ ପ୍ରାଚେତସମିବାମରାଃ ॥ ※**

(ଶ୍ରୀ ଭା : ୧୦ ସ୍କ. ୭୪ ଅ. ୧୬ ଶ୍ଲୋକ)

## ଛପ୍‌ପୟ

ଜରାସନ୍ଧ ବଧ ବୃତ୍ତ ସୂନତ ନୟନନ ଜଲ ଛାୟେ ।
ନୃପତି ଭୟେ ଅତି ଦୀନ ବିନମ୍ରଯୁତ ବଚନ ସୁନାୟେ ॥
ପ୍ରଭୋ ! ଆପଇ ରାଜସୂୟକୀ ଦୀକ୍ଷା ଲେବେଂ ।
ଅଥବା ସେବକ ସମୁଝି ଦାସ କୁଁ ଆୟସୁ ଦେବେଂ ॥
ବୋଲେ ହରି —'କୁରୁ କୁଲ ତିଲକ ! ରାଜସୂୟ ମଖ କରହୁ ତୁମ ।
ଭରେ କୋଷ ଜୀତେ ନୃପତି, ସନ୍ମୁଖ ସେବକ ସକଲ ହମ ॥

ଯାଗ-ଯଜ୍ଞାଦି ଶୁଭକର୍ମ ତାହାଙ୍କର ସଫଳ ହୁଏ, ଭଗବାନ ଯାହାଙ୍କ ଉପରେ କୃପା କରନ୍ତି । ଭଗବତ୍ କୃପା ବିନା ଶୁଭକର୍ମ ଆଦୌ ସମ୍ପନ୍ନ ହୋଇପାରେ ନାହିଁ । ଭଗବଦ୍‌ଭକ୍ତ ଯାହା ଚାହାନ୍ତି ତାହା କରିପାରନ୍ତି । ଯାହାଙ୍କ ହୃଦୟରେ ଶ୍ୟାମସୁନ୍ଦର ବିଦ୍ୟମାନ, ତାଙ୍କ ପକ୍ଷେ ଏ ସଂସାରରେ କୌଣସି କଥା ଅସାଧ୍ୟ ନୁହେଁ । କଠିନ କାର୍ଯ୍ୟ

---

※ ବୋଲନ୍ତି ଶୁକ ମହାଯତି । ଶୁଣ ରାଜନ କୁରୁପତି ॥
ଧର୍ମନନ୍ଦନ ଯଜ୍ଞକାଳେ । ବନ୍ଧୁ ଗୋବିନ୍ଦ ପାଦତଳେ ॥ × × ×
ପ୍ରକୃତି ସଙ୍ଗତେ ମିଳିଲେ । ଧର୍ମନନ୍ଦନ ଯଜ୍ଞ କାଳେ ॥ × × ×
ସେ ରାଜସୂୟ ଯଜ୍ଞ ବିଧି । କରାଇ ସକଳ ସମୃଦ୍ଧି ॥
ବରୁଣ ଯଜ୍ଞେ ଦେବଗଣେ । ଯେମନ୍ତେ ଥିଲେ ଜମସ୍ତଣେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ମ ସ୍କ. ୭୧ ଅ.)

ତାଙ୍କ ପାଇଁ ସରଳ ହୋଇଯାଏ ଓ ଅସମ୍ଭବ ବି ସମ୍ଭବ ହୋଇଯାଏ । ଏଥିପାଇଁ ଭଗବାନଙ୍କ ପାଦପଦ୍ମରେ ପ୍ରେମ ହେଉ, ଏହି କଥାର ସତତ ପ୍ରଯତ୍ନ କରିବା ଉଚିତ୍ । ଭଗବାନଙ୍କଠାରେ ଭକ୍ତ ହୋଇଗଲେ ଜଗତର ବୃହତ୍ତରୁ ବୃହତ୍ତମ କାର୍ଯ୍ୟ ଅତି ସହଜରେ ହୋଇଯାଏ ।

ସୂତ କହିଲେ—"ମୁନିଗଣ ! ଯେତେବେଳେ ଭଗବାନ ଶ୍ରୀକୃଷ୍ଣଙ୍କ କୃପାରୁ ପୃଥିବୀର ସମସ୍ତ ରାଜା ଧର୍ମରାଜଙ୍କ ଅଧୀନ ହୋଇଗଲେ, ସେତେବେଳେ ତାଙ୍କର କୋଷାଗାର ଧନ, ରତ୍ନ, ଓ ମଣିମାଣିକ୍ୟରେ ପୂର୍ଣ୍ଣ ହୋଇଗଲା । ସେ ଦିନେ ଭଗବାନଙ୍କୁ ଅତ୍ୟନ୍ତ ନମସ୍କାର ସହିତ କହିଲେ—'ହେ ଯଦୁନନ୍ଦନ ! ଆପଣଙ୍କ ଅନୁଗ୍ରହରୁ ମୁଁ ଅନୁଭବ କରୁଛି ଯେ, ଏବେ ରାଜସୂୟ ଯଜ୍ଞ ହୋଇପାରିବ । ପୃଥିବୀରେ ଏବେ ଏପରି କୌଣସି ରାଜା ନାହାନ୍ତି, ଯିଏକି ଆପଣଙ୍କ ଅଧୀନତା ସ୍ୱୀକାର ନ କରିଛନ୍ତି । ଇନ୍ଦ୍ରପ୍ରସ୍ଥର କୋଷାଗାରରେ ଏତେ ଅଧିକ ଧନ ଭରିଗଲାଣି ଯେ, ତାହା ବର୍ଷ ବର୍ଷ ଧରି ଖର୍ଚ୍ଚ କଲେ ମଧ୍ୟ ଶେଷ ହୋଇପାରିବ ନାହିଁ । ତେଣୁ ମୁଁ ଇଚ୍ଛା କରୁଛି ଇନ୍ଦ୍ରପ୍ରସ୍ଥରେ ରାଜସୂୟ ଯଜ୍ଞ ହେଉ ଓ ଆପଣ ଯଜ୍ଞର ଦୀକ୍ଷା ନିଅନ୍ତୁ । କାରଣ ସମସ୍ତ ଯଜ୍ଞ କରିବା, କରାଇବାବାଲା ଓ ଭୋକ୍ତା ଫଳଦାତା ହିଁ ଆପଣ । ଆପଣ ହିଁ ହବି, ଆପଣ ହିଁ ଅର୍ପଣ, ଆପଣ ହିଁ ଅଗ୍ନି, ଆପଣ ହିଁ ଯଜମାନ, ଋତ୍ୱିକ, ସଦସ୍ୟ ଓ ସଭାପତି ଅଟନ୍ତି । ତେଣୁ ଆପଣ ଭଗବତୀ ରୁକ୍ମିଣୀଙ୍କ ସହିତ ରାଜସୂୟ ଯଜ୍ଞରେ ଦୀକ୍ଷିତ ହୁଅନ୍ତୁ ।"

ଏହା ଶୁଣି ଭଗବାନ ହସି ହସି କହିଲେ—"ଧର୍ମରାଜ ! ରାଜସୂୟ ଯଜ୍ଞ କରିବାର ଯୋଗ୍ୟତା ତ ଆପଣଙ୍କଠାରେ ରହିଛି । ଆପଣ ଦ୍ରୌପଦୀଙ୍କ ସହିତ ଯଜ୍ଞର ଦୀକ୍ଷା ନିଅନ୍ତୁ । ଆପଣଙ୍କର ସମସ୍ତ ଆଜ୍ଞା ପାଳନ କରିବା ପାଇଁ ଆମେ ସବୁ ସେବକ ଏଠାରେ ସମୁପସ୍ଥିତ । ଆପଣ ଆଉ ବିଳମ୍ବ କରନ୍ତୁ ନାହିଁ ।"

ଏହା ଶୁଣି ଧର୍ମରାଜ ଅତିଶୟ ଆନନ୍ଦିତ ହେଲେ । ସେ ନଗର ରକ୍ଷକ ଓ ମନ୍ତ୍ରିମାନଙ୍କୁ ଡକାଇ ସେମାନଙ୍କୁ କହିଲେ—"ରାଜସୂୟ ଯଜ୍ଞ କରାଯିବ । ଦହି, ଦୁଧ ଓ ଘିଅ ଆଦି ରଖିବା ପାଇଁ ବଡ଼ ବଡ଼ ଚକ୍‌କଣ ପକ୍‌କା କୁଣ୍ଡ ତିଆରି କରାଅ ଯେଉଁଥିରେ କି ମୁହଁ ଦେଖାଯିବ । ସେହି କୁଣ୍ଡଗୁଡ଼ିକୁ ଢାଙ୍କିବା ପାଇଁ ଚନ୍ଦନକାଠର ଘୋଡଣୀ ତିଆରି ହେବ । ଚାଳ, ଡାଲି, ଓ ଚାଉଳ ଆଣାଇ ପର୍ବତ ପରିମାଣରେ ଜମାଇ ଦିଅ । ଗୁଡ଼, ଶର୍କରା ଆଦି ଖାରି ଖାରି ତଥା ବସ୍ତା ବସ୍ତା କରି ଆଣାଇ ଜମାଇ ଦିଅ । ବ୍ରାହ୍ମଣମାନଙ୍କ ପାଇଁ ସୁନ୍ଦର ସ୍ୱାଦିଷ୍ଟ ପଦାର୍ଥ ଏକତ୍ରିତ କରାଅ । ଭଲ ଭଲ ମିଠେଇ ତିଆରି କରିବା ପାଇଁ ଦେଶବିଦେଶରୁ ଗୁଡ଼ିଆମାନଙ୍କୁ ଡକାଅ । ସାରାଂଶ ଏହି ଯେ, ଯେପରି ଯଜ୍ଞରେ କୌଣସି ପଦାର୍ଥର ଅଭାବ ନପଡ଼େ । ଯିଏ ଯେତେବେଳେ ଆସି ଯାହା ମାଗିବ, ତାହା ଯେପରି ତାଙ୍କୁ ସଙ୍ଗେ ସଙ୍ଗେ ଦିଆଯିବ ।"

ସମସ୍ତେ ଏକସ୍ୱରରେ କହିଲେ—"ହଁ ପ୍ରଭୋ ! ତାହା ହିଁ ହେବ । ଆମ୍ଭେମାନେ ବର୍ତ୍ତମାନ ସମସ୍ତ ଯୋଗାଡ଼ କରିଦେଉଛୁ ।"

ଏହା କହି ସମସ୍ତେ ମିଶି ଯଜ୍ଞ ସାମଗ୍ରୀ ଏକତ୍ର କରିବାକୁ ଆୟୋଜନ କଲେ । ଭଗବାନ ବେଦବ୍ୟାସଙ୍କୁ ଏହି ଯଜ୍ଞର ପ୍ରଧାନ କରାଗଲା । ସେ ଯଜ୍ଞ କରିବାକୁ ନିପୁଣ ବଡ଼ ବଡ଼ ମୁନିଋଷିଙ୍କୁ ସମ୍ମାନ ସହକାରେ ଡକାଇଲେ । ଭଗବାନ ଶ୍ରୀକୃଷ୍ଣଙ୍କ ଦର୍ଶନ କରିବା ଇଚ୍ଛାରେ ତଥା ଧର୍ମରାଜଙ୍କ ପ୍ରେମପୂର୍ବକ ଆଗ୍ରହକୁ ମାନ୍ୟତା ପ୍ରଦାନ କରି ସେମାନେ ରାଜସୂୟଯଜ୍ଞ ସ୍ଥଳରେ ପଦାର୍ପଣ କଲେ । ସେମାନଙ୍କ ମଧ୍ୟରେ କେତେକ ମୁଖ୍ୟ ମୁଖ୍ୟ ବ୍ୟକ୍ତି ଥିଲେ । ଭଗବାନ ବେଦବ୍ୟାସ ସେହି ଯଜ୍ଞମହୋତ୍ସବର ଅଧ୍ୟକ୍ଷ ଥିଲେ । ତାଙ୍କଛଡ଼ା ଭରଦ୍ୱାଜ, ସୁମନ୍ତୁ, ଗୌତମ, ଅସିତ, ବଶିଷ୍ଠ, ଚ୍ୟବନ, କଣ୍ୱ, ମୈତ୍ରେୟ, କବଷ, ତ୍ରିତ, ବିଶ୍ୱାମିତ୍ର, ବାମଦେବ, ସୁମତି, ଜୈମିନି, କ୍ରତୁ, ପୈଲ, ପରାଶର, ଗର୍ଗ, ବୈଶମ୍ପାୟନ, ଅଥର୍ବା, କଶ୍ୟପ, ଧୌମ୍ୟ, ରାମ ଭାର୍ଗବ, ଆସୁରି, ବୀତହୋତ୍ର, ମଧୁଚ୍ଛନ୍ଦା, ବୀରସେନ ଓ ମହାମୁନି ଅକୃତବ୍ରଣ ଆଦି ବହୁ ବେଦବିତ୍ ମୁନିଋଷି ଥିଲେ ।

ଧର୍ମରାଜ ନିଜର ଭାଇ ନକୁଳଙ୍କୁ ନିଜେ ହସ୍ତିନାପୁର ପଠାଇଲେ ତାଙ୍କ କୁଳର ସମସ୍ତ ଲୋକଙ୍କୁ ଅତି ଆଦର ସହକାରେ ନେଇ ଆସିବା ପାଇଁ । ଧର୍ମରାଜଙ୍କ ଆଜ୍ଞାପାଇ ନକୁଳ ହସ୍ତିନାପୁର ଗଲେ ଓ ସମସ୍ତଙ୍କୁ ଆଦରପୂର୍ବକ ଆମନ୍ତ୍ରିତ କଲେ । ଭୀଷ୍ମ, ଧୃତରାଷ୍ଟ୍ର ଓ ବିଦୁର ଆଦି ଏହା ଶୁଣି ଅତି ଆନନ୍ଦିତ ହେଲେ ଯେ, ତାଙ୍କ କୁଳରେ ଏପରି ଜଣେ ବ୍ୟକ୍ତି ବାହାରି ପାରିଲେ ଯିଏ କି ରାଜସୂୟଯଜ୍ଞର ଦୀକ୍ଷା ନେଲେ । ଏହି ଯଜ୍ଞକୁ ବରୁଣ ଦେବ କିମ୍ବା ଇନ୍ଦ୍ରଦେବ ମଧ୍ୟ କରି ନଥିଲେ । ସେମାନେ ସମସ୍ତେ ପରମ ଆନନ୍ଦରେ ଇନ୍ଦ୍ରପ୍ରସ୍ଥ ଅଭିମୁଖେ ଚାଲିଲେ । ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ର, ବିଦୁର, କର୍ଣ୍ଣ, ଶଲ୍ୟ, ସୋମଦତ୍ତ, ବାହ୍ଲୀକ, ଭୂରି, ଭୂରିଶ୍ରବା, ଶଲ୍ୟ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ଜୟଦ୍ରଥ, ଯଜ୍ଞସେନ ଓ ଅନ୍ୟାନ୍ୟ ଅନେକ ରାଜା ମଧ୍ୟ ରାଜସୂୟ ଯଜ୍ଞ ଦେଖିବାକୁ ଆସିଲେ । ଦୁର୍ଯ୍ୟୋଧନ ତ ମନେ ମନେ ପାଣ୍ଡବଙ୍କ ଉପରେ ରାଗ ରଖିଥିଲା, ସେମାନଙ୍କର ଐଶ୍ୱର୍ଯ୍ୟ ଦେଖି ଈର୍ଷାରେ ସେ ଜଳି ଯାଉଥିଲା । ସେ ସେମାନଙ୍କ ଯଜ୍ଞକୁ ଯିବାକୁ ଇଚ୍ଛା କରୁ ନଥିଲା; କିନ୍ତୁ ଲୋକଲଜ୍ଜା ଓ କୁଳ ବ୍ୟବହାର କାରଣରୁ ତାକୁ ଯିବାକୁ ପଡ଼ିଲା । ସେ ନିଜର ଆଣ୍ଟେପାଣ୍ଟେ ସହିତ ନିଜର ସମସ୍ତ ଭାଇଙ୍କୁ ସଙ୍ଗରେ ନେଇ ରାଜସୂୟ ଯଜ୍ଞରେ ଯୋଗ ଦେଇଥିଲା । ଦେଶ ଦେଶାନ୍ତରରୁ ରାଜାମାନେ ଆସି ଗଙ୍ଗା କୂଳେ କୂଳେ ଏକ ଯୋଜନ ପର୍ଯ୍ୟନ୍ତ ଡେରା ପକାଇ ରହିଥିଲେ । ବହୁ ହାତୀ, ଘୋଡ଼ା ଓ ରଥ ଆଦି ପାଇଁ ଯଜ୍ଞସ୍ଥଳରେ ଏକ ବିଶାଳ ନଗର ଭଳି ସୁଶୋଭିତ ହେଉଥିଲା । ଅଙ୍ଗ, ବଙ୍ଗ, କଳିଙ୍ଗ, ସୌରାଷ୍ଟ୍ର, ମଗଧ ଦ୍ରାବିଡ଼, ପାଣ୍ଡ୍ୟ ଚୋଳ, କୁନ୍ତଳ, ମାଳବ, କାଶ୍ମୀର

ବାହ୍ଲୀକ ଓ ଲକ୍ଷାଧିକ ଗନ୍ଧର୍ବଙ୍କ ଗଜା ଧର୍ମରାଜଙ୍କ ରାଜସୂୟ ଯଜ୍ଞ ଦେଖିବାକୁ ଆସିଥିଲେ । ଧର୍ମରାଜ ସମସ୍ତଙ୍କୁ ସ୍ୱାଗତ ସତ୍କାର କରିଥିଲେ । ଏଥିପାଇଁ ସେ ଏକ ସ୍ୱାଗତକାରିଣୀ ସମିତି ଗଢ଼ିଥିଲେ । ଏହାର ପ୍ରଧାନାଧ୍ୟକ୍ଷ ଥିଲେ ଦ୍ରୋଣାଚାର୍ଯ୍ୟ ଓ ଭୀଷ୍ମ ପିତାମହ । ସମିତିର କାର୍ଯ୍ୟ ସଂଚାଳନର ସମସ୍ତ ଦାୟିତ୍ୱ ଏହି ଦୁଇଜଣଙ୍କୁ ଦିଆ ଯାଇଥିଲା । ଧର୍ମରାଜ ଏ ଦୁହିଁଙ୍କୁ ସମସ୍ତ ଅଧିକାର ଦେଇଥିଲେ । ଏ ଦୁହେଁ ସମସ୍ତ କାର୍ଯ୍ୟର ସୁପରିଚାଳନା ପାଇଁ ଉପସମିତିମାନ ଗଢ଼ିଥିଲେ । ଭୀମଙ୍କୁ ଭୋଜନ ଭଣ୍ଡାରର ଦାୟିତ୍ୱ ଦିଆଯାଇଥିଲା । କାରଣ ଯିଏ ନିଜେ ଖାଇବା ପିଇବାରେ, ଖୁଆଇବାରେ ପାରଙ୍ଗମ ନୁହେଁ, ସେ କିବା କପରି ଅନ୍ୟର ଖାଇବା ପିଇବା ଖବର ବୁଝିବେ ? ଭୀମସେନ ନିଜେ ହାଲୁଆ ଖାଉଥିଲେ । ତାଙ୍କର ଯେତେବେଳେ ଜଳଯୋଗ କରିବାକୁ ଇଚ୍ଛା ହେଉଥିଲା, ସେ ନିଜେତ ଜଳଯୋଗ କରୁଥିଲେ ଓ ତା ସହିତ ଅନ୍ୟମାନଙ୍କ କ୍ଷୁଧା ପ୍ରତି ମଧ୍ୟ ଧ୍ୟାନ ରଖୁଥିଲେ । ଏଥିପାଇଁ ତାଙ୍କୁ ଭୋଜନ ଦାୟିତ୍ୱ ଦିଆଯାଇଥିଲା । କେବଳ ଏଥିରେ ଏତିକି ମାତ୍ର ତ୍ରୁଟିଥିଲା ଯେ ସେ ଘରଲୋକ ତଥା ଧର୍ମରାଜଙ୍କ ସହୋଦର ଭାଇ ଥିଲେ । ତେଣୁ ସମସ୍ତ ସମୟରେ ବ୍ୟସ୍ତ କରି କରି ତାଙ୍କ ମନରେ କ୍ଷୋଭ ଜାତ ହେଉନଥିଲା ଓ ସେ ମୁକ୍ତହସ୍ତରେ ସମସ୍ତଙ୍କୁ ଖାଦ୍ୟପେୟ ପ୍ରଦାନ କରିବାରେ ସଂକୋଚ କରୁନଥିଲେ । ସେ ଆଦୌ ଏହା ଚିନ୍ତା କରୁନଥିଲେ ଯେ, ଏହାଦ୍ୱାରା କେତେ ଅନ୍ନ ଅଯଥାରେ ନଷ୍ଟ ହେଉଛି । ତେଣୁ ତାଙ୍କ ସହିତ ଦୁଃଶାସନଙ୍କୁ ବି ଭୋଜନ ବିଭାଗର ଅଧ୍ୟକ୍ଷ ପଦରେ ରଖାଯାଇଥିଲା । ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର ଅଶ୍ୱତ୍ଥାମାଙ୍କୁ ବ୍ରାହ୍ମଣମାନଙ୍କର ସେବା ସତ୍କାରରେ ନିଯୁକ୍ତ କରାଯାଇଥିଲା । ସଞ୍ଜୟଙ୍କୁ ଆଗତ ରାଜାମାନଙ୍କର ସ୍ୱାଗତ ସତ୍କାର କାମ ଦିଆଯାଇଥିଲା । ଦୁର୍ଯ୍ୟୋଧନଙ୍କୁ ଏଠାରେ ଖୁବ୍ ସମ୍ମାନ ଦିଆଯାଇଥିଲା । ରାଜାମାନେ କୁରୁବୃଦ୍ଧଙ୍କୁ ହିଁ ଉତ୍ତମ ଦ୍ରବ୍ୟମାନ ଭେଟି ଦେଉଥିଲେ ଓ ପ୍ରଣାମ କରୁଥିଲେ । ଦୁର୍ଯ୍ୟୋଧନ ସମ୍ରାଟଙ୍କଭଳି ସମସ୍ତଙ୍କ ଭେଟି ସ୍ୱୀକାର କରୁଥିଲେ ଓ ସମସ୍ତଙ୍କ ପ୍ରଣାମକୁ ସ୍ୱୀକାର କରୁଥିଲେ । କୃପାଚାର୍ଯ୍ୟଙ୍କୁ ବ୍ରାହ୍ମଣଙ୍କ ପାଇଁ ଦକ୍ଷିଣା ଦେବାର କାମ ସମର୍ପଣ କରାଯାଇଥିଲା । ସେ ଯେଉଁ ବ୍ରାହ୍ମଣଙ୍କୁ ଯେତେ ଧନରତ୍ନ ଦେବାକଥା ଦେଉଥିଲେ । ଯେଉଁ ରାଜାମାନେ ଯଜ୍ଞ ଦର୍ଶନ କରିବାକୁ ଆସିଥିଲେ ସେମାନଙ୍କୁ ମାଳା, ଚନ୍ଦନ ଓ ତାମ୍ବୁଳାଦିରେ ସ୍ୱାଗତ ସତ୍କାର କରିବା ସହଦେବଙ୍କ କାର୍ଯ୍ୟ ଥିଲା । ଯେଉଁ ବିଭାଗ ପାଇଁ ଯେଉଁ ବସ୍ତୁ ଆବଶ୍ୟକ ହେଉଥିଲା, ତାହା ଯୋଗାଡ଼ କରିବା କାର୍ଯ୍ୟ ନକୁଳଙ୍କ ଉପରେ ନ୍ୟସ୍ତ ଥିଲା । ଅର୍ଜ୍ଜୁନଙ୍କର ଏକମାତ୍ର କାର୍ଯ୍ୟ ଥିଲା, ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନ ଓ ଅନ୍ୟାନ୍ୟ ପୂଜ୍ୟଜନମାନଙ୍କର ସମସ୍ତ ସୁବିଧା କରିବାରେ କୌଣସି ବିଶୃଙ୍ଖଳା ହେଉଛି କିମ୍ବା ଠିକ୍ ସମୟରେ ସହକାରୀ ସେବକମାନେ କାର୍ଯ୍ୟ କରୁଛନ୍ତି କି ନାହିଁ ? ସେମାନଙ୍କର କୌଣସି ଅସୁବିଧା ହେଉ ନଥିଲା ବୋଲି ସେ ସମୀକ୍ଷା କରି କହୁଥିଲେ । ଦାନାଧ୍ୟକ୍ଷଙ୍କର କାର୍ଯ୍ୟଭାର ମହାମନା କର୍ଣ୍ଣଙ୍କୁ ସମର୍ପଣ କରାଯାଇଥିଲା । କାରଣ ସେ ଶ୍ରେଷ୍ଠ ଦାନୀ

ଥିଲେ । ଭୋଜନ ପରଷିବା କାର୍ଯ୍ୟ ନିଜେ ଦ୍ରୌପଦୀ ଓ ତାଙ୍କର ଭାଇ ଧୃଷ୍ଟଦ୍ୟୁମ୍ନ ଏବଂ ଶିଖଣ୍ଡୀ ବହନ କରିଥିଲେ । ଯଜ୍ଞରେ ବ୍ୟୟ କରିବାର ଦାୟିତ୍ୱ ବିଦୁରଙ୍କୁ ଦିଆଯାଇଥିଲା । ଏହା ବ୍ୟତୀତ ସାତ୍ୟକି, ବିକର୍ଣ୍ଣ, ହାର୍ଦ୍ଦିକ୍ୟ, ଭୂରିଶ୍ରବା ଓ ଅନ୍ୟାନ୍ୟ ବାହ୍ଲୀକ ପୁତ୍ର ସନ୍ତର୍ଦ୍ଦନାଦି ଅନ୍ୟାନ୍ୟ ବହୁ ବ୍ୟକ୍ତି ବିଭିନ୍ନ ବିଭାଗର ଅଧ୍ୟକ୍ଷ ହୋଇ ଯଜ୍ଞରେ ସେବାକାର୍ଯ୍ୟ କରୁଥିଲେ ।

ଯେତେବେଳ ଧର୍ମରାଜ ସମସ୍ତଙ୍କୁ ପୃଥକ୍ ପୃଥକ୍ କାର୍ଯ୍ୟ ବଣ୍ଟନ କରୁଥିଲେ, ସେତେବେଳେ ଭଗବାନ୍ ବାସୁଦେବ କହିଥିଲେ—"ରାଜନ୍ ! ମୋତେ ବି କୌଣସି କାର୍ଯ୍ୟ ଦିଅନ୍ତୁ ।"

ଧର୍ମରାଜ ସ୍ନେହପୂର୍ଣ୍ଣ ବାଣୀରେ କହିଥିଲେ—"ବାସୁଦେବ ! ଆପଣହିଁ ତ ସବୁ କରୁଛନ୍ତି, ଆପଣ ତ ସମସ୍ତଙ୍କର ପ୍ରଭୁ, ଆପଣଙ୍କୁ ପୁଣି କାମ ଦେବ କିଏ ? ଆପଣଙ୍କର ଯାହା ଇଚ୍ଛା ତାହା କରନ୍ତୁ ।"

ଭଗବାନ୍ ହସି ହସି କହିଲେ—"ନା, ରାଜନ୍ ! ଏପରି କହିଲେ ହେବ ନାହିଁ ! ମୋତେ ବି ଯଜ୍ଞରେ କୌଣସି ଶ୍ରେଷ୍ଠମୋଟ କାମ କରିବାକୁ ଆଜ୍ଞାହେଉ ।"

ଧର୍ମରାଜ କହିଲେ—"ମାଧବ ! ମୁଁ ତ କହିଲି ଯେ, ଆପଣଙ୍କର ଯାହା ଇଚ୍ଛା ହେଉଛି, ତାହା କରନ୍ତୁ ।"

ଭଗବାନ କହିଲେ—"ଦେଖନ୍ତୁ ! ସମସ୍ତ ଅତିଥି, ମୁନିଋଷି ପାଦରେ ଚାଲି ଚାଲି ଯଜ୍ଞମଣ୍ଡପରେ ଆସି ପଦାର୍ପଣ କରିବେ । ଚରଣର ଅଧିଷ୍ଠାତୃ ଦେବତା ଭଗବାନ ବିଷ୍ଣୁ ଓ ଶ୍ରୀ ବିଷ୍ଣୁଙ୍କ ପ୍ରୀତ୍ୟର୍ଥେ ଆପଣ ଯଜ୍ଞ କରୁଛନ୍ତି । ଆଗତ ଅତିଥିମାନଙ୍କର ଚରଣ ଧୌତ କରିବା ଦ୍ୱାରା ଯଜ୍ଞର ସର୍ବଶ୍ରେଷ୍ଠ ସେବାର ଫଳ ମିଳିବ । ତେଣୁ ମୁଁ ମୁନିଋଷିମାନଙ୍କର ଚରଣ ଧୌତ କାର୍ଯ୍ୟ ବହନ କରୁଛି ।" ଏହା ଶୁଣି ସମସ୍ତଙ୍କ ନୟନରୁ ପ୍ରେମାଶ୍ରୁ ବହିବାକୁ ଲାଗିଲା । ଧର୍ମରାଜ କହିଲେ—"ହଁ ପ୍ରଭୋ ! ଏହି କାର୍ଯ୍ୟ ତ ଆପଣଙ୍କ ଅନୁକୂଳ । ଆପଣଙ୍କ ନାମ ତ ସେହି କାରଣରୁ ବ୍ରହ୍ମଣ୍ୟଦେବ ନାମକୁ ସାର୍ଥକ କରିବ । ଯଜ୍ଞକୁ ଆଗତ ଅତିଥିଗଣ ନିଜ ନିଜ ଚକ୍ଷୁରେ ଏହି ଅଦ୍ଭୁତ ଓ ଅପୂର୍ବ ଦୃଶ୍ୟକୁ ପ୍ରତ୍ୟକ୍ଷ କରିବେ ।"

ଭଗବାନ କହିଲେ—"ସେ ଯାହା ହେଉ, ମୁଁ ଯଜ୍ଞରେ ଏହି ସେବା ହିଁ କରିବି ।"

ସୂତ କହିଲେ—"ମୁନିଗଣ ! ଭଗବାନ୍ ଏହା କହି ବ୍ରାହ୍ମଣମାନଙ୍କର ପାଦ ଧୋଇବା କାର୍ଯ୍ୟ ବହନ କଲେ । ଭଗବାନଙ୍କର କରକମଳ ଅତି ମୃଦୁଳ ଥିଲା । ତାଙ୍କ

ହାତ ପାପୁଲିଗୁଡ଼ିକ ଅତି ଆରାମ ଦାୟକ ଥିଲା । ସେଗୁଡ଼ିକରୁ ନିରନ୍ତର ଦିବ୍ୟ କମଳ ଗନ୍ଧ ଭଳି ଗନ୍ଧ ବାହାରୁଥିଲା । ସେ ଯେତେବେଳେ ନିଜର ଦୁଇ ମୃଦୁଳ ପାପୁଲିରେ ମୁନିଋଷିମାନଙ୍କର ଚରଣକୁ ଧୋଇ ଦେଉଥିଲେ ଓ ସେମାନଙ୍କର ଆବଡ଼ା ଖାବଡ଼ା ପାଦର ବଡ଼ ବଡ଼ ସନ୍ଧିରେ ଲାଗିଥିବା ମାଟି କାଦୁଅକୁ ନିଜର କୋମଳ ଅଙ୍ଗୁଳିରେ ଘଷି ସଫା କରୁଥିଲେ, ସେତେବେଳେ ମୁନିଋଷିମାନଙ୍କର ମନମୁକୁର ନିର୍ମଳ ହୋଇଯାଉଥିଲା । ସେମାନେ ବ୍ରହ୍ମାନନ୍ଦରେ ନିମଗ୍ନ ହୋଇଯାଉଥିଲେ । ସେମାନଙ୍କୁ ଅତ୍ୟନ୍ତ ସୁଖ ଲାଗୁଥିଲା ଓ ସେମାନେ ପାଦଧୋଇ ବୁଲିଆସୁଥିଲେ । କିଛି ସମୟ ପରେ ଏଣେ ତେଣେ ଟହଲ ମାରି ପୁନରାୟ ପାଦ ଧୋଇବାକୁ ଯାଉଥିଲେ । ଏଥିରେ ଭଗବାନ କିଏ ପାଦ ଧୋଇବାକୁ କେତେଥର ଆସିଲା ଗଲା ବୁଝୁ ନଥିଲେ କିମ୍ବା ଖରାପ ଭାବୁ ନଥିଲେ । ଯିଏ ଯେତେ ଥର ଆସୁଥିଲେ ସେ ସେମାନଙ୍କର ପାଦ ଧୋଇ ଦେଉଥିଲେ ।"

ସେହି ସମୟରେ ଦୁର୍ବାସା ମୁନି କେଉଁଠି ଥିଲେ ବୁଲାବୁଲି କରି ସେଠାରେ ଆସି ପହଞ୍ଚିଗଲେ । ତାଙ୍କୁ ଦେଖି ସମସ୍ତେ ଡରିଗଲେ । କାରଣ ତାଙ୍କ ପାଖରେ ତ ସର୍ବଦା ଶାପର ମୁଣି ଭରପୁର ହୋଇଥାଏ । ତେଣୁ କେହି ହେଲେ ତାଙ୍କ ସମ୍ମୁଖକୁ ଗଲେ ନାହିଁ, କାଳେ ସେ କୌଣସି କଥାରେ ହଠାତ୍ ରାଗିଯାଇ ଶାପ ଦେଇଦେବେ, ସେଥିପାଇଁ ସମସ୍ତଙ୍କୁ ଭୟ ଲାଗିଲା । ସେ ଆସି ଦ୍ୱାର ଦେଶରେ ଠିଆ ହୋଇଗଲେ । ଭଗବାନ ମଧ୍ୟ ତାଙ୍କୁ ଡରୁଥିଲେ । ତାଙ୍କର ପାଦଦ୍ୱୟ ଧୂଳି କାଦୁଅରେ ଭରି ରହିଥିଲା । ଭଗବାନ ତ ତାଙ୍କ ପାଦ ଧୋଇଦେଲେ; କିନ୍ତୁ ତାଙ୍କ ହାତ ଭୟରେ ଥରୁଥିଲା । ଦୁର୍ବାସା ବୋଧହୁଏ ଏହା ଚିନ୍ତା କରି ଆସିଥିଲେ ଯେ, ମୁଁ ତ ସମସ୍ତଙ୍କୁ ଶାପ ଦେଉଛି, ଯଦି ମୁଁ କୃଷ୍ଣଙ୍କୁ ଶାପ ନ ଦିଏଁ, ତାହାହେଲେ ମୋ ନାଁ ଦୁର୍ବାସା ହୋଇଛି କାହିଁକି ?" ଭଗବାନ ତ ଅନ୍ତର୍ଯାମୀ, ସମସ୍ତଙ୍କ ଅନ୍ତର କଥା ତାଙ୍କୁ ଜଣା । ସେ ଜାଣିପାରିଲେ ମୁନି ତାଙ୍କୁ ଶାପ ଦେବାକୁ ଚାହୁଁଛନ୍ତି । ଆଚ୍ଛା, ଠିକ୍ ଅଛି । ଯିଏ ମୋତେ ପ୍ରେମରେ ପତ୍ର, ପୁଷ୍ପ, ଜଳ, ଫଳ ଏପରିକି ବିଷ ମଧ୍ୟ ଏ ପର୍ଯ୍ୟନ୍ତ ଦେଇ ଆସିଛନ୍ତି, ମୁଁ ତାହା ଗ୍ରହଣ କରିଛି । ପୂତନା ମୋତେ ବିଷପାନ କରାଇବା ପାଇଁ ଆସିଥିଲା । ମୁଁ ବିଷପାନ କଲି ଓ ତା ସହିତ ତା ପ୍ରାଣକୁ ମଧ୍ୟ ଶୋଷି ନେଲି । ଏହା ଚିନ୍ତା କରି ସେ ଦୁର୍ବାସାଙ୍କ ପାଦ ଧୋଇ ଦେଉ ଦେଉ ତାଙ୍କ ବାମ ପାଦ ତଳେ ସାମାନ୍ୟ କାଦୁଅ ଥାଇ ଛାଡ଼ିଦେଲେ । ଏବେ ଦୁର୍ବାସା ନିଜର ଶାପରୂପୀ ଅମୋଘ ଅସ୍ତ୍ର ପ୍ରୟୋଗ କଲେ । ସେ କହିଲେ—"କୃଷ୍ଣ ! ତୋ'ର ଅତ୍ୟନ୍ତ ଅଭିମାନ ହୋଇଗଲାଣି । ତୁ ସେବ କାର୍ଯ୍ୟ ବହନ କରି ତାହା ଉତ୍ତମ ରୂପେ ପାଳନ କରୁ ନାହୁଁ । ଦେଖ୍, ମୋ ପାଦ ତଳେ କେତେ କାଦୁଅ ଲାଗିଛି । ତେଣୁ ମୁଁ ତୋତେ ଶାପ ଦେଉଛି, ତୋ ପାଦ ତଳେ ଶରବିଦ୍ଧ ହେବ ଓ ସେହି ଶରଘାତରେ ତୁ ମରିବୁ ।"

ଭଗବାନ ନତମସ୍ତକ ହୋଇ ମୁନିଙ୍କ ଶାପକୁ ଆନନ୍ଦରେ ଶିରୋଧାର୍ଯ୍ୟ କଲେ । ପରେ ମୁନି ପଶ୍ଚାତାପ କଲେ ସତ; କିନ୍ତୁ ଭଗବାନ ଏହା କହି ତାଙ୍କୁ ଆଶ୍ୱସନା ଦେଲେ ଯେ, ଏ ସବୁ ହିଁ ମୋ ଇଚ୍ଛାରେ ହେଉଛି । ଏଥିପାଇଁ ଆପଣ ଡଳେ ହେଲେ ଚିନ୍ତା କରନ୍ତୁ ନାହିଁ ।

ସୂତ କହିଲେ —"ମୁନିଗଣ ! ଧର୍ମରାଜଙ୍କର ଯଜ୍ଞ ଏହିପରି ଭାବରେ ଅତ୍ୟନ୍ତ ଜାକଜମକରେ ହେବାକୁ ଲାଗିଲା । ଚତୁର୍ଦ୍ଦିଗରେ ବେଦଧ୍ୱନି ମୁଖରିତ ହେବାକୁ ଲାଗିଲା । ଭୋଜନ ଶାଳାରେ ସମସ୍ତେ ଅବାଧ ପ୍ରବେଶ କରି ମନଇଚ୍ଛା ଭୋଜନ କଲେ ଓ ଇଚ୍ଛାନୁସାରେ ବାନ୍ଧିବାନ୍ଧି ଘରକୁ ନେଲେ । ଯିଏ ଯାହା ମାଗିଲା, ତାହା ତାଙ୍କୁ ସଙ୍ଗେ ସଙ୍ଗେ ଦିଆଗଲା । ସେହି ଯଜ୍ଞସ୍ଥଳରେ ଅନ୍ନର ପର୍ବତ ରଖାଯାଇଥିଲା । ଡାଲି, ତରକାରି, କ୍ଷୀରି, ରାବିଡ଼ି ଓ ଶ୍ରୀଖଣ୍ଡ ଆଦି ବହୁ ପରିମାଣରେ ପ୍ରସ୍ତୁତ ହୋଇଥିଲା । ଏପରି କୌଣସି ଖାଦ୍ୟ ଦ୍ରବ୍ୟର ଅଭାବ ନଥିଲା, ଯାହା କି ଚାହିଁଲା ମାତ୍ରେ ଲୋକେ ପାଇ ନ ପାରୁଥିଲେ । ଯାଚକମାନଙ୍କୁ ଏତେ ବସ୍ତୁ ଦିଆଗଲା ଯେ, ସେମାନେ ବି ଦାତା ପାଲଟି ଗଲେ । ବ୍ରାହ୍ମଣମାନଙ୍କୁ ଏତେ ଦକ୍ଷିଣା ଦିଆଗଲା ଯେ, ସେମାନେ ତାହା ବୋହିନେବାକୁ ଅସମର୍ଥ ହେଲେ । ଏହିପରି ଭାବରେ ଧର୍ମରାଜଙ୍କର ସେହି ରାଜସୂୟ ଯଜ୍ଞ ଖୁବ୍ ଧୁମ୍‌ଧାମ୍‌ରେ ଉଦ୍‌ଯାପିତ ହେଲା । ସେଥିରେ ଭଗବାନଙ୍କର ଯେପରି ଅଗ୍ରପୂଜା ହୋଇଥିଲା, ତାହା ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନା କରୁଛି ।"

## ଛପ୍‌ପୟ

ହରି ଆୟୁସ୍‌ ସିର ଧାଇ ଯଜ୍ଞ କେ ଠାଠ ରଚାୟେ ।<br>
କରମ କାଣ୍ଡ ମହିଁ କୁଶଲ ବେଦବିଦ୍‌ ବିପ୍ର ବୁଲାୟେ ।।<br>
ସୁନତ କଣ୍ୱ, ଭ୍ରିତ, କବସ, ଅସିତ, କ୍ରତୁ, ପୈଲ, ପରାଶର ।<br>
ଗୌତମ, ଅତ୍ରି, ବସିଷ୍ଠ, ରାମ ଆଦିକ ସବ ମୁନିବର ।।<br>
ଆୟେ ମଖ ମହିଁ ମୁଦିତ ମନ, ଅତି ସ୍ୱାଗତ ସବକୋ କରେଁ ।<br>
ତଇଁନ ପଖାରତ ପ୍ରଭୁହଂ ଲଖି, ନୟନ ନୀର ସବକେ ଭରେଁ ।।

# ଭଗବାନଙ୍କ ଅଗ୍ରପୂଜା

ଶ୍ରୁତ୍ୱା ଦ୍ୱୈକେଶତଂ ରାଜା ଜ୍ଞାତ୍ୱା ହାର୍ଦଂ ସଭାସଦାମ୍ ।
ସମର୍ହୟତ୍ ହୃଷୀକେଶଂ ପ୍ରୀତଃ ପ୍ରଣୟ ବିହ୍ୱଳଃ ॥ *

(ଶ୍ରୀ ଭା : ୧୦ମ ସ୍କ : ୭୪ ଅ. ୨୭ ଶ୍ଳୋକ)

## ଛପ୍ପୟ

ଧୂମ୍‌ଧାମ ଅଛ ମଚୀ ଲେହୁ ଧନ ଭୋଜନ ପାଓ ।
ମନମାନେ ଧନ ରତନ ବାନ୍ଧିକେଂ ଘର ଲେଁ ଜାଓ ॥
କଟେହୁଁ ନାହି ନର ଯଜ୍ଞ ନ ଏସୋ ଦେଖ୍ୟୋ କବହୂଁ ।
ଜଲ ସମ ବରସତ କନକ ଚୁକତ ନହିଁ ତନକହୁ ତବହୂଁ ॥
ପରବ ସୋମରସ ପାନ ଦିନ, କରି ଯାଜକ ପୂଜନ ନୃପତି ।
ପ୍ରଥମ ସଦସଦ ପୂଜ୍ୟ କୋ, ଜାମେଂ ମତେଧ୍ୟା ବିବାଦ ଅତି ॥

ଏ ସଂସାରରେ ଭଗକୁ ପୂଜା କରାଯାଏ । ସମଗ୍ର ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ ଏହି ଛଅଟି ବସ୍ତୁର ନାମ ଭଗ । ଯାହାଙ୍କଠାରେ ଏହି ଛଅଟି ବସ୍ତୁ ପୂର୍ଣ୍ଣ-ରୂପେ ବିଦ୍ୟମାନ, ତାଙ୍କୁ ହିଁ ଭଗବାନ କୁହାଯାଏ । ଯେଉଁଠି ପୂଜା ପ୍ରତିଷ୍ଠା ହୁଏ, ଏହି ଛଅଟି କାରଣରୁ ହିଁ ହୋଇଥାଏ । ଯିଏ ଐଶ୍ୱର୍ଯ୍ୟଶାଳୀ ହୁଅନ୍ତି, ବୀର୍ଯ୍ୟବାନ, ଯଶସ୍ୱୀ, ଶ୍ରୀମାନ୍, ଜ୍ଞାନବାନ୍ ଅଥବା ବୈରାଗ୍ୟବାନ୍ ହୁଅନ୍ତି ସେହି ହିଁ ପୂଜ୍ୟ । ସଂସାରରେ ତ ଏମାନେ ଅଂଶ ସ୍ୱରୂପ ଅଟନ୍ତି । ଲୋକରେ ଯାହାଙ୍କୁ ଶ୍ରୀମାନ୍ ବୋଲି କୁହାଯାଏ, ତାଙ୍କ

---

* ସର୍ବେ କରନ୍ତି ସାଧୁବାଣୀ । ଧର୍ମ ନନ୍ଦନ ତାହା ଶୁଣି ॥
ପ୍ରଣମି ପ୍ରିୟସ୍ତବ କଲେ । ଗୋବିନ୍ଦ ପାଦେ ଅର୍ଘ୍ୟଜଳ ॥
ବେଦ ବଚନେ ରାଜା ଢାଳି । ପାଦ ଉଦକ ଶିରେ ବୋଳି ॥
ପତ୍ନୀ ସହିତେ ଭ୍ରାତାଗଣ । ପୂଜିଲେ ଗୋବିନ୍ଦ ଚରଣ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୭୧ ଅ.)

ନିକଟରେ ଲକ୍ଷେ, ଦୁଇଲକ୍ଷ, କୋଟିଏ ଅଥବା, ଖର୍ବ ଖର୍ବ ଧନଦ୍ରବ୍ୟ ଥାଏ; କିନ୍ତୁ ଭଗବାନଙ୍କ ସେବାରେ ତ ସର୍ବଦା ମୂର୍ତ୍ତିମତୀ ଲକ୍ଷ୍ମୀ ହିଁ ସଲଗ୍ନ ଥାଆନ୍ତି । ତେଣୁ ତାଙ୍କଠାରୁ ବଳି ଶ୍ରୀମାନ୍ ଆଉ କିଏ ଅବା ହୋଇ ପାରନ୍ତି ? ଯେଉଁ ସଭାରେ ସ୍ୱୟଂ ଭଗବାନ ଶ୍ୟାମସୁନ୍ଦର ବିଦ୍ୟମାନ, ସେଥିରେ ତାଙ୍କ ବ୍ୟତୀତ ଆଉ କାହାର ଅବା ଅଗ୍ରପୂଜା କିପରି ହୋଇ ପାରନ୍ତା ? ମୁନି ଋଷି, ଦେବତା ଓ ବ୍ରାହ୍ମଣ ସାଧାରଣତଃ ତାଙ୍କର ଅଂଶ । କିନ୍ତୁ ପୁରୁଷ ରୂପରେ ତ ସେହି ଏକମାତ୍ର ପୁରୁଷୋତ୍ତମ ଅଟନ୍ତି । ନରମାନଙ୍କ ମଧ୍ୟରେ ସେହି ତ ନରୋତ୍ତମ । ବର୍ତ୍ତମାନ ଯେତେବେଳେ ନରଙ୍କ ପୂଜା କରିବାର ପ୍ରଶ୍ନ ଆସୁଛି, ସେତେବେଳେ ପ୍ରଥମେ ନରୋତ୍ତମଙ୍କ ହିଁ ପୂଜା କରିବା ଉଚିତ୍ ।

ସୂତ କହିଲେ—"ମୁନିଗଣ ! ଧର୍ମରାଜଙ୍କର ରାଜସୂୟ ଯଜ୍ଞ ଅତ୍ୟନ୍ତ ଉତ୍ସାହର ସହିତ ସମ୍ପନ୍ନ ହେଲା । ଯଜ୍ଞ ଶେଷରେ ଏକ "ସୌତ୍ୟ ଦିବସ" ପାଳନ କରାଯାଏ । ଯେଉଁଦିନ ସୋମବଲ୍ଲୀ ନାମକ ଲତାକୁ ଛେଚି ତା ରସକୁ ବାହାର କରାଯାଏ ଓ ସେହି ସୋମରସକୁ ଦେବତାମାନଙ୍କୁ ପାନ କରିବାକୁ ଡିଆଯାଏ, ସେହି ଦିନକୁ ଯଜ୍ଞର ସର୍ବଶ୍ରେଷ୍ଠ ଦିନ ବୋଲି ମାନିବାକୁ ହୁଏ । ସେହିଦିନ ମଙ୍ଗଳ ସ୍ନାନ ବି କରାଯାଏ । ସେଦିନ ଋତ୍ୱିକ ସଭାପତି ଓ ଆଗତ ରାଜାମାନଙ୍କର ବିଶେଷରୂପେ ସମ୍ମାନ କରାଯାଏ । ସମସ୍ତଙ୍କୁ ସମସ୍ତଙ୍କର ପଦପ୍ରତିଷ୍ଠା ଓ ଯୋଗ୍ୟତା ଅନୁସାରେ ଅର୍ଘ୍ୟ ପ୍ରଦାନ କରାଯାଏ ।

ଧର୍ମରାଜ ପ୍ରଥମେ ଯଜ୍ଞକରୁଥିବା ବଡ଼ ବଡ଼ ଶ୍ରୋତ୍ରିୟ ବେଦଜ୍ଞ ଯାଜକ ତଥା ସଭାପତିଙ୍କର ପୂଜା ଅତି ସାବଧାନତାର ସହିତ କଲେ । ଯଜ୍ଞର ସଦସ୍ୟଗଣ, ଯାଜକ, ତଥା ଅନ୍ୟାନ୍ୟ ଶ୍ରେଷ୍ଠ ବ୍ରାହ୍ମଣଙ୍କର ପୂଜା ହେବା ପରେ ଏବେ ଯଜ୍ଞକୁ ଆସିଥିବା ସମସ୍ତ ରାଜାଙ୍କୁ ମଧ୍ୟ ସମ୍ମାନ ପ୍ରଦାନ କରାଯିବାର ବିଧି । ସେମାନଙ୍କୁ ମଧ୍ୟ ଅର୍ଘ୍ୟ ପ୍ରଦାନ କରାଯାଇ ସତ୍କାର କରାଯିବାର ବିଧି । ସେଠାକୁ ଆସିଥିବା ସମସ୍ତ ରାଜା ନିଜ ନିଜକୁ ଶ୍ରେଷ୍ଠ ବିବେଚନା କରୁଥିଲେ । ଏବେ ଏହି ପ୍ରଶ୍ନ ଉଠିଲା ଯେ, ସର୍ବ ପ୍ରଥମେ ପୂଜା (ଅଗ୍ରପୂଜା) କାହାକୁ କରାଯିବ । ଏବେ ମୂର୍ଦ୍ଧାଭିଷିକ୍ତଙ୍କ ରାଜସୂୟ ଯଜ୍ଞରେ ସର୍ବପ୍ରଥମେ ଯାହାଙ୍କର ପୂଜା କରାଯିବ, ସେହି ହିଁ ସବୁଠାରୁ ଶ୍ରେଷ୍ଠ ରାଜା ବୋଲି ସାବ୍ୟସ୍ତ ହେବେ । ଏହି ବିଷୟରେ ବଡ଼ ମତଭେଦ ସୃଷ୍ଟି ହେଲା । ଯେଉଁଠାରେ ଦେଶ ବିଦେଶରୁ ଆସିଥିବା ଲକ୍ଷ ଲକ୍ଷ ରାଜା ସମୁପସ୍ଥିତ ଥିଲେ । ସମସ୍ତେ ଚାହୁଁଥିଲେ, ମୋର ବୋଧହୁଏ ସର୍ବପ୍ରଥମ ପୂଜା ହେବ । ଅଗ୍ରପୂଜାର ସମ୍ମାନ ମୋତେ ହିଁ ମିଳିବ । କେହି ତ ନିଜେ ନିଜ ମନ କଥା ମୁଖରେ ପ୍ରକାଶ କରିବାର ଉପାୟ ନ ଥିଲା, ସେମାନେ ନିଜ ନିଜର ସମର୍ଥକ ରାଜାମାନଙ୍କ ଦ୍ୱାରା ନିଜ ନିଜର ନାମ ପ୍ରସ୍ତାବ ଦେଲେ । ଯାହାଙ୍କ ଯଜ୍ଞରେ ବହୁତ ରାଜା ଉପସ୍ଥିତ ହୁଅନ୍ତି, ସେମାନେ କୋଳାହଳ କରନ୍ତି ଓ ନିଜପକ୍ଷ ରାଜାଙ୍କର ପ୍ରଶଂସା କରନ୍ତି । ଅନ୍ୟ ପ୍ରତିଦ୍ୱନ୍ଦ୍ୱୀ ରାଜାଙ୍କ ଦୋଷ ଦର୍ଶାଇ ଏହା ସିଦ୍ଧ କରନ୍ତି ଯେ, ସେମାନେ

କୌଣସି ପ୍ରକାରେ ଅଗ୍ରପୂଜାର ଅଧିକାରୀ ହୋଇ ନ ପାରନ୍ତି । ଅନ୍ୟ ରାଜା ତାଙ୍କୁ ନିନ୍ଦା କରନ୍ତି । ଏହିପରି ସେଠାରେ ଅତି ପରିସ୍ଥିତି ହେବାକୁ ଲାଗିଲା । କେହି ହେଲେ ସର୍ବସମ୍ମତିକ୍ରମେ ନିର୍ଣ୍ଣିତ ହୋଇ ପାରୁଲେ ନାହିଁ । ଏବେ ଧର୍ମରାଜ ବଡ଼ ଧର୍ମ ସଙ୍କଟରେ ପଡ଼ିଲେ । ସେ ଚିନ୍ତା କରିବାକୁ ଲାଗିଲେ—ଏ ପର୍ଯ୍ୟନ୍ତ ତ ଯଜ୍ଞକର୍ମ ସୁରୁଖୁରୁରେ ଅତ୍ୟନ୍ତ ପ୍ରେମ ଭାବରେ ସମ୍ପନ୍ନ ହେଲା । କିନ୍ତୁ ଏବେ ଶେଷରେ ଏ ପ୍ରକାର ମତଭେଦ ଦେଖା ଦେଉଛି । ସେ ଶଙ୍କିତ ଚିତ୍ତରେ ଉଠି ଠିଆ ହେଲେ ଓ ହାତଯୋଡ଼ି କହିଲେ —"ରାଜନ୍ୟବର୍ଗ ! ଆପଣମାନେ ସମସ୍ତେ ଶ୍ରେଷ୍ଠ, ସମସ୍ତେ କୁଳୀନ, ସମସ୍ତେ ପୂଜନୀୟ ନରପତି ଅଟନ୍ତି । ତଥାପି ତ ଆପଣମାନଙ୍କ ମଧ୍ୟରୁ ଜଣଙ୍କର ଅଗ୍ରପୂଜା ହେବ । ପୂଜ୍ୟ ତ ସମସ୍ତେ, କିନ୍ତୁ ସର୍ବ ପ୍ରଥମେ କାହାର ପୂଜା ହେବ ତାହା ଆପଣମାନେ ସ୍ଥିର କରି ସମ୍ମତି ପ୍ରଦାନ କରନ୍ତୁ ।"

ଏହା ଶୁଣି ଧର୍ମରାଜଙ୍କ ସଭା ସ୍ଥାନ ଘେରି ସହଦେବ ଉଠି ଠିଆ ହେଲେ । ସେ ଆବେଗଭରା ହୃଦୟରେ ସମସ୍ତ ରାଜାଙ୍କୁ ସମ୍ବୋଧନ କରି କହିଲେ—"ସଭାସ୍ଥିତ ସର୍ବ ସଭାସଦ୍‌ଗଣ ! ମୁଁ ଆପଣମାନଙ୍କୁ କିଛି ନିବେଦନ କରିବାକୁ ଚାହୁଁଛି । ଏ ସଭାରେ ସମସ୍ତେ ଶ୍ରେଷ୍ଠ; କିନ୍ତୁ ଅଗ୍ରପୂଜାର ଏକମାତ୍ର ଅଧିକାରୀ ହେଉଛନ୍ତି ଯଦୁନନ୍ଦନ ଭଗବାନ ବାସୁଦେବ । ଯଜ୍ଞର ଯେତେ ଧନାଦି ଉପକରଣ, ତଥା ଦେଶ କାଳ ଓ ପାତ୍ର ଯେଉଁ ସାଧନ ରହିଛି, ସେ ସମସ୍ତ ହିଁ ତାଙ୍କର ରୂପ । ଏହାଙ୍କୁ ଛାଡ଼ି କାହାର ଅସ୍ତିତ୍ୱ ସମ୍ଭବ ନୁହେଁ । ଯେତେ ଯେତେ ଅଗ୍ନିହୋତ୍ର, ଦର୍ଶନ, ପୌର୍ଣ୍ଣମାସ୍ୟ, ଚାତୁର୍ମାସ୍ୟ, ପଶୁଯଜ୍ଞ, ସୋମଯଜ୍ଞ ତଥା ଅନ୍ୟାନ୍ୟ ଯଜ୍ଞ ରହିଛି, ସେ ସମସ୍ତ ହିଁ ତାଙ୍କର ସ୍ୱରୂପ । ଅଗ୍ନି, ଆହୁତି, ମନ୍ତ୍ର, ସାଂଖ୍ୟ ଓ ଯୋଗ ଆଦି ଯାହାକିଛି ରହିଛି, ସେ ସମସ୍ତ ତାଙ୍କର ନିମିତ୍ତ । ସମସ୍ତ ଶାସ୍ତ୍ର ତାଙ୍କୁ ହିଁ ପ୍ରତିପାଦିତ କରୁଛନ୍ତି । ଏ ସାରା ବିଶ୍ୱ-ବ୍ରହ୍ମାଣ୍ଡ, ଦୃଶ୍ୟ-ପ୍ରପଞ୍ଚ ତାଙ୍କର ସ୍ୱରୂପ । ସେହି ହିଁ ବ୍ରହ୍ମା ହୋଇ ବିଶ୍ୱ ସୃଷ୍ଟି କରନ୍ତି, ବିଷ୍ଣୁ ରୂପରେ ପାଳନ କରନ୍ତି ଓ ଶେଷରେ ରୁଦ୍ର ରୂପରେ ତାହା ସଂହାର କରନ୍ତି । ସେହି ଅଚ୍ୟୁତଙ୍କ ଆଗ୍ରହରେ ଅଖିଳ ଜଗତ ବିଭିନ୍ନ ଭଲ କର୍ମ କରିଥାଏ । ସମସ୍ତ କର୍ମର ସିଦ୍ଧିଦାତା ହିଁ ସେହି ସର୍ବେଶ୍ୱର । ଏଥିପାଇଁ ମୋ ମତରେ ସର୍ବ ପ୍ରଥମେ ସେହି ଅଖିଳେଶ୍ୱର ଅଚ୍ୟୁତଙ୍କର ଅଗ୍ରପୂଜା ହେବା ଉଚିତ । ସେ ଜୀବମାନଙ୍କର ସ୍ୱାମୀ ଅଟନ୍ତି । ତାଙ୍କର ପୂଜା ହେଲେ ସମସ୍ତଙ୍କର ପୂଜା ହୋଇଥାଏ । ନିଜର କର୍ମ ଅନନ୍ତ କରିବାକୁ ଇଚ୍ଛା ଥିଲେ ସର୍ବକର୍ମ ତାଙ୍କୁ ଅର୍ପଣ କରି ଦେବା ଉଚିତ । ସେ ଭେଦଭାବ ରହିତ, ଶାନ୍ତ, ପରିପୂର୍ଣ୍ଣ ଓ ସମସ୍ତ ଭୂତର ଅନ୍ତରାତ୍ମା । ଯାହା କିଛି ଦାନ ଦିଆ ଯାଏ, ତାଙ୍କୁ ଦେବାଦ୍ୱାରା ତାହା ଅକ୍ଷୟ ଓ ଅନନ୍ତ ହୋଇଯାଏ । ଏଥିପାଇଁ ମୋ ମତରେ ସେହି ହିଁ ଅଗ୍ରପୂଜାର ସର୍ବଶ୍ରେଷ୍ଠ ଅଧିକାରୀ । ମୋର ଆଶା ଓ ପୂର୍ଣ୍ଣ ବିଶ୍ୱାସ, ଆପଣମାନେ ସମସ୍ତେ ମୋର ମତକୁ ସମର୍ଥନ କରିବେ ଓ

ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ହିଁ ଅଗ୍ରପୂଜା ହେବ । ଆପଣମାନେ ନିଜ ନିଜର ସମ୍ମତି ଆନନ୍ଦ ମନରେ ପ୍ରଦାନ କରିବା ନିମନ୍ତେ ମୁଁ ନିବେଦନ କରୁଛି ।”

ଏହିପରି ନିଜ ଆଡ଼ୁ ପ୍ରବଳ ଯୁକ୍ତି ବାଢ଼ି ମତ ବ୍ୟକ୍ତକରି ଭଗବାନଙ୍କ ପ୍ରଭାବକୁ ଭଲଭାବରେ ଜାଣିଥିବା ସହଦେବ ଠିଆହୋଇ ରହିଲେ । ଠିଆ ହୋଇ ରହିବାର ଦେଖି ଧର୍ମରାଜ ତାଙ୍କୁ ତୀବ୍ର ଭର୍ତ୍ସନା କରି କହିଲେ—“ସହଦେବ ! ତୁ ପିଲାଲୋକ । ସଭା ମଧ୍ୟରେ ଆମ କୁଳବୃଦ୍ଧ, ଆମ ସମସ୍ତଙ୍କର ପିତାମହ ଶ୍ରୀ ଭୀଷ୍ମଦେବ ଆଦି ଉପସ୍ଥିତ ଅଛନ୍ତି, ଏପରିସ୍ଥଳେ ତୁ ଠିଆହୋଇ ଏତେ କଥା କହିବାର କି ଆବଶ୍ୟକ ଥିଲା ?”

ଧର୍ମରାଜଙ୍କର ତାଗିଦ୍ ବଚନ ଶୁଣି ସହଦେବ ଲଜ୍ଜିତ ହେଲେ ଓ ନିଜ ଆସନରେ ଯାଇ ଚୁପ୍ ହୋଇ ବସି ପଡ଼ିଲେ ।

ଏହା ଦେଖି ପିତାମହ ଭୀଷ୍ମ ଧର୍ମରାଜଙ୍କ କଥାରେ ବାଧାଦେଇ କହିଲେ—“ଯୁଧିଷ୍ଠିର ! ତୁମର ଏପରି ବ୍ୟବହାର ଶାସ୍ତ୍ରସମ୍ମତ ନୁହେଁ । ଯାହାର କେଶ ପାଚି ହୋଇଯାଇଛି, ତାଙ୍କୁ ବୃଦ୍ଧ କୁହାଯାଏ ନାହିଁ । ଯିଏ ଉଚିତ୍ ଓ ଯୁକ୍ତିଯୁକ୍ତ କଥା କହେ ସେହି ଜ୍ଞାନୀ ବ୍ୟକ୍ତିକୁ ହିଁ ବୃଦ୍ଧ କୁହାଯାଏ । ବାଳକ ହୋଇ ଯଦି ଧର୍ମଯୁକ୍ତ ଶ୍ରେଷ୍ଠ କଥା କହେ, ତାହାହେଲେ ସେ କଥା ଗ୍ରହଣୀୟ । କିନ୍ତୁ ଏହା ବିପରୀତରେ ଯଦି ବୃଦ୍ଧ ହୋଇ ଧର୍ମ ବିରୁଦ୍ଧ କଥା କହେ, ତାହାହେଲେ ତାହା କଦାପି ଗ୍ରହଣୀୟ ହୋଇ ନ ପାରେ । ସହଦେବ ଯାହା କହିଛି ତାହା ଯୁକ୍ତିଯୁକ୍ତ । ଆମର ଏଠାରେ ଅର୍ଘ୍ୟ ଦେବା ଏକ ବିଶେଷ ସମ୍ମାନର ସୂଚକ ଅଟେ । ଋତ୍ୱିକ, ଶ୍ୱଶୁର ଆଦି ନିଜର ଶ୍ରେଷ୍ଠ ସମ୍ବନ୍ଧୀ, ସ୍ନାତକ, ବ୍ରହ୍ମଋଷି, ମିତ୍ର ଓ ରାଜା ଏହି ଛଅଜଣଙ୍କୁ ଆଦରରେ ଶ୍ରେଷ୍ଠ ବୋଲି କୁହାଯାଇଛି । ଏମାନେ ଘରକୁ ଆସିଲେ ଅର୍ଘ୍ୟଦ୍ୱାରା ଏମାନଙ୍କୁ ସମ୍ମାନ କରିବା ଉଚିତ୍ । ଯିଏ ବହୁତ ଦିନ ନିଜ ସାଥିରେ ରୁହନ୍ତି, ସେ ମଧ୍ୟ ଅର୍ଘ୍ୟର ଅଧିକାରୀ ହୋଇଯାଆନ୍ତି । ଏ ଦୃଷ୍ଟିରୁ ଯଜ୍ଞକୁ ଆସିଥିବା ସମସ୍ତ ରାଜା ଆମ୍ଭମାନଙ୍କର ପୂଜନୀୟ । ତୁମେ ଏ ସମସ୍ତଙ୍କୁ ଅର୍ଘ୍ୟ ପ୍ରଦାନ କରି ସମ୍ମାନିତ କରିବା ଉଚିତ୍ । ଏବେ ବିବାଦର ବିଷୟ ଏହି ଯେ, ସର୍ବ ପ୍ରଥମେ କାହାକୁ ଅର୍ଘ୍ୟ ପ୍ରଦାନ କରାଯିବା ଉଚିତ୍ ? ଓ ପ୍ରାଥମିକ ପୂଜାର ଅଧିକାରୀ ବୋଲି କାହାକୁ ମାନିବା ଉଚିତ୍ ? ସଦାଚାରର ହେଉଛି, ଯିଏ ଉପସ୍ଥିତ ରାଜାମାନଙ୍କ ମଧ୍ୟରେ ସବୁଠାରୁ ଅଧିକ ସାମର୍ଥ୍ୟବାନ୍ ଓ ଶ୍ରେଷ୍ଠ, ସର୍ବପ୍ରଥମେ ତାଙ୍କୁ ଅର୍ଘ୍ୟ ଦେଇ ତାହାପରେ ଅନ୍ୟମାନଙ୍କୁ ସାମାନ୍ୟ ରୂପରେ ଅର୍ଘ୍ୟ ଦିଆଯାଇ ପାରେ । ସହଦେବ ଯେଉଁ ପ୍ରସ୍ତାବ ଦେଲେ, ତାହା ସର୍ବଥା ଗ୍ରହଣୀୟ । ଶ୍ରୀକୃଷ୍ଣ ସାମର୍ଥ୍ୟ, ପରାକ୍ରମ, ନୀତି, ଧର୍ମ, କୁଶଳତା, ଯୁଦ୍ଧକୁଶଳୀ, ରୂପ, ଗୁଣ, ସୌନ୍ଦର୍ଯ୍ୟ, ପ୍ରଭାବ, ଓଜ, ତେଜ, ବଳ, କୀର୍ତ୍ତି, ଓ ଅନ୍ୟ ସମସ୍ତ

ବିପ୍ରସ୍ୱରେ ସବୁଠାରୁ ଶ୍ରେଷ୍ଠ ଅଟନ୍ତି । ଏହି ସଭାର ସମସ୍ତ ଶୋଭା ଶ୍ୟାମସୁନ୍ଦରଙ୍କ ସମୁପସ୍ଥିତିର ହିଁ କାରଣ । ତେଣୁ ସର୍ବପ୍ରଥମେ ଭଗବାନ ବାସୁଦେବଙ୍କ ହିଁ ପୂଜା କରାଯାଉ, ସିଏ ହିଁ ଏହି ପୂଜାର ସର୍ବୋତ୍ତମ ପାତ୍ର ଅଟନ୍ତି ।"

ଏହା ଶୁଣି ବ୍ରାହ୍ମଣମାନେ ଏକ ସ୍ୱରରେ 'ସାଧୁ ! ସାଧୁ !' ବୋଲି କହିବାକୁ ଲାଗିଲେ । ସେମାନେ କହିଲେ—"ଏହା ସର୍ବୋତ୍ତମ କଥା, ସର୍ବପ୍ରଥମେ ଶ୍ରୀକୃଷ୍ଣଙ୍କର ହିଁ ପୂଜା କରାଯିବା ଉଚିତ ।" ଯେଉଁ ୨୦ ହଜାର ରାଜାଙ୍କୁ ଶ୍ରୀକୃଷ୍ଣ ଜରାସନ୍ଧର ବନ୍ଦୀଗୃହରୁ ମୁକ୍ତ କରିଥିଲେ, ସେମାନେ ମଧ୍ୟ ସମସ୍ତେ ଉଚ୍ଚ ସ୍ୱରରେ କହିଲେ, 'ଭଗବାନ ଶ୍ରୀକୃଷ୍ଣଙ୍କର ହିଁ ସର୍ବପ୍ରଥମେ ପୂଜା ହେବା ଉଚିତ । ଏହି କୋଳାହଳରେ କେହି କାହାର କଥା ଶୁଣି ପାରୁ ନଥିଲେ । ଯେଉଁ ରାଜାମାନେ ଏହି ପ୍ରସ୍ତାବର ବିରୋଧ କରିବାକୁ ଚାହୁଁଥିଲେ, ଏମାନଙ୍କର ବହୁମତକୁ ଦେଖି ଏ କୋଳାହଳରେ ସେମାନେ ଆଉ ବିରୋଧ କରିବାକୁ ସାହସ କଲେ ନାହିଁ । ସେମାନେ ଚୁପ ଚାପ ନିଜ ଆସନରେ ବସି ରହିଲେ ! ସର୍ବସମ୍ମତ ହୋଇଥିବା ଦୃଷ୍ଟିପାତ ଧର୍ମଧ୍ୱଜ ସହଦେବଙ୍କୁ ପୂଜାର ସମସ୍ତ ସାମଗ୍ରୀ ଶ୍ୟାମସୁନ୍ଦରଙ୍କ ସମ୍ମୁଖରେ ଆଣି ରଖିବାକୁ କହିଲେ । ପାଣ୍ଡବମାନେ ଏକ ସ୍ଥାନରେ ଆସି ଜୁଟିଗଲେ । ଦ୍ରୌପଦୀ ମଧ୍ୟ ଧର୍ମରାଜଙ୍କ ପଛରେ ଆସି ବସିଥିଲେ । ଆଜି ଆମ୍ଭେମାନେ ନିଜ ନିଜ ହୃଦସ୍ଥ ଧନ ଯଦୁନନ୍ଦନଙ୍କର ସମସ୍ତଙ୍କ ସମ୍ମୁଖରେ ଶ୍ରଦ୍ଧାର ସହିତ ପୂଜା କରିବାକୁ ଯାଉଛୁ, ଏହି କଥା ସ୍ମରଣ ହେବାରୁ ସମସ୍ତେ ରୋମାଞ୍ଚିତ ହୋଇ ଉଠିଲେ । ଧର୍ମରାଜ ତ ପ୍ରେମରେ ଏପରି ବିହ୍ୱଳ ହୋଇପଡ଼ିଥିଲେ ଯେ, ତାଙ୍କର ଦେହାଦ୍ୱବୋଧ ବି ନଥିଲା । କୁରୁକୁଳର ସମସ୍ତ ଦମ୍ପତ୍ତି ଭଗବାନଙ୍କୁ ପୂଜା କରିବା ପାଇଁ ଏକତ୍ରିତ ହୋଇଯାଇଥିଲେ । ମହାରାଜଙ୍କ ମନ୍ତ୍ରୀ, ପୁରୋହିତ, ସୁହୃଦ୍ ତଥା ଅନ୍ୟାନ୍ୟ ପରିବାର ଲୋକେ ମଧ୍ୟ ସେଠାରେ ବସିଥିଲେ । ସେହି ସଭାରେ ଶିବ, ବ୍ରହ୍ମା, ଇନ୍ଦ୍ରାଦି ଲୋକପାଳ ନିଜ ନିଜର ଗଣମାନଙ୍କ ସହିତ ସେଠାରେ ବିରାଜମାନ କରିଥିଲେ । ଗନ୍ଧର୍ବ, ବିଦ୍ୟାଧର, ସର୍ପ, ଯକ୍ଷ, ରାକ୍ଷସ, ମୁନି, କିନ୍ନର, ପକ୍ଷୀ ଓ ସିଦ୍ଧଚାରଣାଦି ସମସ୍ତେ ସଭାରେ ସମୁପସ୍ଥିତ ଥିଲେ । ଭଗବାନଙ୍କର ପୂଜା ଦେଖି ସମସ୍ତେ ପ୍ରମୁଦିତ ହେଉଥିଲେ । ଋଷିମାନଙ୍କ ସହମତିରେ ଧର୍ମରାଜ ପ୍ରଭୁଙ୍କ ପଦ ପ୍ରକ୍ଷାଳନ କଲେ ଓ ସେହି ଭୁବନ-ପାବନ ପାଦୋଦକକୁ ପ୍ରେମପୂର୍ବକ ଶିରରେ ଛିଞ୍ଚିଲେ । ତାହାପରେ ଅର୍ଘ୍ୟ, ଆଚମନୀୟ, ସ୍ନାନୀୟ ଜଳ ଦେଇ ଯଜ୍ଞୋପବୀତ ସହିତ ଦୁଇଟି ରେଶମୀ ପୀତାମ୍ବର ଓ ବହୁମୂଲ୍ୟ ଆଭୂଷଣ ସେମାନଙ୍କୁ ଅର୍ପଣ କଲେ । ଚନ୍ଦନ, ଅକ୍ଷତ, ପୁଷ୍ପମାଳା, ଧୂପ, ଦୀପ ଓ ନୈବେଦ୍ୟାଦି ଦ୍ୱାରା ତାଙ୍କର ବିଧି ମୁତାବକ ପୂଜା କଲେ । ସେହି ସମୟରେ ଧର୍ମରାଜଙ୍କର ବିଚିତ୍ର ଦଶା ଥିଲା । ପ୍ରେମରେ ସେ ଅଧୀର ହୋଇ ପଡ଼ିଥିଲେ । ହାତ ଥରୁଥିଲା । ପୁରୋହିତ ଏକ ବସ୍ତୁ ଉଠାଇବାକୁ କହୁଥିବାବେଳେ, ସେ ଆଉ କିଛି ଉଠାଉଥିଲେ । ସେ ଚନ୍ଦନ ଲଗାଇବାକୁ କହୁଥିଲେ, ଧର୍ମରାଜ ଅକ୍ଷତ ପକାଉଥିଲେ ।

ସେ ଶ୍ୟାମସୁନ୍ଦରଙ୍କର ତ୍ରିଭୁବନ ମୋହନ ରୂପକୁ ନୟନଭରି ଦେଖିବାକୁ ଚାହୁଁଥିଲେ । କିନ୍ତୁ ନୟନରୁ ନିରନ୍ତର ଲୋତକ ବହୁଥିବାରୁ ସେ ଭଗବାନଙ୍କୁ ଭଲଭାବରେ ଦର୍ଶନ କରି ପାରୁ ନଥିଲେ । ସଭାର କୌଣସି ବସ୍ତୁ ତାଙ୍କୁ ସ୍ପଷ୍ଟଭାବରେ ଦେଖାଯାଉ ନଥିଲା । ସଭାରେ ସର୍ବତ୍ର ଆନନ୍ଦୋଚ୍ଛ୍ୱାସ ବିସ୍ତାର ଲାଭ କରିଥିଲା । ପ୍ରତ୍ୟେକ ଗଗନଭେଦୀ ଜୟ ଜୟକାର ଶବ୍ଦରେ ଚତୁର୍ଦ୍ଦିଗ ମୁଖରିତ କରୁଥିଲେ । ଦେବଗଣ ଆକାଶ ମାର୍ଗରୁ ପୁଷ୍ପବୃଷ୍ଟି କରୁଥିଲେ । ସମସ୍ତ ରାଜ୍ୟବାସୀ ହାତଯୋଡ଼ି ନୟନରୁ ନୀର ଗଡ଼ାଇ ଉଚ୍ଚସ୍ୱରରେ ବାରମ୍ବାର ଜୟଧ୍ୱନି ଦେଇ ନମସ୍କାର କରୁଥିଲେ । ସେହି କୋଳାହଳରେ କାହାରି କଥା କେହି ଶୁଣିପାରୁ ନ ଥିଲେ । ଧର୍ମରାଜ ଆତ୍ମବିସ୍ମୃତ ହୋଇ ଯନ୍ତ୍ରବତ୍ ପୂଜା ପାଠରେ ମଜ୍ଜି ଯାଇଥିଲେ । ସେ ଏପରି କୌଣସି ବସ୍ତୁ ଦେଖୁ ନଥିଲେ, ଯାହାକୁ କି ଭଗବାନଙ୍କୁ ଅର୍ପଣ କରି ନ ଯାଇପାରିବ । ସେ ଅନ୍ୟ କିଛି ନ ଦେଖି ନିଜକୁ ସମ୍ପୂର୍ଣ୍ଣ ରୂପେ ଶ୍ୟାମ-ସୁନ୍ଦରଙ୍କୁ ଅର୍ପଣ କରିଦେଇଥିଲେ ।

ସୂତ କହିଲେ—"ମୁନିଗଣ ! ଏହି ସଭାରେ ଅନ୍ୟମାନେ ପ୍ରସନ୍ନ ଥିଲେ । ସନ୍ତୁଷ୍ଟ ଥିଲେ । କିନ୍ତୁ ଚେଦି ଦେଶର ରାଜା ଦମଘୋଷଙ୍କ ପୁତ୍ର ଶିଶୁପାଳ ଈର୍ଷାରେ ଜଳି ଯାଉଥିଲେ । ସେ ଶ୍ରୀକୃଷ୍ଣଙ୍କର ଏତେ ସମ୍ମାନ ସହ୍ୟ କରି ପାରୁ ନ ଥିଲେ । ଭୀଷଣ କ୍ରୋଧରେ ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗରୁ ସତେ ଯେପରି ଅଗ୍ନି କଣା ଛିଟିକି ପଡ଼ୁଥିଲା । ତାଙ୍କର ନେତ୍ର ଲାଲ ପଡ଼ିଯାଇଥିଲା । କ୍ରୋଧଭରି ହୋଇ ସେ ଦାନ୍ତରେ ଓଠକୁ କାମୁଡ଼ି ଶ୍ରୀକୃଷ୍ଣଙ୍କୁ ପୂଜା କରାଯାଉଥିବା ସମୟରେ ନିଜ ଆସନରୁ ଉଠି ଠିଆ ହେଲେ ଓ ସମସ୍ତଙ୍କୁ ତାଗିଦ କରି ଶେଷରେ ଶାନ୍ତିକାମୀ ଭଗବାନଙ୍କୁ ଅତ୍ୟନ୍ତ କଟୁବାକ୍ୟରେ ଗାଳିଗୁଲଜ କଲେ । ଏ ସମ୍ବନ୍ଧରେ ପରବର୍ତ୍ତୀ ଅଧ୍ୟାୟରେ ମୁଁ ଆପଣମାନଙ୍କୁ କହୁଛି ।"

## ଛପ୍ପୟ

ବୋଲେ ଉଠି ସହଦେବ—'ସଭ ମହିଁ ଶ୍ୟାମ ବିରାଜୈଁ ।
ନଭ ମହିଁ ଉଡ଼ୁଗନ ମଧ୍ୟ ଶରଦ ଶଶିସମ ହରି ଭ୍ରାଜୈଁ ॥
ଯେହି ହରୀ ଜଗ ତେ ପୂଜ୍ୟ ପ୍ରଥମ ପୂଜା ଅଧିକାରୀ ।
ଅଖିଲ ଭୁବନପତି ସଫଲ ଚରାଚର କେ ଦୁଃଖହାରୀ ॥
କରେଯା ସମରଥନ ପିତାମହ, ସାଧୁ ସାଧୁ ସବହି କହତ ।
ଧରମ-ରାଜ ତେ ପ୍ରେମବଶ, ନେହ ନୀର ନୟନନ ଝରତ ॥



# ଭଗବାନ ଓ ଶିଶୁପାଳ

ଇତ୍ଥଂ ନିଶମ୍ୟ ଦମଘୋଷସୁତଃ ସ୍ୱପୀଠାଦ୍,
ଉତ୍ଥାୟ କୃଷ୍ଣଗୁଣବର୍ଣ୍ଣନ ଜାତମନ୍ୟୁଃ ।
ଉତ୍କ୍ଷିପ୍ୟ ବାହୁମିଦମାହ ସଦସ୍ୟମର୍ଷୀ,
ସଂଶ୍ରାବୟନ୍ ଭଗବତେ ପରୁଷାଣ୍ୟଭୀତଃ ।। *

(ଶ୍ରୀ ଭାଃ ୧୦ ସ୍କଃ ୭୪ ଅଃ ୩୦ ଶ୍ଳୋକ)

## ଛପ୍ପୟ

ପାଣ୍ଡବ କୃଷ୍ଣା ସହିତ ସନତ ଅଛ ଭକ୍ତ ସଖାରେ ।
ପୂଜନ ପ୍ରଭୁ କୋ କରେଧା ପ୍ରେମ ତେହିଂ ପାଦ ପଖାରେ ।।
ପୂଜା ବିଧି ସବ ଭୂଲ ଜରେଂ କଛୁ କଛୁ ବତାବେଂ ।
କହିଁ ନ ସକେଂ କଛୁ ବାତ କେଂପେଂ କର ହସ୍ତ ହୁଲଯାବେଂ ।।
ପ୍ରଭୁ ପୂଜା ଶିଶୁପାଲ ଲଖି, ବୋଲେଯା କୃଷ୍ଣ ଅଯୋଗ୍ୟ ଅଛ ।
ଜାଛ, ବରନ, କୁଲ ତେହିଂ ରହିତ, କପଟୀ କାୟର ମଦମଛ ।।

ଭିତରେ ସଦ୍ଭାବନା, ଦୁର୍ଭାବନା ଉଭୟ ତ ରହେ ; ସଜ୍ଜନଙ୍କର ସଦ୍ଭାବନାହିଁ ପ୍ରକାଶ ପାଏ, ଦୁର୍ଭାବନା ଚାପି ରହିଥାଏ । ସେହିପରି ଦୁର୍ଜ୍ଜନଙ୍କର ସଦ୍ଭାବନା ଦବିରହି ଦୁର୍ଭାବନା ପ୍ରକାଶ ପାଇଥାଏ । ହୃଦୟର ଭାବ ମୁଖମଣ୍ଡଳରେ ସ୍ପଷ୍ଟ ଝଲକି ଉଠେ ।

---

* ପ୍ରଚଣ୍ଡ ଦମଘୋଷ ବଳା । କୃଷ୍ଣର ନିକଟେ ମିଳିଲା ।।
କୋପେ ଅଧର କାମୁଡ଼ଇ । ଶୋଣିତ ନୟନେ ଅନାଇ ।।
କୃଷ୍ଣର ଗୁଣ ଧର୍ମ ନେଇ । କହଇ ତୋଳି ବେନି ଭୁଜ ।।
ସଭାଜନଙ୍କୁ କୋପମନେ । ବୋଲଇ ପରୁଷ ବଚନେ ।।

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ : ୭୧ ଅ)

ଯେପରି-ବସ୍ତୁ ସମ୍ମୁଖକୁ ଆସେ ମନ ସେହି ଭାବରେ ଭାବିତ ହୋଇଯାଏ । ଆନନ୍ଦଦାୟକ ବସ୍ତୁର ଝଲକ ମୁଖମଣ୍ଡଳରେ ଆଚ୍ଛାଦିତ ହୁଏ । ଲୋମ ଲୋମରେ ଆନନ୍ଦ ଭରିଉଠେ । ଚକ୍ଷୁ ଉଜ୍ଜ୍ୱଳ ହୋଇଉଠେ ଓ ଅନୁରାଗରେ ପ୍ରାଣ ଭରିଉଠେ । ଏହାର ବିପରୀତରେ ଦୁଃଖଦାୟକ ଜନକ କୌଣସି ଦ୍ୱେଷକାରୀ, କ୍ରୂର, ବିଦ୍ୱେଷୀ ଯଦି ସମ୍ମୁଖରେ ଉପସ୍ଥିତ ହୁଏ, ତାହାହେଲେ ହୃଦୟରେ ଘୃଣା ଉତ୍ପନ୍ନ ହୁଏ । ମୁଖମଣ୍ଡଳ କ୍ରୋଧ, ଘୃଣା ଓ ଦ୍ୱେଷରେ ଲାଲପଡ଼ିଯାଏ । ଯେଉଁ ବ୍ୟକ୍ତି ଈର୍ଷାପରାୟଣ ହୁଏ, ଅନ୍ୟର ଉନ୍ନତି ଦେଖି ସର୍ବଦା ତାହାର ଗାତ୍ରଦାହ ହେଉଥାଏ ; ସେ ସମୟରେ ସେ ଅତ୍ୟନ୍ତ ବୀଭତ୍ସ ଦେଖାଯାଏ । ମନୁଷ୍ୟ ମାନେ ହିଁ ଭାବଦ୍ୱାରା ଜୀବିତ । ମୃତ ତାହାକୁ କହନ୍ତି ଯାହାର ମୁଖମଣ୍ଡଳରେ କୌଣସି ପ୍ରକାର ଭାବ ପ୍ରକାଶ ପାଏ ନାହିଁ ! ଜଣେ ସୁନ୍ଦର ଚେହେରା ବିଶିଷ୍ଟ ବ୍ୟକ୍ତି ଯଦି କ୍ରୋଧରେ ଜର୍ଜରିତ ହୁଏ, ତାହାହେଲେ ତାହାର ଆକୃତି ଅତି ଭୟଙ୍କର ହୋଇଯାଏ । ଦ୍ୱେଷୀ ପୁରୁଷ ଜନମତକୁ ଅପେକ୍ଷା କରେ ନାହିଁ ।

ସୂତ କହିଲେ—"ମୁନିଗଣ ! ଧର୍ମରାଜ ଯୁଧିଷ୍ଠିରଙ୍କ ଦ୍ୱାରା ଭଗବାନ ଶ୍ୟାମସୁନ୍ଦରଙ୍କର ଅଗ୍ରପୂଜା ହେଉଥିବାର ଦେଖି ସମସ୍ତେ ଆନନ୍ଦରେ ବିଭୋର ହୋଇ-ପଡ଼ିଥିଲେ । କିନ୍ତୁ ରାଜନ୍ୟବର୍ଗଙ୍କ ମଧ୍ୟରେ ଜଣେ ଭଗବାନଙ୍କର ଜନ୍ମଜନ୍ମର ଶତ୍ରୁ ବସିଥିଲା । ସେ ଥିଲା ଚେଦିଦେଶର ରାଜା ଦମଘୋଷଙ୍କ ପୁତ୍ର ଶିଶୁପାଳ । ସେ ଯେତେବେଳେ ଜନ୍ମ ହୋଇଥିଲା, ସେହି ଜନ୍ମ ସମୟଠାରୁ ସେ ଭଗବାନଙ୍କୁ ଦ୍ୱେଷ କରୁଥିଲା । ଅପରାଜିତ ଭଗବାନଙ୍କୁ ପରାଜିତ କରିବା ପାଇଁ ସେ ମହାବଳୀ ଜରାସନ୍ଧର ସେନାପତି ହୋଇଥିଲା । କିନ୍ତୁ ସେହିଦିନଠାରୁ ଭଗବାନ ତାହାର ଭାବୀ ପତ୍ନୀ ରୁକ୍ମିଣୀଙ୍କୁ ବଳପୂର୍ବକ ହରଣ କରିନେଲେ ଓ ସେ ଅପଦସ୍ତ ହୋଇ ରିକ୍ତହସ୍ତରେ ଘରକୁ ଫେରିଥିଲା, ସେହିଦିନଠାରୁ ତାହାର ଦ୍ୱେଷ ବଢ଼ି ଯାଇଥିଲା । ସେ ବଳେ ବଳେ କୌଶଳେ ଭଗବାନଙ୍କର ଅନିଷ୍ଟ କରିବା ପାଇଁ ସର୍ବଦା ଚେଷ୍ଟା କରୁଥିଲା । କିନ୍ତୁ ଭଗବାନଙ୍କର ଅନିଷ୍ଟ କରିବା କ'ଣ ତାହାର ପକ୍ଷେ ସମ୍ଭବ ? ସିଏ ତ ସମସ୍ତଙ୍କର ପରମ ଇଷ୍ଟ । ଜରାସନ୍ଧ ମରିଯିବାରୁ ତାହାର ଉତ୍ସାହ ଭାଙ୍ଗିଯାଇଥିଲା । ସେ ଅନିଚ୍ଛା ସତ୍ତ୍ୱେ ଧର୍ମରାଜଙ୍କର ରାଜସୂୟ ଯଜ୍ଞକୁ ସମର୍ଥନ କରିଥିଲା ଓ ଯଜ୍ଞକୁ ଆସିଥିଲା । ସେ ଆଶା କରିଥିଲା, ଜରାସନ୍ଧ ମୃତ୍ୟୁପରେ ହିଁ ସେ ଏ ସଂସାରରେ ଏକମାତ୍ର ସର୍ବଶ୍ରେଷ୍ଠ ରାଜା । ରାଜସୂୟ ଯଜ୍ଞରେ ରାଜାମାନଙ୍କ ମଧ୍ୟରେ ତା'ର ଅଗ୍ରପୂଜା ହେବ । କିନ୍ତୁ ପୂଜା ସମୟରେ ତାହାର ଆଶା ବିପରୀତ ଦେଖିଲା । ସେ ଦେଖିଲା, ତାହାର ଶତ୍ରୁ ଶ୍ରୀକୃଷ୍ଣଙ୍କର ଅଗ୍ରପୂଜା ହେଉଛି । ଏଥିରେ ସେ କ୍ରୋଧରେ ଅଗ୍ନିଶର୍ମା ହୋଇଉଠିଲା । ଭଗବାନଙ୍କର ଏପରି ମହତୀ ପୂଜା, ଏତେ ପ୍ରଶଂସା ଓ ପ୍ରତିଷ୍ଠା ଦେଖି ସେ ଈର୍ଷାପରାୟଣ ହୋଇଉଠିଲା । ସେ କ୍ରୋଧଜ୍ୱର ହୋଇ ନିଜ ଆସନରୁ ଉଠି ଠିଆହେଲା ଓ କର୍କଶ ବାଣୀରେ ସମସ୍ତଙ୍କୁ ଶୁଣାଇ କହିଲା—"ସମସ୍ତେ ଚୁପ୍ ହୋଇଯାଅ, କେହି ହେଲେ ଏକ ଶବ୍ଦ ବି ଉଚ୍ଚାରଣ

କର ନାହିଁ । ବାଦ୍ୟ ଆଦି ବନ୍ଦ କର । ମୁଁ ଏତେବଡ଼ ସଭାରେ ରାଜାମାନଙ୍କର ଏତେ ଅପମାନ କଦାପି ସହ୍ୟକରି ପାରିବ ନାହିଁ । ଯେଉଁ ସଭାରେ ଘୋର ଅନ୍ୟାୟ ହେଉଛି, ସେଥିରେ ଅସମର୍ଥ ବ୍ୟକ୍ତି ଗୋଟିଏ ମୂର୍ତ୍ତି ଭଳି ରହିବା ଉଚିତ୍ ନୁହେଁ ଓ ସମର୍ଥ ବ୍ୟକ୍ତି ସେହି ଅନ୍ୟାୟର ପ୍ରତିକାର ପାଇଁ ନିଜର ପରାକ୍ରମ ଦେଖାଇ ଦେବା ଉଚିତ୍ । ମୁଁ ସାମର୍ଥ୍ୟବାନ୍, କ୍ଷତ୍ରିୟ । ମୁଁ ଏହି ଅନ୍ୟାୟର ବିରୋଧ କରୁଛି । ଆଶାକରେ ଏଠାରେ ଥିବା ସମସ୍ତ ରାଜା ମୋତେ ସମର୍ଥନ କରିବେ ।'

ଶିଶୁପାଳର ଭୟଙ୍କର ଗର୍ଜନ ତର୍ଜନ ଶୁଣି ସମସ୍ତ ରାଜା ତାଟକା ହୋଇଗଲେ । ସମସ୍ତେ ଚୂପଚାପ ହୋଇଗଲେ । ବାଦ୍ୟ ବାଜଣା ବନ୍ଦ ହୋଇଗଲା । ସମସ୍ତେ ତା ମୁହଁକୁ ଚାହିଁ ରହିଲେ । ସମସ୍ତେ ଚିନ୍ତାକଲେ—"ଏ ଏପରି କ'ଣ କହୁଛି, କେଉଁ କଥାର ବିରୋଧ କରିବ ?" ଏହି ସମୟରେ ଶିଶୁପାଳ ଅଟ୍ଟହାସ୍ୟ କରି କହିଲା— "ସଭାରେ ସମୁପସ୍ଥିତ ସଭାପତି, ସଦସ୍ୟ, ତଥା ଅନ୍ୟାନ୍ୟ ନୃପତିଗଣ ! ଆପଣମାନେ ମୋ କଥାକୁ ଧୈର୍ଯ୍ୟର ସହିତ ଶୁଣନ୍ତୁ । ମୁଁ ଯାହା କହିବାକୁ ଚାହୁଁଛି, ତାହା ଆପଣମାନେ ଗମ୍ଭୀରତା ପୂର୍ବକ ବିଚାର କରନ୍ତୁ । ଭୀରୁକତା ବଶହୋଇ ଅଥବା ଭୟ, ଲୋଭ ଓ ସଙ୍କୋଚ ବଶ ହୋଇ ମୋ କଥାକୁ ଯେପରି ଟାଳି ନ ଦିଅନ୍ତୁ ।"

ଏହା ଶୁଣି ଜଣେ ରାଜା କହିଲେ—"ଆପଣ କାହିଁକି ଏତେ ବଡ଼ ଲମ୍ବା ଭୂମିକା ନେବାକୁ ସାହସ କରୁଛନ୍ତି ? ଯାହା କହିବାର କଥା ଶୀଘ୍ର କହନ୍ତୁ ।"

ଶୁଷ୍କ ହସ ହସି ଶିଶୁପାଳ କହିଲା—"କ'ଣ ମୁଁ ଅବା କହିବ ? ସମୟ ବଡ଼ ବଳବାନ । ଏହାକୁ ଅତିକ୍ରମ କରିବା ବଡ଼ କଠିନ । କେବେ କେବେ ବି ପାଦର ଧୂଳି ଉଡ଼ି ଆସି ମୁଣ୍ଡ ଉପରେ ପଡ଼େ । କେବେ କେବେ ସୁନ୍ଦର ଫୁଲଟିକୁ ପାଦତଳେ ବି ମକଚି ଦିଆଯାଏ । ଯେଉଁମାନଙ୍କର ମାନ ସମ୍ମାନ ଅଛି, ସେମାନଙ୍କୁ ବି କିଛି କହିବା ଦରକାର ପଡ଼ିବ ନାହିଁ । କିନ୍ତୁ ଯିଏ ସମ୍ମାନ ପାଇବାରେ ସର୍ବଦା ଅଯୋଗ୍ୟ, ସମସ୍ତଙ୍କ ଆଗରେ ତା'ର ନିର୍ଲଜଙ୍କ ଭଳି ପୂଜା କରାଯାଉଛି ଓ କୁଳୀନ କ୍ଷତ୍ରିୟ ରାଜାଗଣ ଭୟରେ ଏହାର ବିରୋଧ ବି କରୁ ନାହାନ୍ତି । ପ୍ରତ୍ୟେକ ପ୍ରତ୍ୟେକଙ୍କ ମୁହଁକୁ କେବଳ ଚାହୁଁଛନ୍ତି । ଏ ସଭାରେ ଅନେକ ବୟୋବୃଦ୍ଧ, ଜ୍ଞାନବୃଦ୍ଧ, ବିଦ୍ୟାବୃଦ୍ଧ ଓ କୁଳ, ଶୌର୍ଯ୍ୟ, ବର୍ଣ୍ଣ ଏବଂ ପ୍ରଭାବବୃଦ୍ଧ ପୁରୁଷଗଣ ବସିଅଛ । କିନ୍ତୁ ଆଶ୍ଚର୍ଯ୍ୟ ଲାଗୁଛି, ସମସ୍ତେ ଆଜି କାହିଁକି ଏତେ ବୁଦ୍ଧିଶୂନ୍ୟ ହୋଇପଡ଼ିଛ । କେହି କିଛି ପ୍ରତିବାଦ କରୁନାହାନ୍ତି । ଅନ୍ୟାୟର ବିରୋଧ ବି କରୁନାହାନ୍ତି । ଆପଣମାନଙ୍କର ସାମର୍ଥ୍ୟ ସବୁ ଗଲା କୁଆଡେ ? ମୁଁ ଦେଖୁଛି ଏଠାରେ ଆପଣମାନେ ଯେତେ ସଭାପତି ସମୁପସ୍ଥିତ, ସମସ୍ତେ ସତ୍ପାତ୍ର ପରୀକ୍ଷା କରିବାରେ ଧୂରନ୍ଧର । ଆପଣମାନେ ସମସ୍ତେ ଜାଣନ୍ତି ଯେ, ପ୍ରକୃତ ଶ୍ରେଷ୍ଠ କିଏ ଓ କନିଷ୍ଠ କିଏ ।

ଏ ଯଜ୍ଞରେ କାହାର ଅଗ୍ରପୂଜା ହେବା ଉଚିତ୍ ଏ ସମ୍ବନ୍ଧରେ ଆପଣମାନଙ୍କ ଆଉଥରେ ବିଚାର କରନ୍ତୁ । ଏ ମେଷତୁଲ୍ୟ ନେତା ସହଦେବର କହିବା ଅନୁସାରେ ଯେପରି ଆପଣମାନେ ଆଉଥରେ ଭ୍ରମରେ ନ ପଡ଼ନ୍ତୁ । ମୁଁ ସହଦେବର ଏହି ପ୍ରସ୍ତାବକୁ ଘୋର ବିରୋଧ କରୁଅଛି ଓ ଏହି କୁଳକଳଙ୍କ ଗୋପାଳକୃଷ୍ଣର ଅଗ୍ରପୂଜାକୁ କଦାପି ପ୍ରଶ୍ରୟ ଦେବି ନାହିଁ । ଯେଉଁ ସଭାରେ ଅପୂଜ୍ୟ ବ୍ୟକ୍ତିର ପୂଜା କରାଯାଏ, ତଥା ପୂଜ୍ୟ ବ୍ୟକ୍ତିର ତିରସ୍କାର କରାଯାଏ, ସେହି ସଭାରେ ଅନ୍ୟାୟ ହୁଏ । ସେହି ସଭା ଅବଶ୍ୟ ନିରର୍ଥକ ହୁଏ । ଯୁଧିଷ୍ଠିର ଆମ ସମସ୍ତଙ୍କୁ ଏଠାକୁ ଡକାଇ ଆମ୍ଭମାନଙ୍କୁ ଘୋର ଅପମାନ ଦେଇଛନ୍ତି । ଆମ୍ଭେମାନେ ଏପରି ସଭାରେ ମୁହୂର୍ତ୍ତେ ମାତ୍ର ରହିବା ଉଚିତ୍ ନୁହେଁ । ରାଜନ୍ୟବର୍ଗ ! ତୁମ୍ଭମାନଙ୍କୁ ମୁଁ ଶତ ଧିକ୍କାର କରୁଛି । ଯେ ହେତୁ ତୁମ୍ଭେମାନେ ଛତ୍ରଚାମରଧାରୀ ହୋଇ ମଧ୍ୟ ନିଜ ନିଜ ସମ୍ମୁଖରେ ଏକ ଗଉଡ଼ର ପୂଜାକୁ ଦେଖୁଥିଲ । ତାହା ଏ ପର୍ଯ୍ୟନ୍ତ ବିରୋଧ କରୁନାହଁ । ଏ ସଭାରୁ ସଙ୍ଗେ ସଙ୍ଗେ ଉଠି ଚାଲ । ଏ ଯଜ୍ଞର ବିରୋଧ କର । ପାଣ୍ଡବପକ୍ଷର ରାଜାମାନଙ୍କୁ ହତ୍ୟା କର ।"

ସୂତ କହିଲେ—"ମୁନିଗଣ ! ଏହିପରି ଭାଷଣ ଦେଇ ଓ କ୍ରୋଧଭର ହୋଇ ଶିଶୁପାଳ ନିଜ ଆସନରୁ ଉଠି ଚାଲିଗଲା । ତାହାର କେତେକ ସମର୍ଥକ ରାଜା ମଧ୍ୟ ଉଠି ଚାଲିଯିବାକୁ ବସିଲେ । ଧର୍ମରାଜ ଦେଖିଲେ, ଯଜ୍ଞରେ ଏ ଘଟଣା ତ ବଡ଼ ବିଘ୍ନ ପହଞ୍ଚାଇଲା । ସେ ସଙ୍ଗେ ସଙ୍ଗେ ଧାଇଁ ଯାଇ ଶିଶୁପାଳକୁ ଧରିପକାଇଲେ ଓ ଅତ୍ୟନ୍ତ ବିନମ୍ର ସହିତ କହିଲେ—" ଭାଇ ! ଏପରି କରନାହିଁ । ମୁଁ ତ ସମସ୍ତଙ୍କ ସମ୍ମତିରେ ଶ୍ୟାମସୁନ୍ଦରଙ୍କର ପୂଜା କରୁଛି । ତୁମେ ପଳାଇ ଯାଉଛ କାହିଁକି ? ବସ, ଆମ୍ଭମାନଙ୍କୁ ଉପଦେଶ ଦିଅ ।"

ଶିଶୁପାଳ ରାଗରେ ଜଳିଉଠି ସଙ୍ଗେ ସଙ୍ଗେ କହିଲା—"ଯୁଧିଷ୍ଠିର ! ସମସ୍ତେ ତୁମକୁ ଧର୍ମାତ୍ମା ବୋଲି କହନ୍ତି, ମୁଁ ମଧ୍ୟ ତୁମକୁ ସ୍ନେହ କରେ । ମୁଁ ଯଦି ସ୍ନେହ କରୁନଥାନ୍ତି, ତାହାହେଲେ ତୁମ ଯଜ୍ଞକୁ ଆସିଥାଆନ୍ତି କାହିଁକି ?

"ମୁଁ ତୁମକୁ ଯେଉଁ ଧନରତ୍ନ ଓ ଅନ୍ୟାନ୍ୟ ଉପକରଣମାନ ଦେଇଛି, ତାହା ଡରିକରି ବା ଭେଟି ସୂତ୍ରରେ ଦେଇ ନାହିଁ । ମୁଁ ତ ତାହା ତୁମର ଶୁଭ କାମରେ ସହାୟତା କରିବାପାଇଁ ଦେଇଛି । ଏହାର ପରିଣାମ ଏହା ହେଲା ଯେ, ତୁମେ ଆମ୍ଭମାନଙ୍କୁ ଅପମାନିତ କଲ । କୃଷ୍ଣର କି ଯୋଗ୍ୟତା ଅଛି ଯେ, ତୁମେ ତାହାର ପୂଜା ସର୍ବପ୍ରଥମେ କରୁଅଛ ?

"ଦେଖ, ଏହା ହେଉଛି ରାଜାମାନଙ୍କର ସଭା । ଏ ସଭାରେ ତୁମେ ଯଜ୍ଞ ସ୍ଥଳରେ କୌଣସି ସର୍ବଶ୍ରେଷ୍ଠ ରାଜାଙ୍କୁ ପ୍ରଥମେ ପୂଜା କରିବାର କଥା । ତୁମେ ଧର୍ମପୂର୍ବକ କହ

ବୃଷ୍ଣି ବଂଶରେ ଏ ପର୍ଯ୍ୟନ୍ତ କେହି କେବେ ଛତ୍ର ଚାମର-ଧାରୀ ରାଜା ରାଜତ୍ୱ କଲେଣି କି ? ଏ କୁଳ ତ ମହାରାଜ ଯଯାତିଙ୍କ ଶାପରେ ଅଭିଶପ୍ତ । ଏଥିପାଇଁ କୃଷ୍ଣଙ୍କୁ କେବେହେଲେ ରାଜା ବୋଲି ସ୍ୱୀକାର କରାଯାଇ ନପାରେ । ତଥାପି ତୁମେ ସେହି କୃଷ୍ଣର ଅଗ୍ରପୂଜା କରିବାକୁ ବସିଛ କପରି ? ତୁମେ କହିପାର ଆମେ ତ ଶ୍ରେଷ୍ଠ କ୍ଷତ୍ରିୟଙ୍କ ପୂଜା କରିବା ଉଚିତ୍, ତେବେ ଯାଇ ଯାଦବଙ୍କ ଗଣନା କ୍ଷତ୍ରିୟମାନଙ୍କ ମଧ୍ୟରେ ହୋଇପାରିବ ନାହିଁ । ଏମାନେ ତ କ୍ଷତ୍ରିୟମାନଙ୍କ ଦ୍ୱାରା ବହିଷ୍କୃତ । ଏହା ଜାଣି ଜାଣି ତୁମେ କାହିଁକି କୃଷ୍ଣର ପୂଜା କରିବ ? ତୁମେ କହିପାର, ଆମେ ତ ନିଜର କୌଣସି ଶ୍ରେଷ୍ଠ ସମ୍ବନ୍ଧୀ ରାଜାଙ୍କର ପୂଜା କରି ଆସୁଥିଲୁ, ତେଣୁ ବୟୋବୃଦ୍ଧ ମହାରାଜ ଦ୍ରୁପଦ ସମୁପସ୍ଥିତ ଥିବାରୁ ତାଙ୍କୁ ପୂଜା କରିବାରେ କାହାରି କିଛି ଆପତ୍ତି ନଥିବ । ଏପରି ଶ୍ରେଷ୍ଠ ରାଜାଙ୍କୁ ଛାଡ଼ି ରାଜ୍ୟହୀନ କୃଷ୍ଣଙ୍କୁ ତୁମେ କାହିଁକି ଅଗ୍ରପୂଜାର ସମ୍ମାନ ଦେବାକୁ ଯାଉଛ ? ତୁମେ କହିପାର ଦ୍ରୁପଦଙ୍କ ସହିତ ଆମର ପାରିବାରିକ ସମ୍ପର୍କ ଅଛି । ମାତୃକୁଳ ସମ୍ପର୍କକୁ ନେଇ ଆମେ ତାଙ୍କର ଅଗ୍ରପୂଜା କରିବା ଉଚିତ୍ ଥିଲା । ତେଣୁ ତୁମ ମାତାଙ୍କ ଭାଇ (ମାମୁଁ) ବସୁଦେବ ଉପସ୍ଥିତ ଥାଉ ଥାଉ ତାଙ୍କ ପୂଜା ଓ ତାଙ୍କ ଶ୍ୱଶୁର ଉଗ୍ରସେନ ଉପସ୍ଥିତ ଥିବାରୁ ତାଙ୍କର ପୂଜା ମଧ୍ୟ କରାଯାଇପାରନ୍ତା । ମଦ୍ରଦେଶର ମହାରାଜ ଶଲ୍ୟ ମଧ୍ୟ ଉପସ୍ଥିତ ଅଛନ୍ତି, ତାଙ୍କର ପୂଜା ମଧ୍ୟ କରାଯିବାର କୌଣସି ଅସୁବିଧା ନାହିଁ । ମାମୁଁଙ୍କ ପୁଅର ବି ପୂଜା କରାଯାଇପାରେ । ଏମାନେ ଏତେ ରାଜା ଥାଉ ଥାଉ ଓ କୃଷ୍ଣଙ୍କ ବଡ଼ଭାଇ ବଳରାମ ଉପସ୍ଥିତ ଥାଉ ଥାଉ ତାଙ୍କର ଅଗ୍ରପୂଜା କରି ନଯାଇ ତୁମେ କେଉଁ କାରଣରୁ କୃଷ୍ଣଙ୍କ ପୂଜା କରିବାକୁ ଯାଉଛ ?

"ତୁମେ କହିପାର ଆମ ରାଜାମାନଙ୍କ ମଧ୍ୟରେ ଯିଏ ଅସ୍ତ୍ରଶସ୍ତ୍ର ବିଦ୍ୟାରେ ସବୁଠାରୁ ଶ୍ରେଷ୍ଠ, ଧନୁର୍ବେଦରେ ଆଚାର୍ଯ୍ୟ ତ ତାଙ୍କୁ ପୂଜା କରାଯିବା ଉଚିତ୍ । ତାହା ହେଲେ ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ଓ ଅନ୍ୟାନ୍ୟ ଧନୁର୍ବେଦ ବିଶାରଦ ଆଚାର୍ଯ୍ୟଗଣ ଉପସ୍ଥିତ ଥିବାରୁ ଏ ସମସ୍ତଙ୍କର ତିରସ୍କାର କରି ନଯାଇ ସେମାନଙ୍କ ମଧ୍ୟରୁ କାହାରି ହେଲେ ଅଗ୍ରପୂଜା କରାଯାଇପାରେ । ତାହା ନ କରି ତୁମେ ଏ ରଣରୁ ପଳାୟନପନ୍ଥୀ କୃଷ୍ଣଙ୍କ ପୂଜା କାହିଁକି କରିବ ? ତୁମେ କହିପାର ଆମେ ତ କୁଳ ବୃଦ୍ଧଙ୍କର ପୂଜା ପ୍ରଥମେ କରିବା ଉଚିତ୍ । ଯେହେତୁ ତୁମ କୁଳରେ ସବୁଠାରୁ ବୃଦ୍ଧ ଭୀଷ୍ମ ପିତାମହ ଏଠାରେ ସମୁପସ୍ଥିତ, ଯିଏ କି ରଣରେ ପରଶୁରାମଙ୍କୁ ମଧ୍ୟ ପରାସ୍ତ କରିଥିଲେ । ଯାହାଙ୍କର ମୃତ୍ୟୁ ନିଜ ଅଧୀନ । ତାଙ୍କୁ ଛାଡ଼ି କାଲିର ମେଣ୍ଢକ ଠୋକା କୃଷ୍ଣର ପୂଜା କରାଯିବା ଉଚିତ୍ ନୁହେଁ । ବଡ଼ ବଡ଼ ତପସ୍ୱୀ, ବିଦ୍ୱାନ୍, ବ୍ରତୀ, ନିଷ୍କଳୁଷ ବ୍ରହ୍ମନିଷ୍ଠ ଲୋକପାଳ ଆଦି ପୂଜ୍ୟଗଣ ମଧ୍ୟ ଏଠାରେ ଉପସ୍ଥିତ । ଏମାନେ ଥାଉ ଥାଉ ଗୁଣହୀନ କୃଷ୍ଣଙ୍କୁ ତୁମେ କପରି ପୂଜା କରିବାକୁ ଯାଉଛ ? ତୁମେ କହିପାର ଆମର ତ ଯଜ୍ଞର ଋତ୍ୱିକ ତଥା ଯଜ୍ଞର ସମସ୍ତ ସମ୍ଭାର ଯୋଗାଡ଼ କରିଥିବା ବ୍ୟକ୍ତିଙ୍କର ପୂଜା କରିବା ଉଚିତ୍ । ଭଗବାନ୍ ବ୍ୟାସ ତ

ଏଠାରେ ଉପସ୍ଥିତ, ସେ ତ ତୁମର ପିତାମହ, ତାଙ୍କର କାହିଁକି ଅଗ୍ରପୂଜା କରି ନପିବ ? ତୁମେ କହିପାର ଆମେ ତ ସବୁଠାରୁ ବଳୀ ବ୍ୟକ୍ତିଙ୍କର ଅଗ୍ରପୂଜା ଏ ଯଜ୍ଞରେ କରିବା ଉଚିତ । ତେଣୁ ବଳଦେବ, ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଅଶ୍ୱତ୍ଥାମା ଆଦି ଜଗତ୍ ବିଖ୍ୟାତ ବଳୀ ଥାଉ ଥାଉ ଏ ବଳହୀନ କୃଷ୍ଣର ପୂଜା କରାଯିବା ଉଚିତ ନୁହେଁ । ମୂର୍ଦ୍ଧାଭିଷିକ୍ତ ରାଜ ଚକ୍ର ଥିବା ରାଜାମାନେ ଥାଉ ଥାଉ ରାଜଲକ୍ଷଣ ହୀନ କୃଷ୍ଣର ପୂଜା କରାଯିବା ଦ୍ୱାରା ଏହା ସମସ୍ତଙ୍କୁ ତିରସ୍କାର କରାଯାଉଛି ।

"ଏବେ ତୁମେ ଜାଣିରଖ ମୋ ସହଦେବ ଓ ଭୀଷ୍ମଙ୍କ କଥାରେ ପରିଚାଳିତ ହୋଇ ତୁମର ଭୁଲ ହୋଇଯାଇଛି ଓ ତୁମେ କୃଷ୍ଣଙ୍କୁ ପୂଜା କରିବପିନା ଉଚିତ ହୋଇନାହିଁ । ତୁମେ ତାଙ୍କୁ କହିଦେବା ଉଚିତ ଥିଲ ଯେ, ମୁଁ ଏ ପୂଜାର ଅଧିକାରୀ ନୁହେଁ । ଏ ପୂଜାରେ ସହଜେ ତ ତାର ମାନ ବଢ଼ିବ ନାହିଁ, ବରଂ ସେ ଅପମାନିତ ହେବ । ଯେପରି ନାକ ନଥିବା ସ୍ତ୍ରୀ ଲୋକକୁ ନୋଥ ଦେବା, ନେତ୍ରହୀନକୁ ଦର୍ପଣ ଦେଖାଇବା, ନପୁଂସକକୁ ବିବାହ ଦେବା, ବାହୁ ନଥିବା ବ୍ୟକ୍ତିକୁ କଙ୍କଣ ଦେବା ଓ ବଧୀରକୁ ସଙ୍ଗୀତ ଶୁଣାଇବା ହିଁ ସେମାନଙ୍କୁ ଅପମାନିତ କରିବା ବ୍ୟତୀତ ଅନ୍ୟ କିଛି ନୁହେଁ, ସେହିପରି କୃଷ୍ଣର ଅଗ୍ରପୂଜା ଅସଙ୍ଗତ । ତୁମର ବୁଦ୍ଧି ଭ୍ରଷ୍ଟ ହୋଇଯାଇ ଥିବାରୁ ତୁମେ ଏପରି ଅନ୍ୟାୟ କାର୍ଯ୍ୟକୁ ପ୍ରଶ୍ରୟ ଦେଉଛ । ତେଣୁ ମୁଁ ଏଠାରେ ମୁହୂର୍ତ୍ତିଟିଏ ବି ରହିବାକୁ ଚାହୁଁ ନାହିଁ ।"

ଧର୍ମରାଜ ଅତ୍ୟନ୍ତ ସ୍ନେହର ସହିତ ଶିଶୁପାଳକୁ ବୁଝାଇ କହିଲେ, "ଦେଖ ଭାଇ ! ତୁମେ ଶ୍ରୀକୃଷ୍ଣଙ୍କୁ ଏପରି କଠୋର ବଚନ କହିବା ଉଚିତ୍ ନୁହେଁ, କିମ୍ବା ବୟୋବୃଦ୍ଧ ଭୀଷ୍ମ ପିତାମହଙ୍କୁ ଏ ପ୍ରକାର ଅପମାନିତ କରିବା ଉଚିତ ନୁହେଁ । ତୁମେ ଚିନ୍ତା କରି ଦେଖ, ଏ ସଭା ମଧ୍ୟରେ ତୁମଠାରୁ ଅବସ୍ଥାରେ ପଦ ପ୍ରତିଷ୍ଠାରେ, ବିଦ୍ୟା-ବୁଦ୍ଧିରେ ଶ୍ରେଷ୍ଠ ଅନେକ ରାଜା ଅଛନ୍ତି । କେହି ହେଲେ ଏ ପ୍ରକାର ବିରୋଧ କରୁନାହାନ୍ତି । ତେଣୁ ତୁମେ ମଧ୍ୟ ଆମ ଯଜ୍ଞରେ ବିଘ୍ନ ପହଞ୍ଚାଇବା ଉଚିତ୍ ନୁହେଁ । ତୁମର ଯାହା କହିବାର କଥା ବସିକରି କହ । ସେଥିରେ ଯଦି ସମସ୍ତେ ସମ୍ମତି ପ୍ରଦାନ କରିବେ, ତେବେ ତାହା ମୁଁ କରିବି ।"

ଶିଶୁପାଳ ଏ କଥାରେ କ୍ରୁଦ୍ଧିତ ହୋଇ କହିଲା—"କେହି ଭୟରେ ବିରୋଧ ନକରି ପାରନ୍ତି; କିନ୍ତୁ ଏ ଘଟଣା ସମସ୍ତଙ୍କୁ ଖରାପ ଲାଗୁଛି । ଏହା ଅତି ଘୃଣାର ବିଷୟ । ତୁମର ଏବେ ଧନଗର୍ବ ହୋଇଯାଇଛି । ଭୀଷ୍ମ ମଧ୍ୟ ତୁମ କଥାକୁ ଚାପି ଧରିଛନ୍ତି । ଯେଉଁଠି ଏ ପ୍ରକାର ଅନ୍ୟାୟ ଚାଲିଛି, ଅଧର୍ମ, ପାପ, ପକ୍ଷପାତିତା ଓ ମହାପୁରୁଷଙ୍କୁ ଅପମାନିତ କରାଯାଉଛି, ସେଠାରେ ମୁଁ ଏକ କ୍ଷଣ ବି ରହିବାକୁ ଚାହୁଁ ନାହିଁ । ମୁଁ ପ୍ରାଣପଣେ ଏହାର ବିରୋଧ କରିବି ଓ ତୁମ ଯଜ୍ଞ ପୂର୍ଣ୍ଣ ହେବାକୁ ଦେବି ନାହିଁ ।"

ଏହା ଶୁଣି ଭୀଷ୍ମ ଭୀଷଣ ରାଗିଗଲେ । ସେ ଧର୍ମରାଜଙ୍କୁ କହିଲେ—"ଯୁଧିଷ୍ଠିର ! ତୁମେ ଏ ନୀଚ ଲୋକଟାକୁ ଏତେ ଅନୁନୟ ହୋଇ କାହିଁକି କ'ଣ କହୁଛ ? ଏଇଟା ତ ଦୁଷ୍ଟଟାଏ ବୋଲି ଜାଣୁନ । ତା ଜନ୍ମଠାରୁ ମୁଁ ତାକୁ ଭଲ୍‌ଭାବେ ଜାଣିଛି । ସେ ଶ୍ରୀକୃଷ୍ଣ ଦ୍ୱେଷୀ, ନିନ୍ଦକ, ଅଧମ, ଅଭିମାନୀ ଓ କଳିଜଟାଏ । ସେ ଯାଉ ତାକୁ ଛାଡ଼ିଦିଅ । ସେ ଯଦି ତୁମ କଥା ନ ଶୁଣୁଛି, ତାହାର ଯାହା କରିବାର ସେ କରୁ । ସେ କାପୁରୁଷଟା ଚାଲିଗଲେ କ'ଣ ଆମ ଯଜ୍ଞ କାର୍ଯ୍ୟ ଅପୂର୍ଣ୍ଣ ରହିଯିବ ? ଯଦି ସେ ଏଠାରେ ବସି ମୋ କଥା ଶୁଣିବ, ତାହାହେଲେ ମୁଁ ତାକୁ ବତାଇବି ଯେ, ଶ୍ରୀକୃଷ୍ଣ କେବଳ ଯଜ୍ଞର ସ୍ୱାମୀ ନୁହନ୍ତି, ସେ ଚରାଚର ବିଶ୍ୱର ସ୍ୱାମୀ ଅଟନ୍ତି । ଯଜ୍ଞର ପ୍ରାରମ୍ଭରେ, ମଧ୍ୟରେ ଓ ଶେଷରେ ସବୁ ସମୟରେ ତ ତାଙ୍କୁ ହିଁ ପୂଜା କରାଯାଏ ।"

ଏହା ଶୁଣି ଶିଶୁପାଳ ପୁନଶ୍ଚ ଆସି ନିଜ ଆସନରେ ବସିଗଲା ଓ କ୍ରୋଧରେ କହିଲା—"ଏଇ ବୁଢ଼ାଟା ହିଁ ସମସ୍ତ ବିଶୃଙ୍ଖଳାର କାରଣ । ସେ ଧର୍ମରାଜଙ୍କ ବୁଦ୍ଧି ଭ୍ରଷ୍ଟ କରି ଦେଇଛି । ସେ ଏହି ଗଉଡ଼ ଟୋକାକୁ ପରବ୍ରହ୍ମ ବୋଲି କହୁଛି । ଯଦି ଏ ବୁଢ଼ା କୃଷ୍ଣକୁ ଈଶ୍ୱର ବୋଲି ମାନୁଛି, ତାହାହେଲେ ନିଜ ଘରେ ବସି ମାନୁଥାଉ । ରାଜସୂୟ ଯଜ୍ଞରେ ଶ୍ରୀକୃଷ୍ଣର ଅଗ୍ରପୂଜା, ନୀତି, ଧର୍ମ, ସଦାଚାର ଓ ଶାସ୍ତ୍ର ବିରୁଦ୍ଧ ।"

ପିତାମହ ଭୀଷ୍ମ କହିଲେ—"ତୁ ଯଦି ଶାସ୍ତ୍ର ପଢ଼ିଥାଆନ୍ତୁ ଓ ବୃଦ୍ଧଜନଙ୍କ ସେବା କରିଥାଆନ୍ତୁ ତାହାହେଲେ ବୃଦ୍ଧଙ୍କ ଭଳି ଏପରି କଥା କହନ୍ତୁ ନାହିଁ । ଶ୍ରୀକୃଷ୍ଣ ଧର୍ମରେ, ନୀତିରେ, ସଦାଚାରରେ ତଥା ଶାସ୍ତ୍ର ମତ ଅନୁସାରେ ସର୍ବଦା ଅଗ୍ରପୂଜ୍ୟ । ତାଙ୍କର ଈଶ୍ୱରତାକୁ ଛାଡ଼ିଦେଲେ ମଧ୍ୟ ଏଠାରେ ଉପସ୍ଥିତ ସମସ୍ତ ରାଜାଙ୍କର ସେ ହେଉଛନ୍ତି ଗୁରୁ । ବ୍ରାହ୍ମଣଙ୍କଠାରେ ବିଦ୍ୟା ଥିବାରୁ ସେ ଶ୍ରେଷ୍ଠ ଅଟନ୍ତି । ଅବସ୍ଥାରେ ସେମାନେ ଦରିଦ୍ର ହୋଇଥାଆନ୍ତି ପଛକେ, ବିଦ୍ୟାରେ କିନ୍ତୁ ସେମାନେ ବଡ଼ । ତେଣୁ ସେମାନେ ବୃଦ୍ଧଙ୍କ ଦ୍ୱାରା ବି ପୂଜନୀୟ ଅଟନ୍ତି । ବୈଶ୍ୟମାନେ ଧନୀ ହୋଇଥିବାରୁ ସେମାନଙ୍କୁ ବଡ଼ଲୋକ ବୋଲି କୁହାଯାଏ । କାରଣ ଯିଏ ଧନବାନ୍, ସିଏ ବଡ଼ଲୋକ ବୋଲି ସମସ୍ତେ କହନ୍ତି । ଶୂଦ୍ରମାନଙ୍କର ବଡ଼ପଣ ଅବସ୍ଥା ଦେଖି ସ୍ୱୀକାର କରାଯାଏ । କିନ୍ତୁ କ୍ଷତ୍ରିୟମାନଙ୍କର ବଡ଼ପଣ ସେମାନଙ୍କର ବଳ ଉପରେ ନିର୍ଭର କରେ । ଯିଏ ସବୁଠାରୁ ଅଧିକ ବଳୀ, କ୍ଷତ୍ରିୟମାନଙ୍କ ମଧ୍ୟରେ ସିଏ ସବୁଠାରୁ ଶ୍ରେଷ୍ଠ । ଯେଉଁ କ୍ଷତ୍ରିୟ ଅନ୍ୟ କ୍ଷତ୍ରିୟକୁ ଯୁଦ୍ଧରେ ହରାଇ ଛାଡ଼ିଦିଏ, ସେ ହାରି ଯାଇଥିବା କ୍ଷତ୍ରିୟର ଗୁରୁ ଅଟେ । ଆଜି ପୃଥିବୀର କୌଣସି କ୍ଷତ୍ରିୟ କହନ୍ତୁ ତ ଯେ ସେ ଶ୍ରୀକୃଷ୍ଣଙ୍କୁ ଯୁଦ୍ଧରେ ହରାଇ ଦେଇଛି, ଶ୍ରୀକୃଷ୍ଣ ତାକୁ ହରାଇପାରି ନାହାନ୍ତି । ଯଦି କାହାର ନିଜ ବଳର ଅଭିମାନ ଥାଏ, ତାହାହେଲେ ସେ ଏବେ ବି ଶ୍ରୀକୃଷ୍ଣଙ୍କର ସମ୍ମୁଖୀନ ହୋଇପାରେ । ଯଦି ସେ ସମସ୍ତ ରାଜାଙ୍କୁ ଜୟକରି ଛାଡ଼ିଦେଇଥାଆନ୍ତି, ତାହାହେଲେ ତ ସେ ସମସ୍ତଙ୍କର ଗୁରୁ ଓ ଅଗ୍ରପୂଜାର ସର୍ବୋତ୍ତମ

ଅଧିକାରୀ । ଯିଏ ତାଙ୍କର ଗୁରୁତ୍ୱକୁ ସ୍ୱୀକାର ନ କରୁଛନ୍ତି, ସେ ପ୍ରସନ୍ନତାପୂର୍ବକ ଆମ ଏ ଯଜ୍ଞ ସ୍ଥଳରୁ ଚାଲିଯାଇ ପାରନ୍ତି; କିମ୍ବା ତାଙ୍କର ଯାହା ଇଚ୍ଛା ତାହା କରିପାରନ୍ତି ।"

ଏହା ଶୁଣି ଶିଶୁପାଳ କ୍ରୋଧାନ୍ୱିତ ହୋଇ କହିଲେ—"ଶ୍ରୀକୃଷ୍ଣ ବଡ଼ କପଟୀ, କପଟ କରି ସେ ଜରାସନ୍ଧକୁ ମାରିଛି । ସେ ଭୀରୁ, ଜରାସନ୍ଧ ଭୟରେ ସେ ମଥୁରା ଛାଡ଼ି ପରିବାର ସହିତ ସମୁଦ୍ର ଟାପୁରେ ଯାଇ ଲୁଚି ରହିଥିଲା । ମୁଁ ଡେଙ୍ଗୁରା ପିଟି କହୁଛି ଯେ, ଶ୍ରୀକୃଷ୍ଣ ଏ ରାଜସୂୟ ଯଜ୍ଞରେ କୌଣସି ପ୍ରକାରେ ଅଗ୍ରପୂଜାର ଅଧିକାରୀ ନୁହେଁ । ଯଦି ତା ହାର ଅଗ୍ରପୂଜା ହେବ, ତାହାହେଲେ ମୁଁ ଯୁଦ୍ଧ କରିବି । ଯଜ୍ଞକୁ ବିଧ୍ୱଂସ କରିବି । ସମସ୍ତଙ୍କୁ ହତ୍ୟା କରିବି । କିନ୍ତୁ କୃଷ୍ଣର ପୂଜା ହେବାକୁ ଦେବି ନାହିଁ ।"

ଭୀଷ୍ମ କହିଲେ—"ଆମେ କାହାର ଅଯଥା ଆସ୍ଫାଳନ ଶୁଣିବାକୁ ପ୍ରସ୍ତୁତ ନୋହୁଁ । ଏ ସବୁ ମାଙ୍କଡ଼ନଙ୍କ ଭେକାର ଘୂଡ଼ୁକି ବାଦ୍ୟ ଅନ୍ୟତ୍ର ବଜାଇଲେ ସୁନ୍ଦର ଦିଶିବ । ଆମେ କୌଣସି ସ୍ୱାର୍ଥ ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣଙ୍କର ପୂଜନ କରୁଅଛୁ । କାହାରିକୁ ଭୟ କରି କିମ୍ବା ଭୁଲବଶତଃ କିମ୍ବା ଭ୍ରମ ବଶତଃ ତାହା କରୁ ନାହୁଁ । ଆମ୍ଭେମାନେ ତାଙ୍କୁ ସର୍ବଶ୍ରେଷ୍ଠ ଜ୍ଞାନ କରି ପୂଜାର ସର୍ବୋତ୍ତମ ପାତ୍ର ବୋଲି ସ୍ୱୀକାର କରି ସମ୍ମାନିତ କରୁଛୁ । ସେ ବୀରତ୍ୱ, ବିଦ୍ୱତା, ନିପୁଣତା, ଧନ, ବଳ, ଯଶ, ଶ୍ରୀ, ହ୍ରୀ, ଲଜ୍ଜା, କୀର୍ତ୍ତି, ନମ୍ରତା, ଧୃତି, ତୁଷ୍ଟି, ପୁଷ୍ଟି, ବୁଦ୍ଧି, ରୂପ, ଗୁଣ ଓ ଜ୍ଞାନରେ ସମସ୍ତଙ୍କଠାରୁ ଅଧିକ ଶ୍ରେଷ୍ଠ । ପୂଜାର ସମ୍ପୂର୍ଣ୍ଣ ପାତ୍ରତା ତାଙ୍କଠାରେ ଏକସଙ୍ଗେ ବିଦ୍ୟମାନ । ସେ ଆମ୍ଭମାନଙ୍କର ଗୁରୁ ଅଟନ୍ତି । ସଖା ସମ୍ବନ୍ଧୀ ଅଟନ୍ତି, ଜ୍ଞାତକ ଅଟନ୍ତି, ଋତ୍ୱିକ ଅଟନ୍ତି, ରାଜା ଅଟନ୍ତି, ଆଚାର୍ଯ୍ୟ ଅଟନ୍ତି, ଏପରି କି ସେ ଆମର ସର୍ବସ୍ୱ ଅଟନ୍ତି । କେବଳ ଆମ୍ଭମାନଙ୍କର ନାହିଁକି, ତିନି ଲୋକର ସେ ହେଉଛନ୍ତି ଈଶ୍ୱର । ଆମ୍ଭେମାନେ ତାଙ୍କୁ ପୂଜା କରିଆସୁଛୁ, ଏବେ କରୁଛୁ ଓ ଯେ ପର୍ଯ୍ୟନ୍ତ ବଞ୍ଚିଥିବୁ, କରୁଥିବୁ । ଆମେ ସମସ୍ତଙ୍କଠାରୁ ସମ୍ମତି ନେଇଛୁ । ଯଦି ଶିଶୁପାଳକୁ ଭଗବାନଙ୍କର ପୂଜା ଭଲଲାଗୁ ନାହିଁ, ତାହାହେଲେ ସେ ଯାହା ଉଚିତ୍ ମନେ କରୁଛି ନିଃଶଙ୍କରେ କରୁ ।"

ଏତକ ଶୁଣିବା ମାତ୍ରେ ସହଦେବ ଆବେଶରେ ଉଠି ଠିଆ ହେଲେ ଓ ଉଚ୍ଚସ୍ୱରରେ କହିଲେ—"ଶ୍ରୀକୃଷ୍ଣ ଆମ୍ଭମାନଙ୍କର ଗୁରୁ, ପିତା, ଆଚାର୍ଯ୍ୟ, ରକ୍ଷକ ଓ ସବୁକିଛି ଅଟନ୍ତି । ଯେଉଁ ରାଜା ତାଙ୍କ ପୂଜାକୁ ସହ୍ୟ କରି ପାରୁ ନାହାନ୍ତି, ତାଙ୍କ ମୁଣ୍ଡ ଉପରେ ଆମ୍ଭମାନଙ୍କ ପାଦ ରହିବା ଉଚିତ୍ । ଯଦି କାହାର ଶକ୍ତି ସାମର୍ଥ୍ୟ ଅଛି, ସାହସ ଅଛି, ତାହାହେଲେ ଆମର ଏହି ଆହ୍ୱାନର ଉତ୍ତର ଦିଅନ୍ତୁ ।"

ଏହା ଶୁଣି ଧର୍ମରାଜ ସହଦେବଙ୍କୁ ତାଗିଦ୍ କରି କହିଲେ—"ସହଦେବ ! ତୁମେ କିଛି ନ କହିଲେ ଭଲ ହୁଅନ୍ତା । ପିତାମହ ତ ଯାହା କହିବାର କହୁଛନ୍ତି, ଆମେମାନେ ତ ତାଙ୍କ ଅଧୀନ, ସେ ଆମକୁ ଯାହା ଆଜ୍ଞା ଦେବେ ଆମେ ତାହା କରିବା ।"

ପିତାମହ ଭୀଷ୍ମ ଗର୍ଜି ଉଠି କହିଲେ—"ଯୁଧିଷ୍ଠିର ! ତୁମେ କାହିଁକି ବାରମ୍ବାର ଏପରି ଗୋଳମାଳିଆ କଥା କହୁଛ । ସତ ସତ କହିଦେବା ତ ଉଚିତ । ସହଦେବ ଯାହା କହୁଛି, ତାହା ଯଥାର୍ଥ, ତାକୁ ତୁମେ ଅଟକାଅ ନାହିଁ । ତୁମେ ପୂଜା କର । ଯିଏ ପୂଜାରେ ବିଘ୍ନ ଘଟାଇବ, ମୁଁ ଏକା ତାକୁ ଦେଖିନେବି ।"

ଧର୍ମରାଜ ଏହାଶୁଣି ନତମସ୍ତକ ହୋଇ ଭଗବାନଙ୍କ ପୂଜା କରିବାକୁ ଲାଗିଲେ । ଭଗବାନ ନିରପେକ୍ଷ ଭାବରେ ଚୁପ୍ ହୋଇ ବସିଥିଲେ । ସେ ଶିଶୁପାଳ କଥାରେ କିଛି ଉତ୍ତର ଦେଇ ନଥିଲେ, କିମ୍ବା ଭୀଷ୍ମ ଆଦିଙ୍କୁ କଥା କହିବାରେ ଅଟକାଇ ନଥିଲେ । ସେ ତଳକୁ ଚାହିଁ ମାଟି ଉପରେ କାଠିରେ ଗାର ଟାଣୁଥିଲେ । ଶିଶୁପାଳ କ୍ରୋଧଭରି ହୋଇ ଆପେ ଆପେ ଗର୍ଜିବାକୁ ବସିଲା । ସେ ନିରନ୍ତର ଭଗବାନଙ୍କୁ ଗାଳିଗୁଲଜ କରୁଥିଲା । ଭୀଷ୍ମଙ୍କୁ ଯାହା ଇଚ୍ଛା ତାହା କହିଯାଉଥିଲା ଓ ଭଗବାନଙ୍କୁ ନିନ୍ଦା କରୁଥିଲା । ସେ କହୁଥିଲା—"ଭୀଷ୍ମ ନପୁଂସକ, ସେ ଝାଟଭଳି କୃଷ୍ଣର ପ୍ରଶଂସା କରୁଛି । ସେ ପାଣ୍ଡବଙ୍କ ଦ୍ୱାରା ଶ୍ରୀକୃଷ୍ଣର ପୂଜା କରାଉଛି । ଅଗ୍ରପୂଜା ପାଇବା ତ ଦୂରର କଥା, ସେ ଏ ରାଜ-ସଭାରେ ବସିବା ଯୋଗ୍ୟ ବି ନୁହେଁ । ସେ ବର୍ଣ୍ଣ, ଆଶ୍ରମ ଓ କୁଳରୁ ବହିଷ୍କୃତ, ଧର୍ମ-ମର୍ଯ୍ୟାଦା ରହିତ, ଋଣ ଗୁଣ ପଳାୟନ କରିଥିବା ପଳାୟନ ପନ୍ଥୀ, ସ୍ୱେଚ୍ଛାଚାରୀ, ବୃଷଭାସୁର ମାରିଥିବା ଗୋ ହତ୍ୟା କାରୀ, ପୂତନାକୁ ମାରିଥିବା ସ୍ତ୍ରୀ ହତ୍ୟାକାରୀ, ମନଇଚ୍ଛା ଏଣୁତେଣୁ କହିଲାବାଲା ଓ ଏହାର ସମସ୍ତ କୁଳ ଶାପଗ୍ରସ୍ତ, ତେଣୁ ସତ୍ପୁରୁଷଙ୍କ ସଭାରେ ସେ ବସିବା ପାଇଁ ଅଯୋଗ୍ୟ । ତା କୁଳର ସମସ୍ତେ ମଦ୍ୟପ । ସେ ଓ ତାହାର କୁଳର ଲୋକେ ଡାକୁ ଓ ଅପହରଣକାରୀ । ମଥୁରା ଭଳି ବ୍ରହ୍ମର୍ଷିମାନଙ୍କ ଦ୍ୱାରା ସେବିତ ପବିତ୍ର ଦେଶକୁ ଛାଡ଼ି ସେ ସମୁଦ୍ରରେ ପଳାଇ ଯାଇ ସମୁଦ୍ର ମଝିରେ ବାସ କରୁଛି । ସେ ପ୍ରଜାମାନଙ୍କୁ ପୀଡ଼ା ଦେଉଛି । ସେ ଅତ୍ୟନ୍ତ ଛଳକପଟୀ ଓ ବହୁରୂପୀ । ଦାସ ଓ ନୀଚ ପଳାୟନପନ୍ଥୀ ମନେକରି ଜରାସନ୍ଧ ତା ସହିତ ଯୁଦ୍ଧ କରୁ ନ ଥିଲା । ସେ ଛନ୍ଦ, ବଳ, କଳା କୌଶଳ ପ୍ରୟୋଗ କରି ଅନ୍ୟାୟ ଉପାୟରେ ଜରାସନ୍ଧକୁ ମାରିଥିଲା । ଯଦି ସେ ଭଗବାନ, ସର୍ବସମର୍ଥ, ତେବେ ଲୁଚିକରି କାହିଁକି ଯାଇଥିଲା ? ସେ ବ୍ରାହ୍ମଣ ଭଳି ଛଦ୍ମବେଶରେ କାହିଁକି ଯୋଝିବାକୁ ଯାଇଥିଲା ? ସେ ବନସ୍ନାନ, ବାର୍ଦ୍ଧକ୍ୟସ୍ନାନ ଓ ପେଟବିକଳିଆ, ଗୋବର୍ଦ୍ଧନ ପୂଜା ସମୟରେ ସେ ବହୁତ ଅନ୍ନ ଖାଇଯାଇଥିଲା । ଏଥିରେ ତାହାର ବଡ଼ ଅପମାନ ହୋଇ ଯାଇଛି । ସେ ରାଜାମାନଙ୍କ ମଧ୍ୟରେ ପୂଜା ପାଇବା ପାଇଁ ସର୍ବଥା ଅଯୋଗ୍ୟ ।"

ସୂତ କହିଲେ—"ମୁନିଗଣ ! ଶିଶୁପାଳ ଏହିପରି ଭାବରେ ଭଗବାନଙ୍କୁ ବହୁତ ଗାଳିଗୁଲଜ କରିବାରେ ଲାଗିଥିଲା; କିନ୍ତୁ ଭଗବାନ ସେହି ସବୁ ଗାଳିକୁ ଚୁପ୍‌ଚାପ

ଶୁଣୁଥିଲେ ଓ ଗୋଟି ଗୋଟି କରି ତାହା ଗଣି କାଠିରେ ଗାର ଟାଣୁଥିଲେ । ସେ ଏତେ ବଡ଼ ସଭାରେ ଲଜ୍ଜିତ ହେଉ ନଥିଲେ କିମ୍ବା କାହାରିକୁ କୌଣସି ଅସମ୍ମାନ କରୁ ନଥିଲେ । ଶିଶୁପାଳ ନିରନ୍ତର ଗାଳିଗୁଲଜ କରି ଚାଲିଥିଲା । ତା ଶିର ଉପରେ ମୃତ୍ୟୁ ତାଣ୍ଡବ କରୁଥିଲା । କାଳ ତାକୁ ପ୍ରେରଣା ଦେଉଥିଲା । ଯେଉଁମାନେ ଭଗବତ୍ ଭକ୍ତ ଥିଲେ, ସେହି ରାଜାମାନେ ଶାସ୍ତ୍ରର ଏହି ବଚନକୁ ସ୍ମରଣ କରୁଥିଲେ ଯେ, "ଯେଉଁ ପୁରୁଷ ଭଗବାନ ତଥା ଭଗବଦ୍‌ଭକ୍ତଙ୍କର ନିନ୍ଦା ଶୁଣି ସେଠାରୁ ଦୂରକୁ ଚାଲି ନଯାଏ, ସମସ୍ତ ତାହାର ଶୁଭକର୍ମ ନଷ୍ଟ ହୋଇଯାଏ ଓ ସେ ନୀଚଗତି ପ୍ରାପ୍ତ ହୁଏ ।" ସେହି ରାଜାମାନେ ସେଠାରୁ କାନରେ ହାତ ଦେଇ ଦୂରକୁ ଚାଲିଗଲେ ।

ପାଣ୍ଡବମାନେ ଏହା ସହ୍ୟ କରି ପାରିଲେ ନାହିଁ । ସେମାନେ ଭଗବାନଙ୍କର ଏପରି ନିନ୍ଦା ଶୁଣି କ୍ଷୁବ୍ଧ ହେଲେ । ବିଶେଷ କରି ଭୀମର ରୋମକୂପଗୁଡ଼ିକରୁ ଅଗ୍ନିକଣା ବିଚ୍ଛୁରିତ ହେବାରେ ଲାଗିଲା । ସେ ହସ୍ତରେ ଗଦା ଧାରଣ କରି ଶିଶୁପାଳ ଆଡ଼କୁ ଧାଇଁଲା । ଭୀଷ୍ମ ପିତାମହ ସେତେବେଳେ ଉଠି ତାଙ୍କୁ ଅଟକାଇ କହିଲେ—"ଭୀମ ! ତାହାର ମୃତ୍ୟୁ ଭଗବାନଙ୍କ ହାତରେ । ତୁ ତାକୁ ମାର ନା । କିଛି ସମୟ ପରେ ତୁ ତାହାର ମୃତ୍ୟୁଦେହ ଏଠାରେ ଦେଖିପାରିବୁ । ଏବେ ସେ ନିଜ ଅକ୍ତିଆରରେ ନାହିଁ । ସେ ଆପେ ଆପେ କିଛି କହୁନାହିଁ । କାଳରୂପୀ ଶ୍ରୀକୃଷ୍ଣ ହିଁ ତାକୁ ଏହିପରି କହିବା ପାଇଁ ପ୍ରେରଣା ଦେଉଛନ୍ତି । ଯେପରି ମନୁଷ୍ୟ ସନ୍ନିପାତରେ ଆକ୍ରାନ୍ତ ହୋଇ ଏଣୁତେଣୁ ବକିଥାଏ, ତାହାର ସେହି ଦଶା ହୋଇଛି । ଭଗବାନ ବାସୁଦେବ ସବୁକଥା ଜାଣନ୍ତି । ସେଥିପାଇଁ ସେ ମୌନ ହୋଇ ବସିଛନ୍ତି ।"

ଏଥିରେ ଶିଶୁପାଳ ଅଧିକ କୁପିତ ହୋଇ କହିଲା—"ମୋର କୃଷ୍ଣକୁ ଡର ନାହିଁ ପାଣ୍ଡବଙ୍କୁ ଡର ନାହିଁ । ପାଣ୍ଡବମାନେ ଚାହିଁଲେ ଜଣ ଜଣ ହୋଇ ଆସି ମୋ ସହିତ ଲଢ଼ନ୍ତୁ କିମ୍ବା ସମସ୍ତେ ମିଶି ଲଢ଼ନ୍ତୁ, ମୁଁ ଏଥିପାଇଁ ପ୍ରସ୍ତୁତ ଅଛି । ଭୀଷ୍ମ ! ତୁମେ ଭୀମକୁ ଛାଡ଼ିଦିଅ, ତାହାର ନିଜ ବଳ ପାଇଁ ବଡ଼ ଅଭିମାନ । ମୁଁ ଆଜି ତାହାର ଅଭିମାନକୁ ନାଶ କରିଦେବି ।"

ଭୀଷ୍ମ ଶୁଷ୍କ ହସ ହସି କହିଲେ—"ଶିଶୁପାଳ ! କ'ଣ କରିବି ମୋତେ ତ ବାସୁଦେବ ଅଟକାଇ ଦେଉଛନ୍ତି, ତା ନହେଲେ ମୁଁ ଏବେ ତୋତେ ସବୁ ବତାଇ ଦିଅନ୍ତି । ତୋ'ର ଏ ଯେଉଁ ଜିଭ କରୁଆ ଭଳି ଚାଲୁଛି, ତାହାକୁ ମୁଁ ଏବେ କାଟି ଉଡ଼ାଇ ଦିଅନ୍ତି । ସମସ୍ତଙ୍କ ସମ୍ମୁଖରେ ତୋ'ର ଶିର ଛେଦନ କରି ଗଣ୍ଡିରୁ ଅଲଗା କରି ଦିଅନ୍ତି । ଠିକ୍ ଅଛି, ତୁ ଏବେ ଯେତେ ଚାହୁଁ ସେତେ ବକିଯା' ।"

ଏହା ଶୁଣି ଶିଶୁପାଳ କହିଲା—"କୃଷ୍ଣ କପଟୀ, ଚୋର, ଠକ । ମୁଁ କଦାପି ତାହାର ପୂଜା ହେବାକୁ ଦେବି ନାହିଁ । ଏ ସମସ୍ତ ରାଜା ବର୍ତ୍ତମାନ ମୋ ପକ୍ଷରେ । ମୁଁ ଏମାନଙ୍କର ସେନାପତି ହୋଇ ଯୁଦ୍ଧ କରିବି ।"

ଏହା ଶୁଣି ଅର୍ଜୁନ, ଭୀମ, ନକୁଳ, ସହଦେବ, କେକୟ ଓ ଅନ୍ୟମାନେ ନିଜ ନିଜର ଅସ୍ତ୍ରଶସ୍ତ୍ର ଧରି ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲେ । ସେମାନେ ଶିଶୁପାଳକୁ ମାରିଦେବାକୁ ଯାଉଁଥିଲେ । କିନ୍ତୁ ମଝିରେ ଠିଆ ହୋଇଯାଇ ଭଗବାନ ଶ୍ରୀକୃଷ୍ଣ ସମସ୍ତଙ୍କୁ ଅଟକାଇ ଦେଲେ ।

ସୂତ କହିଲେ—ମୁନିଗଣ ! ଏବେ ଭଗବାନ ଯେପରି ଶିଶୁପାଳକୁ ବଧ କରିବେ, ତାହା ମୁଁ ଆପଣମାନଙ୍କୁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।"

## ଛପ୍‌ପୟ

ଜନମ ଭୂମି ତଜି ଭଗେଯା ଠଗେଯା ମଗଧେଶ୍ୱର ଛଲ ତେଁ ।
କୋଇ ଜୀତେଯା ନହୀଂ ଭୂମିପତି ଜାନେ ବଲ ତେଁ ॥
କ୍ଷତ୍ରିୟକୁଲ ତେଁ ହୀନ ଦୀନ ଅତି ଜାକୂଁ ପଯାତେ ।
ଧନୀ ନ ମାନୀ ଜାସୁ ନହ୍ୱାରେଂ ବୈଭବ ବାରେ ॥
ଅଣ୍ଡ ବଣ୍ଡ ବହୁତକାଲ ତକ, ବକତ ରହ୍ୟୋ ଶିଶୁପାଲ ଜବ ।
ବୈରେ ପାଣ୍ଡବ ହନନ ହିତ, ରୋକ କହ୍ୟୋଂ ଘନଶ୍ୟାମ ତବ ॥

—୦—

# ଶିଶୁପାଳ ବଧ

ତାବଦୁତ୍ଥାୟ ଭଗବାନ୍ ସ୍ୱାନ୍ ନିବାର୍ଯ୍ୟ ସ୍ୱୟଂ ରୁଷା ।
ଶିରଃ କ୍ଷୁରାନ୍ତଚକ୍ରେଣ ଜହାରାପତତୋ ରିପୋଃ ॥ *

(ଶ୍ରୀ ଭା : ୧୦ ସ୍କ : ୭୪ ଅ. ୪୩ଶ୍ଳୋକ)

## ଛପ୍ପୟ

ବୁଆ ମେରୀ ଶ୍ରୁତଶ୍ରବାକୋ ସୁତ ୟହ ପାପୀ ।
ତୀନ ନୟନ ଭୁଜ ଚାର ସହିତ ଜନମେୟା ସଂତାପୀ ॥
ତବ ନଭବାନୀ ଭଈ ଗୋଦ ଜାକୀ ମହଁ ଜାବେ ।
ଗିରେଂ ନୟନ କର ବହୀ ତାହି ପରଲୋକ ପଠାବେ ॥
ମେରୀ ଗୋଦୀ ମହଁ ଗିରେ, କର ବିନୟ ବୁଆ ବହୁତ ।
ଦୟୋ ତାହି ବର ଦୟାବଶ, କ୍ଷମା କରହୁଁ ଅପରାଧ ଶତ ॥

ଯିଏ ଏହା ଦୃଢ଼ ବିଶ୍ୱାସ କରେ ଯେ, ଜୀବ ଅବଶ ସେ ପ୍ରଭୁ ପ୍ରେରଣାରେହିଁ ସମସ୍ତ ଚେଷ୍ଟା କରେ, ତାହା ହେଲେ ସେ ଆଉ ଦୁଃଖ ସୁଖରେ, ହାନି ଲାଭରେ, ଶୁଭ ଅଶୁଭରେ, ପୁଣ୍ୟ ପାପରେ ନିନ୍ଦା ପ୍ରଶଂସାରେ ସର୍ବଦା ସମଭାବାପନ୍ନ ରହେ । ପୁନଶ୍ଚ ତାହାର କୌଣସି କଥାରେ ଉଦ୍‌ବେଗ ନଥାଏ । ଏହା ଯେତେବେଳେ ଧ୍ରୁବ ସତ୍ୟ ଯେ, ପ୍ରଭୁଙ୍କର ଇଚ୍ଛା ବିନା ଗୋଟିଏ ହେଲେ ପତ୍ର ହଲେ ନାହିଁ, ସେତେବେଳେ କେହି ନିନ୍ଦା ବା ସ୍ତୁତି କରିବାରେ କପଣ ସ୍ୱତନ୍ତ୍ର ହୋଇପାରିବ ? ଭଗବାନ ଯାହାଦ୍ୱାରା ନିନ୍ଦା କରାନ୍ତି,

---

* ଦେଖି ତାହାର ଦୁଷ୍ଟପଣ । ଗୋବିନ୍ଦ ଆରୋଭିଲେ ରଣ ॥
ପାଣ୍ଡବବଳ ପୃଷ୍ଠ ଭାଗେ । ମିଳିଲେ ଶିଶୁପାଳ ଆଗେ ॥
ଦୁରନ୍ତ ଚକ୍ରେ ଦାମୋଦର । ଛେଦିଲେ ଶିଶୁପାଳ ଶିର ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ : ୭୯ ଅ.)

ସେ ଅବଶ୍ୟ ହୋଇ ନିନ୍ଦା କରେ । ଯାହା ଦ୍ଵାରା ସ୍ତୁତି କରନ୍ତି, ସେ ସ୍ତୁତି କରେ । ଭଗବାନଙ୍କ ପାଇଁ ତ ନିନ୍ଦା ଓ ସ୍ତୁତି ସମାନ । ସେ ତାଙ୍କ ବନ୍ଦନାକାରୀଙ୍କୁ ପରମ ପଦ ଦିଅନ୍ତି ଓ ନିନ୍ଦାକାରୀଙ୍କୁ ମଧ୍ୟ ସେହି ଗତି ଦିଅନ୍ତି ।

ସୂତ କହିଲେ—"ମୁନିଗଣ ! ଯେତେବେଳେ ପାଣ୍ଡବ ପକ୍ଷର ରାଜାମାନେ ଦେଖିଲେ ଯେ, ଶିଶୁପାଳ ଭଗବାନଙ୍କୁ ଏପରି କଠୋର ଭାଷାରେ ଗାଳିଗୁଲଜ କରୁଛି, ଯାହା ମଧ୍ୟରୁ କି ଗୋଟିଏ ମନ୍ଦ କଥା ଶୁଣିବା ମାତ୍ରେ ତାକୁ ବଧ କରାଯାଇ ପାରନ୍ତା । କିନ୍ତୁ ଭଗବାନ ସବୁଶୁଣି ମଧ୍ୟ କିଛି କହୁନଥାନ୍ତି । ତେଣୁ ସେମାନେ ସମସ୍ତେ ତାକୁ ମାରିଦେବାକୁ ଧାଇଁଲେ । ଭଗବାନ ସମସ୍ତଙ୍କୁ ଅଟକାଇ କହିଲେ—'ଭାଇମାନେ ! ଆପଣମାନେ ଏ ଦୁଷ୍ଟକୁ ମାରନ୍ତୁ ନାହିଁ । ମୁଁ ମୋର ପିଉସୀଙ୍କୁ ବର ଦେଇଥିବା କାରଣରୁ ଏ ପର୍ଯ୍ୟନ୍ତ ଏହାକୁ କ୍ଷମା କରି ଆସିଛି । କିନ୍ତୁ ଏବେ ତ ଏହାର ଅପରାଧ ଶେଷ ସୀମାରେ ଯାଇ ପହଞ୍ଚିଲାଣି ।'

ଏହା ଶୁଣି ଧର୍ମରାଜ ପଚାରିଲେ—"ପ୍ରଭୋ ! ଆପଣ ନିଜ ପିଉସୀଙ୍କୁ କି ବର ଦେଇଥିଲେ ? ଆପଣ ଏପର୍ଯ୍ୟନ୍ତ କାହିଁକି ଚୁପ୍ ଚାପ ବସିଥିଲେ ? ଏ ପର୍ଯ୍ୟନ୍ତ ପଦେ ହେଲେ କଥା କାହିଁକି କହୁ ନ ଥିଲେ ? ଆପଣ ମାଡି ଉପରେ ଗାର କାହିଁକି ଟାଣୁଥିଲେ ? କୃପା କରି ଏ ସବୁ କଥାର ରହସ୍ୟ ପ୍ରଥମେ ଆମ୍ଭମାନଙ୍କୁ କହନ୍ତୁ, ପରେ ଶିଶୁପାଳକୁ ଯାହା ଦଣ୍ଡ ଦେବାର ଦେବେ ।"

ଏହା ଶୁଣି ଭଗବାନ ସମସ୍ତଙ୍କୁ ଶୁଣାଇବା ଭଳି ମେଘଗମ୍ଭୀର ବାଣୀରେ କହିଲେ—"ଧର୍ମରାଜ ! ମୋର ପାଞ୍ଚଟି ପିଉସୀ, ଗୋଟିଏ ପିଉସୀର ତ ସନ୍ତାନ ଆପଣମାନେ । ମୋର ଅନ୍ୟ ଏକ ପିଉସୀର ନାମ ଶ୍ରୁତଶ୍ରବା ଚେଦି ଦେଶର ମହାରାଜ ଦମଘୋଷଙ୍କୁ ବିବାହ କରିଥିଲେ । ତାଙ୍କଠାରୁ ଏ ଦୁଷ୍ଟ ଶିଶୁପାଳ ଜନ୍ମ ହୋଇଛି । ସେ ସେ ମୋର ପିଉସୀ ପୁଅ ଭାଇ । ସେ ଯେତେବେଳେ ଜନ୍ମ ହେଲା, ତାହାର ଚାରିହାତ ଓ ତିନି ନେତ୍ର ହୋଇଥିଲା । ଜନ୍ମ ହେବ ମାତ୍ରେ ସେ କଅଁଳା ପିଲାଙ୍କ ପରି ନ କାନ୍ଦି ଗଧଙ୍କ ଭଳି ରଡ଼ି କରିଥିଲା । ଏହା ଦେଖି ମୋର ପିଉସା ପିଉସୀ ଓ ଅନ୍ୟାନ୍ୟ ଲୋକ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ସେତେବେଳେ ଶୂନ୍ୟବାଣୀ ହୋଇଥିଲା ଯେ, ସେ ଅତ୍ୟନ୍ତ ବଳୀ, ଶୂରବୀର ଓ ଶ୍ରୀମାନ୍ ହେବ । ଆପଣମାନେ ଏହାକୁ ଭୟ କରନ୍ତୁ ନାହିଁ । ସେ ଏତେ ବଳବାନ ହେବ ଯେ, ତାହାକୁ ମହାକାଳ ବ୍ୟତୀତ ଅନ୍ୟ କେହି ମାରି ପାରିବେ ନାହିଁ । ତାହାକୁ ମାରିବା ବ୍ୟକ୍ତି ପୃଥିବୀରେ ମଧ୍ୟ ଜନ୍ମଲାଭ କରିଛି ।

ଏହା ଶୁଣି ମୋ ପିଉସୀ ହାତଯୋଡ଼ି ବିନୀତ ଭାବରେ କହିଲେ—"ଯେଉଁ ଦେବତା ଆମ୍ଭମାନଙ୍କୁ ଏହି ବାଣୀ ଶୁଣାଉଛନ୍ତି, ସେ କୃପା କରି ଏହା ମଧ୍ୟ କହନ୍ତୁ ଯେ, ଏହାର ମୃତ୍ୟୁ କାହା ହାତରେ ହେବ ?"

ତାହାପରେ ଶୂନ୍ୟବାଣୀ ହେଲା "ଯାହା କୋଳକୁ ଗଲାମାତ୍ରେ ଏହାର ତୃତୀୟ ନେତ୍ର ଓ ଦୁଇଟି ହାତ ଖସି ପଡ଼ିବ, ସେହି ହିଁ ତାକୁ ମାରିବ ।"

ଏହା ଶୁଣି ଚେଦିରାଜ ଦମଘୋଷ ସମସ୍ତ ରାଜାଙ୍କୁ ଆମନ୍ତ୍ରଣ କଲେ । ଏପରି ଅଦ୍ଭୁତ ବାଳକର ଜନ୍ମ ବୃତ୍ତାନ୍ତ ଶୁଣି ଦେଶ-ଦେଶାନ୍ତରରୁ ପ୍ରତ୍ୟହ ବହୁତ ରାଜା ତାକୁ ଦେଖିବା ପାଇଁ ଆସିଲେ । ରାଜା ସମସ୍ତଙ୍କ କୋଳରେ ସେହି ବାଳକକୁ ବସାଇ ଦେଉଥିଲେ । କିନ୍ତୁ କାହାରି କୋଳରେ ତାହାର ନେତ୍ର ଓ ହାତ ଖସିପଡ଼ିଲା ନାହିଁ । ମୁଁ ମଧ୍ୟ ଏହି କଥା ଶୁଣି ମୋ ପିଉସୀର ଏପରି ଅଦ୍ଭୁତ ପୁତ୍ର ହୋଇଛି ବୋଲି ତାକୁ ଦେଖିବାକୁ ଯାଇଥିଲି । ମୋ ପିଉସୀ ମଧ୍ୟ ତାକୁ ଆଣି ମୋ କୋଳରେ ବସାଇ ଦେଲେ । ମୋ କୋଳକୁ ଆସିବାମାତ୍ରେ ତାହାର ଏକ ନେତ୍ର ଓ ଦୁଇ ହାତ ତଳେ ଝଡ଼ି ପଡ଼ିଲା । ଏହା ଦେଖି ମୋର ପିଉସୀ ଅତ୍ୟନ୍ତ ଭୟଭୀତ ହେଲେ ଓ ସେ ଦୈନ୍ୟ ଭାବରେ ମତେ କହିଲେ—"କୃଷ୍ଣ ! ତୁ ଦୀନଜନଙ୍କର ରକ୍ଷକ ଅଟୁ, ଭୟଭୀତଙ୍କର ଭୟ ଦହନକାରୀ ଅଟୁ । ମୋ ଉପରେ କୃପା କରି ମୋତେ ଏକ ବର ଦେଇପାରିବୁ ?"

ମୁଁ କହିଲି—"ପିଉସି ! ତୁମେ ଏପରି କ'ଣ କହୁଛ ? ମୁଁ ତ ତୁମ ପୁଅ, ତୁମେ ମୋତେ ଯାହା ଆଦେଶ ଦେବ ମୁଁ ତାହା କରିବି ।"

ପିଉସୀ କହିଲେ—"ବାବୁ ! ମୋର ଏହି ପୁତ୍ରଠାରେ କୃପା କରି ସେ କୌଣସି ଅପରାଧ ଯଦି କରେ ତାକୁ ତୁ କ୍ଷମା କରିଦେବୁ । ତା' ଅପରାଧକୁ ଏତେ ଗୁରୁତ୍ୱ ଦେବୁ ନାହିଁ ।"

ମୁଁ କହିଲି—"ପିଉସି ! ତୁମେ ଗୋଟିଏ ଅପରାଧ କଥା ମୋତେ କହୁଛ, ସେ ଯଦି ମୃତ୍ୟୁଦଣ୍ଡ ପାଇଲା ଭଳି ଶହେ ଅପରାଧ କରେ, ତାହାହେଲେ ମୁଁ ତାକୁ କ୍ଷମା କରିଦେବି । ଯଦି ସେ ଶହେ ଅପରାଧରୁ ଗୋଟିଏ ଅଧିକ ଅପରାଧ କରେ, ତାହାହେଲେ ଆଉ ମୁଁ ତାକୁ କ୍ଷମା କରିପାରିବି ନାହିଁ ।"

ପିଉସୀ କହିଲେ—"ତାହା ହିଁ ହେଉ । ମୁଁ ତୋଠାରୁ ସେତିକି ଆଶା କରୁଥିଲି । ତୁ ତାହାର ଶହେ ଅପରାଧ କ୍ଷମା କରିଦେବୁ ।"

ଭଗବାନ ଶ୍ରୀକୃଷ୍ଣ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ—"ହେ ରାଜନ୍ ! ଏହି କାରଣରୁ ମୁଁ ଏପର୍ଯ୍ୟନ୍ତ ଏହାର ସମସ୍ତ ଗାଳି ଚୁପଚାପ ହୋଇ ଶୁଣୁଥିଲି । ମୁଁ ତାହାର ଗୋଟିଏ ହେଲେ କଥାକୁ ଖରାପ ଭାବୁ ନଥିଲି କି ବିରୋଧ କରୁ ନଥିଲି । ମୁଁ ଏହାର ପ୍ରତ୍ୟେକ ଗାଳିକୁ ଗଣି ଗଣି କରି ଗାର ଟାଣି ହିସାବ ରଖୁଥିଲି । ଏବେ ମୁଁ ସେହି

ହିସାବରେ ଯେତେଖଣ୍ଡ କାଠି ଏକାଠି କରିଛୁ, ତାହା ଯେ କେହି ଆସି ଗଣି ନଥିବୁ । ଏହା ଶହେରୁ ଅଧିକ ହୋଇଯାଇଛି । ମୁଁ ମୋ ପିଉସୀଙ୍କ ଆଗରେ ପ୍ରତିଜ୍ଞା କରିଥିବା ବନ୍ଧନରୁ ଏବେ ମୁକ୍ତ । ଏବେ ମୁଁ ଏହାକୁ ମାରିଦେବି । ତେଣୁ ମୋତେ ଏଥିପାଇଁ କେହି ଦୋଷ ଦେବ ନାହିଁ ।"

ଏହା ଶୁଣି ଶିଶୁପାଳ ତାଚ୍ଛଲ୍ୟ ହସ ହସି କହିଲା—"କୃଷ୍ଣ ! ତୁ ବଡ଼ ବାହାଦୁରଥା । ତୁ ଏପରି କହିଲେ ସବୁକୁ ଲୋକମାନେ ତୋ କଥାକୁ ସମର୍ଥନ କରି ତୋ ପକ୍ଷ ହୋଇଯିବେ । ବରଦାନର ବୃଥା ଆଳ ଦେଖାଇ ତୁ ତୋର ଭୀରୁତାକୁ ପ୍ରମାଣିତ କରୁଛୁ । ମୋଠାରେ ତୋର କୃପାର ଆବଶ୍ୟକତା ନାହିଁ । ଯଦି ତୋର ବଳ ଅଛି, ତାହାହେଲେ ଆସି ମୋ ସହିତ ଯୁଦ୍ଧ କର । ଏହା କହି ସେ ଭଗବାନଙ୍କୁ ପ୍ରହାର କରିବାକୁ ଆଗେଇ ଆସିଲା ।"

ସୂତ କହିଲେ—"ମୁନିଗଣ ! ଶିଶୁପାଳର ଏପରି ଅଭିମାନପୂର୍ଣ୍ଣ ନୀଚ କଥା ଶୁଣି ଓ ନିଜକୁ ଆକ୍ରମଣ କରିବାକୁ ଆସୁଥିବାର ଦେଖି ଭଗବାନ ଶ୍ରୀକୃଷ୍ଣ ତା ଉପରକୁ ନିଜର ସୁଦର୍ଶନ ଚକ୍ର ଛାଡ଼ିଲେ । ସେହି ଚକ୍ରରେ ତାହାର ଶିର ଶରୀରରୁ ପୃଥକ୍ ହୋଇଗଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ—ଶିଶୁପାଳର ଶରୀରରୁ ବାହାରୁଥିବା ତେଜ ଯାଇ ଭଗବାନଙ୍କ ଶ୍ରୀ ଅଙ୍ଗରେ ମିଶିଗଲା ।

"ଶିଶୁପାଳର ମୃତ୍ୟୁ ହେବାରୁ ସେଠାରେ ବହୁତ କୋଳାହଳ ସୃଷ୍ଟି ହେଲା । ଯେଉଁ ରାଜା ଶିଶୁପାଳର ପକ୍ଷ ନେଇଥିଲେ ସେମାନେ ଶାନ୍ତ ହୋଇଗଲେ । କେତେକ ସେଠାରୁ ଲୁଚି ପଳାଇଗଲେ । ଯେଉଁମାନେ ଶିଶୁପାଳର ଅନ୍ତରଙ୍ଗ ବନ୍ଧୁ ଥିଲେ, ସେମାନେ ପାଣ୍ଡବଙ୍କର ହିତୈଷୀ ବୋଲି ପ୍ରମାଣିତ କରାଇବା ପାଇଁ ବାରମ୍ବାର କହିବାକୁ ଲାଗିଲେ—"ଏ ଶିଶୁପାଳ ଅତି ଧୂର୍ତ୍ତ ଥିଲା । ଭଗବାନ ବାସୁଦେବ ତାକୁ ମାରି ଅତି ଉତ୍ତମ କାର୍ଯ୍ୟ କଲେ । ସେ ଯଜ୍ଞର ବିଘ୍ନକାରୀ ଥିଲା ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଭଗବାନଙ୍କ ସହିତ ଦ୍ୱେଷ କରୁଥିବା ଶିଶୁପାଳର ସାଯୁଜ୍ୟ ମୁକ୍ତି କିପରି ହେଲା ? ଏହାର ତେଜ କାହିଁକି ଭଗବାନଙ୍କଠାରେ ମିଶିଗଲା ?"

ସୂତ କହିଲେ—"ମହାରାଜ ! ଇଏ ତ ଭଗବାନଙ୍କର ଦ୍ୱାରପାଳ ଥିଲା । ସନକାଦି ମୁନିଗଣ କ୍ରୁଦ୍ଧ ହୋଇ ଜୟ ବିଜୟଙ୍କୁ ଅସୁର ହେବାର ଶାପ ଦେଇଥିଲେ ଓ କହିଥିଲେ, ତୃତୀୟ ଜନ୍ମରେ ଭଗବାନଙ୍କ ହାତରେ ମୃତ୍ୟୁବରଣ କରି ପୁନଶ୍ଚ ତୁମେ ବୈକୁଣ୍ଠରେ ଭଗବାନଙ୍କର ପୂର୍ବ ଭଳି ପାର୍ଷଦ ହେବ । ସେହି ଜୟ ବିଜୟ ପ୍ରଥମ

ଜନ୍ମରେ ହିରଣାକ୍ଷ ଓ ହିରଣ୍ୟକଶିପୁ, ଦ୍ୱିତୀୟ ଜନ୍ମରେ ରାବଣ ଓ କୁମ୍ଭକର୍ଣ୍ଣ ଏବଂ ତୃତୀୟ ଜନ୍ମରେ ଶିଶୁପାଳ ଓ ଦନ୍ତବକ୍ତ୍ର ହୋଇଥିଲେ । ଶିଶୁପାଳକୁ ତ ଏଠାରେ ଧର୍ମରାଜଙ୍କ ରାଜସୂୟ ଯଜ୍ଞରେ ମାରି ଭଗବାନ ମୁକ୍ତି ଦେଲେ ! ଦନ୍ତବକ୍ତ୍ରର ବଧ ବୃତ୍ତାନ୍ତ ମୁଁ ଆପଣମାନଙ୍କୁ ପରେ ଶୁଣାଇବି ।"

ଏହାପରେ ବଡ଼ ଧୂମ୍‌ଧାମରେ ଶିଶୁପାଳ ବଧ ପରେ ଧର୍ମରାଜଙ୍କର ରାଜସୂୟ ଯଜ୍ଞ ଉଦ୍‌ଯାପିତ ହେଲା ସେହି ଯଜ୍ଞକୁ ଦେଖି ସମସ୍ତେ ପ୍ରସନ୍ନ ହେଲେ । କେବଳ ଦୁର୍ଯ୍ୟୋଧନ ଏଥିରେ ଅତ୍ୟନ୍ତ ଦୁଃଖିତ ହୋଇଥିଲା । ଯଜ୍ଞ ଶେଷରେ ଧର୍ମରାଜ ଅତ୍ୟନ୍ତ ଉତ୍ସାହର ସହିତ ଅବଭୃତ ସ୍ନାନ କଲେ ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଆମ୍ଭମାନଙ୍କୁ ଆପଣ ଧର୍ମରାଜଙ୍କ ଯଜ୍ଞର ଅବଭୃତ ସ୍ନାନ ବୃତ୍ତାନ୍ତ କହିଲୁ ଓ ଏହା ମଧ୍ୟ କହିଲୁ ଯେ, ନିଜର ଭାଇଙ୍କର ଏହି ବୈଭବଶାଳୀ ଯଜ୍ଞକୁ ଦେଖି ଦୁର୍ଯ୍ୟୋଧନଙ୍କ ମନରେ କାହିଁକି ଦୁଃଖ ହେଲା ? ଧର୍ମରାଜ ତ ତାଙ୍କୁ ଖୁବ୍ ସମ୍ମାନିତ କରିଥିଲେ । ତାଙ୍କୁ ଏକଚ୍ଛତ୍ର ସମ୍ରାଟ ବୋଲି ମଧ୍ୟ ସ୍ୱୀକାର କରିଥିଲେ । ବଡ଼ ବଡ଼ ରାଜା ତାଙ୍କୁ ସାକ୍ଷାତ ଭଣ୍ଟ ଭେଟି ଦେଇ ପ୍ରଣାମ ମଧ୍ୟ କରିଥିଲେ । ତଥାପି ତାଙ୍କୁ କ୍ଳେଶ କାହିଁକି ହେଲା ।"

ସୂତ କହିଲେ—"ମହାରାଜ ! ଯାହା ପ୍ରତି ଯାହାର ଦ୍ୱେଷ ଥାଏ, ତାହାର ଭଲ କଥା ମଧ୍ୟ ତାକୁ ଖରାପ ଲାଗେ । ତାହାର ଅଭ୍ୟୁଦୟରେ ସେ ଈର୍ଷାନ୍ୱିତ ହୁଏ । ଠିକ୍ ଅଛି ମୁଁ ଏବେ ଆପଣମାନଙ୍କୁ ସେହି କଥା ଶୁଣାଉଛି ।"

## ଛପ୍ପୟ

ତବ ତେଂ ହୋଂ ଗିନ ରହେଂ ଭୟେଁ ଅପରାଧ ଅଧିକ ଶତ ।
ଅବ ହୋଂ ନାହିଁ ଜାଇ ହୋହିଁ ଜାମେଂ ସବକୋ ହିତ ।।
ଯୋ କହିକେଂ ଘନଶ୍ୟାମ ସୁଦରଶନ ଚକ୍ର ଚଲାୟୋ ।
କର ଧଡ଼ ତେଂ ସିର ପୃଥକ୍ ସବ ମହଁ କାଟ ଗିରାୟୋ ।।
ତେଜ ନକସି ଶିଶୁପାଲ ତନ-ତେଂ ହରି ତନ ମହଁ ମିଲି ଗୟୋ ।
ତୀନ ଜନମ ମହଁ ଦ୍ୱେଷ ତେଂ, ଫେରି ପୁନ ପ୍ରଭୁ ପାର୍ଷଦ ଭୟୋ ।।

# ଧର୍ମରାଜଙ୍କ ଅଭୃବଥ ସ୍ନାନ

ଋତ୍ୱିକ୍‌ସଦସ୍ୟବହୁବିତ୍ତ ସୁହୃତ୍ତମେଷୁ
ସ୍ୱିଷ୍ଟେଷୁ ସୂନୃତସମର୍ହଣଦକ୍ଷିଣାଭିଃ ।
ଚୈଦ୍ୟେ ଚ ସାତ୍ୱତପତେଶ୍ଚରଣଂ ପ୍ରବିଷ୍ଟେ
ଚକ୍ରୁସ୍ତତସ୍ତ୍ୱବଭୃଥସ୍ନପନଂ ଦ୍ୟୁନଦ୍ୟାମ୍ । *

( ଶ୍ରୀ ଭା: ୧୦ମ ସ୍କ : ୭୫ ଅ: ୮ ଶ୍ଳୋକ )

## ଛପ୍‌ପୟ

ଚେଦୀରାଜ ବଳ ଚଢ଼ୀ ଭୟେ ମଖ ପୂରେ ତବ ହିଁ ।
ପାଇ ମାନ ସନ୍ତୁଷ୍ଟ ଭୟେ ଆଗତ ନୃପ ସବ ହିଁ ॥
ଦଇଂ ଦକ୍ଷିନା ବିପୁଲ କନକ, ଧନ, ରତନ ଲୁଟାୟେ ।
ସବ ସୁର, ନର ଗନ୍ଧର୍ବ ନିରଖି ମଖ ପରମ ସିହାୟେ ॥
ପୂରନ ମଖ କରି ହରି ସହିତ, ଧରମରାଜ ଅତି ମୁଦିତ ମନ ।
ସଙ୍ଗ ଲୟେ ନର ନାରୀ ସବ, ଚଲେ ନ୍ହାନ ଅବଭୃତ କରନ ॥

ମନୁଷ୍ୟ ଓ ପଶୁଙ୍କ ମଧ୍ୟରେ ଏତିକି ପ୍ରଭେଦ ଯେ, ପଶୁ ନିଜ ପାଇଁ ନୂତନ ମର୍ଯ୍ୟାଦା ସୃଷ୍ଟି କରିପାରେ ନାହିଁ କିମ୍ବା ପୂର୍ବ ମର୍ଯ୍ୟାଦାକୁ ହଟାଇ ଦେଇ ପାରେ ନାହିଁ । ମନୁଷ୍ୟ ନିଜ ପାଇଁ ନୂତନ ସାମାଜିକ, ଧାର୍ମିକ ମର୍ଯ୍ୟାଦା ଦେଶ କାଳ ଅନୁସାରେ ସ୍ଥିର

---

* ଶିଶୁପାଳର ପ୍ରାଣ ନାଶ । ଅବନୀ ମଣ୍ଡଳ ଉଲ୍ଲାସ ॥
ନିର୍ମଳ ଦଶ ଦିଗ ଦିଶେ । ଧର୍ମ ନନ୍ଦନ କୃଷ୍ଣ ପାଶେ ॥
ଋତ୍ୱିକ ବିପ୍ରଗଣ ଯେତେ । ଥିଲେ ଯେ ସଭା ଅନ୍ତର୍ଗତେ ॥
ଦକ୍ଷିଣା ଦେଇ ଧର୍ମସୁତ । ଯଜ୍ଞର ଅନ୍ତେ ଅବଭୃଥ ॥
ସ୍ନାନ କରିଲେ ନୃପମଲେ । ସାନନ୍ଦେ ଭାଗିରଥୀ ଜଳେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୭୯ ଅ)

କରିପାରେ । ପ୍ରାଚୀନ ପରମ୍ପରା ରୂଢ଼ିକର ଉଲ୍ଲଂଘନ ବି କରିପାରେ । ଯେଉଁ କଥା କୌଣସି ସମୟ ପାଇଁ ଅବାହୃତ, ତାହା ଅନ୍ୟ ସମୟ ପାଇଁ ବାହୃତ ହୋଇଯାଏ । କୁଳବତୀ ନବବଧୂଙ୍କ ପାଇଁ ସାଧାରଣତଃ ପରଦା ପ୍ରଥା ବାହୃତ; କିନ୍ତୁ ବିବାହ ସମୟରେ, ମୃତକାଦି ଶୋକ ସମୟରେ ପର୍ବ ଓ ଉତ୍ସବ ସମୟରେ ଏହି ନିୟମ ଶିଥିଳ ହୋଇଯାଏ । ସେମାନେ ସମସ୍ତଙ୍କ ସମ୍ମୁଖକୁ ଆସିଥାଆନ୍ତି ।

ସୂତ କହିଲେ—"ମୁନିଗଣ ! ମହାରାଜ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞ ବଡ଼ ଆଡ଼ମ୍ବର ସହକାରେ ସମ୍ପନ୍ନ ହେଲା । ଏବେ ବ୍ରାହ୍ମଣାଦି ଭୋଜନ କରାଇ ଧର୍ମରାଜ ବଡ଼ ଆଡ଼ମ୍ବର ଭାବରେ ଯଜ୍ଞର ଅବଭୃଥ ସ୍ନାନ କରିବା ନିମିତ୍ତ ସଦଳବଳେ ଭଗବତୀ ଭାଗିରଥୀ ତଟକୁ ଅଗ୍ରସର ହେଲେ । ମହାରାଜ ଆଗେ ଆଗେ ଦ୍ରୌପଦୀଙ୍କ ସହିତ ରଥରେ ବସି ଯାଉଥାଆନ୍ତି, ଶଙ୍ଖ ଶବ୍ଦ ରାଜା ତାଙ୍କୁ ଏପରି ଘେରି ଚାଲୁଥାଆନ୍ତି ଯେ, ଯେପରିକି ଦେବେନ୍ଦ୍ରଙ୍କୁ ଘେରି ଦେବତାଗଣ ଚାଲନ୍ତି । ଯଦୁ, ସୃଞ୍ଜୟ, କାମ୍ବୋଜ, କୁରୁ, କୋଶଳ ଓ ଅନ୍ୟାନ୍ୟ ଦେଶର ରାଜା ସୁସଜ୍ଜିତ ହୋଇ ଧର୍ମରାଜଙ୍କ ଅନୁଗମନ କରୁଥାଆନ୍ତି । ରାଜାମାନଙ୍କର ମଣିମୟ ମୁକୁଟ ସୂର୍ଯ୍ୟାଲୋକରେ ଝଟକୁ ଥାଏ । ତାଙ୍କ ଗଳାରେ ପଡ଼ିଥିବା ସୁବର୍ଣ୍ଣ ଓ ମୋତି ହାର ଉଜ୍ଜ୍ୱଳ ହୋଇ ଦିଶୁଥାଏ । ରଥ, ହାତୀ, ଘୋଡ଼ା ଓ ପାଦରେ ଚାଲୁଥିବା ସୈନ୍ୟମାନଙ୍କ କୋଳାହଳରେ ଚତୁର୍ଦ୍ଦିଗ ଉଚ୍ଛୁଳି ପଡ଼ୁଥାଏ । ସମସ୍ତଙ୍କ ଆଗେ ଆଗେ ମୃଦଙ୍ଗ, ଶଙ୍ଖ, ପଣବ, ଢୋଲ, ଆନକ ଓ ଗୋମୁଖ ଆଦି ଶତ ଶତ ବାଦ୍ୟ ବାଦ୍ୟକାରମାନେ ବଜାଇ ବଜାଇ ଚାଲିଥାଆନ୍ତି । ତାଙ୍କ ପଛକୁ ନୃତ୍ୟ କରି କରି ନର୍ତ୍ତକୀମାନେ ଚାଲୁଥାଆନ୍ତି । ବୀଣା, ବେଣୁ, ଓ ମଞ୍ଜିରି ଆଦି ବାଦ୍ୟ ମଧ୍ୟ ବାଜୁଥାଏ । ବେଦଜ୍ଞ ବ୍ରାହ୍ମଣମାନେ ମଧୁର ଧ୍ୱନିରେ ବେଦମନ୍ତ୍ର ଉଚ୍ଚାରଣ କରୁଥାଆନ୍ତି । ଋତ୍ୱିକ, ପୁରୋହିତ, ଋଷି, ମୁନି ଓ ରାଜାମାନଙ୍କ ଗହଣରେ ଧର୍ମରାଜ ଅତ୍ୟନ୍ତ ଉତ୍ସାହର ସହିତ ଚାଲୁଥାଆନ୍ତି । ସେମାନଙ୍କ ମଝିରେ ଭଗବାନ ବାସୁଦେବ ବସିଥାଆନ୍ତି । ଧର୍ମରାଜଙ୍କର ଅନ୍ୟ ଭାଇମାନେ ଦେବାରେ ନିଯୁକ୍ତ ଥାଆନ୍ତି । ଏହିପରି ଭାବରେ ନଗର ଅତିକ୍ରମ କରି ସମସ୍ତେ ଅତ୍ୟନ୍ତ ଉତ୍ସାହରେ ଗଙ୍ଗାତୀରରେ ଯାଇ ପହଞ୍ଚିଲେ । ଭଗବାନ ଶ୍ରୀକୃଷ୍ଣଙ୍କର ଷୋଳ ହଜାର ଏକଶହ ଆଠ ପତ୍ନୀ ମଧ୍ୟ ଶିବିକା ଓ ରଥରେ ବସି ଅସ୍ତ୍ରଶସ୍ତ୍ରଧାରୀ ସୈନିକଙ୍କ ଗହଣରେ ଗଙ୍ଗା ତଟରେ ଆସି ପହଞ୍ଚିଲେ । ପାଣ୍ଡବଙ୍କର ସମସ୍ତ ପତ୍ନୀ ଓ ଅନ୍ୟାନ୍ୟ ରାଜାଙ୍କର ପତ୍ନୀଗଣ ଚନ୍ଦନ, ମାଳା, ବସ୍ତ୍ର ଓ ଅମୂଲ୍ୟ ଆଭୂଷଣରେ ଅଳଂକୃତ ହୋଇ ଅତ୍ୟନ୍ତ ଆହ୍ଲାଦ ଓ ଉତ୍ସାହର ସହିତ ଯଜ୍ଞାନ୍ତ ଅବଭୃଥ ସ୍ନାନରେ ସମ୍ମିଳିତ ହେବା ପାଇଁ ସେଠାକୁ ବି ଆସିଥିଲେ ।

ଗଙ୍ଗା କୂଳରେ ପହଞ୍ଚି ସମସ୍ତେ ମୃତ୍ତିକା, ଧାନ୍ୟାଦି, ଅପାମାର୍ଗ, ଦୁବ, କୁଶ, ଯଜ୍ଞଭସ୍ମାଦିରେ ବିଧି ବିଧାନ ଅନୁସାରେ ସ୍ନାନ କଲେ । ସ୍ନାନାନ୍ତରେ କ୍ରୀଡ଼ା ଆରମ୍ଭ

ହେଲା । ଅଦ୍ଭୁତ ସ୍ନାନରେ ହୋଲିଭଳି ଉତ୍ସବ ପାଳିତ ହୁଏ । ଜଣେ ଅନ୍ୟଜଣଙ୍କ ଉପରକୁ ଜଳ, ତେଲ, ଦୁଧ, ଦହି, କେଶର ଓ କୁଙ୍କୁମ ଆଦିରେ ଏହି କ୍ରୀଡ଼ା ହୁଏ । ହସ ଖୁସିରେ ସମସ୍ତେ ଜଳ ଫିଙ୍ଗାଫିଙ୍ଗି ହୁଅନ୍ତି ।

ଦ୍ରୌପଦୀଙ୍କ ସହିତ ଗଣ୍ଠି ପଡ଼ି ଧର୍ମରାଜ ଯେତେବେଳେ ସ୍ନାନ କରୁଥିଲେ, ସେତେବେଳେ ତାଙ୍କର ଅନ୍ୟଭାଇମାନେ ନିଜ ନିଜର ସ୍ତ୍ରୀ ମାନଙ୍କ ସହିତ ଗଣ୍ଠି ବନ୍ଧାବନ୍ଧି ହୋଇ ତାଙ୍କ ପଛରେ ଠିଆ ହୋଇଥିଲେ । ସେହି ସମୟରେ ଶ୍ୟାମସୁନ୍ଦର ସେଠାରୁ ଖସି ଯାଇଥିଲେ । ଧର୍ମରାଜ ଚାରିଆଡ଼କୁ ଚାହିଁ କହିଲେ---"ବାସୁଦେବ କୁଆଡେ ଗଲେ ? ତାଙ୍କ ବିନା ଅଦ୍ଭୁତ ସ୍ନାନ କିପରି ହୋଇ ପାରିବ ?" କେତେକ କହିଲେ—ଶ୍ୟାମସୁନ୍ଦର ତ ରଥରେ ବସିଛନ୍ତି । ସଙ୍ଗେ ସଙ୍ଗେ ଅର୍ଜୁନ ଦୌଡ଼ି ଯାଇ ତାଙ୍କୁ ସଙ୍ଗରେ ନେଇ ଆସିଲେ । ସେ ମନା କରୁଥିଲେ କିନ୍ତୁ ସେ କଥା ଶୁଣୁଛି କିଏ ? ଧର୍ମରାଜ ହସି ହସି କହିଲେ—"ଶ୍ୟାମ ସୁନ୍ଦର ! ତୁମର ଲୁଚିବା ଅଭ୍ୟାସ ଆଜି ଯାଏ ଯାଇ ନାହିଁ । ତୁମ ବିନା କିପରି ଅବା ଏଠାରେ ଅଦ୍ଭୁତ ସ୍ନାନ ଆଦି ହୋଇ ପାରିବ ? ମୁଁ ତୁମ ବିନା କିପରି ସ୍ନାନ କରିବି ? ତୁମେ ମୋ ସମ୍ମୁଖରେ ରୁହ ।"

ଅର୍ଜୁନ ହସି ହସି କହିଲେ—"ମହାରାଜ ! ଗୃହସ୍ଥୀଙ୍କର ତ ଏକୁଟିଆ କୌଣସି କର୍ମ କରିବାର ଅଧିକାର ନାହିଁ । ଆପଣ ଯେପରି ଗଣ୍ଠି ବାନ୍ଧି ସ୍ନାନ କରୁଛନ୍ତି, ଶ୍ରୀକୃଷ୍ଣଙ୍କୁବ ସେହିପରି କରନ୍ତୁ ।"

ଭୀମସେନ ଏହା ଶୁଣି ହସି ହସି କହିଲେ—"ଏହାଙ୍କର ଯଦି ଏକ ପତ୍ନୀ ହୋଇଥାଆନ୍ତେ ସିନା ଏ ଗଣ୍ଠି ବାନ୍ଧି ସ୍ନାନ କରନ୍ତେ, ଷୋଳ ହଜାର ଏକଶହ ଆଠ ପତ୍ନୀଙ୍କ ସହ ଗଣ୍ଠି ବାନ୍ଧି ସେ କିପରି ସ୍ନାନ କରିବେ ? ତାଙ୍କର ପୀତାମ୍ବର ତ ଗଣ୍ଠିରେ ଭରିଯିବ ।"

ସହଦେବ କହିଲେ—"ମହାରାଜ ! ମୁଁ ଏହାର ଉପାୟ ଜାଣିଛି । ୧୬,୧୦୮ଟି ସୁବର୍ଣ୍ଣ ସୂତାର ଟୁକୁରା ଆଣି ପ୍ରତ୍ୟେକରେ ଗୋଟିଏ ଗୋଟିଏ ଗଣ୍ଠି ଦିଅ ସେଗୁଡ଼ିକୁ ଶ୍ୟାମସୁନ୍ଦରଙ୍କର ପୀତାମ୍ବର କାନରେ ବାନ୍ଧି ଦିଆଯାଉ ଏବଂ ଅନ୍ୟ ପକ୍ଷରେ ୧୬,୧୦୮ ପତ୍ନୀଙ୍କର ପୃଷ୍ଠଭଳି ଲମ୍ବିଥିବା ବେଣୀରେ ଏକ ଏକ ଖାଡ଼ୀ ବାନ୍ଧି ସେ ସବୁକୁ ଲମ୍ବାଇ ଶ୍ୟାମସୁନ୍ଦରଙ୍କ ପୀତାମ୍ବରରେ ବାନ୍ଧି ଦିଆଯାଉ ।"

ଏହା ଶୁଣି ଦ୍ରୌପଦୀ ହସି ହସି କହିଲେ—"ତାହାହେଲେ ତ ଭଉଣୀ ସୁଭଦ୍ରାର ବହୁତ ଲାଭ ହେବ । ସମସ୍ତଙ୍କଠାରୁ ପୃଥକ୍ ପୃଥକ୍ ବନ୍ଧାଇ ଉପହାର ସେ ପାଇବ ।"

ଏହି ସମୟରେ ଅର୍ଜୁନ ସୁବର୍ଣ୍ଣ ସୂତାର ଟୁକୁରା ଯୋଗାଡ଼ କରି ଆଣି ଶ୍ୟାମସୁନ୍ଦରଙ୍କ ପୀତାମ୍ବରରେ ବାନ୍ଧିଦେଲେ । ଏହା ଦେଖି ଦ୍ରୌପଦୀ କହିଲେ—"ତୁମେ କ'ଣ କରୁଛ ? ବାନ୍ଧିବା କାମ ତ ସୁଭଦ୍ରାର ।"

ଅର୍ଜୁନ ହସି ହସି କହିଲେ—"ମୁଁ ଗୋଟିଏ ପକ୍ଷର ବାନ୍ଧି ଦେଉଛି, ଅନ୍ୟ ପକ୍ଷରେ ସୁଭଦ୍ରା ବାନ୍ଧୁ ।"

ଭୀମସେନ ଶ୍ୟାମସୁନ୍ଦରଙ୍କୁ ଧରିଥିଲେ ଓ ଧର୍ମରାଜ ମୁରୁକି ମୁରୁକି ହସୁଥିଲେ । ଅନ୍ୟାନ୍ୟ ରାଜାମାନେ ମଧ୍ୟ ପରିହାସ ଛଳରେ ହସୁଥିଲେ । ସୁଭଦ୍ରା ନିଜର ଶ୍ରେଷ୍ଠ ଶ୍ରେଷ୍ଠ ଅଙ୍ଗୁଠିରେ ରାଣୀମାନଙ୍କର ଶାଢ଼ୀରେ ଗଣ୍ଠି ବାନ୍ଧିବାରେ ଲାଗିଲେ ଓ ରାଣୀମାନେ ହସୁଥିଲେ । ସେମାନେ ସଂକୋଚରେ ନିଜ ନିଜର ମୁହଁ ଲୁଚାଉଥିଲେ । ସେମାନେ ଲଜ୍ଜାରେ ପଛକୁ ପଛକୁ ଘୁଞ୍ଚି ଯାଉଥିବାରୁ ନକୁଳ ଓ ସହଦେବ ସେମାନଙ୍କୁ ଧରି ଧରି ଆଗକୁ ଠିଆ କରାଇ ଦେଉଥିଲେ । ସେହି ପରିବେଶରେ ସରସର ଧାରା ପ୍ରବାହିତ ହେଉଥିଲା । ଶ୍ରୀକୃଷ୍ଣଙ୍କର ପତ୍ନୀଗଣ ସେମାନଙ୍କ ଦେବର ସମ୍ବନ୍ଧୀୟମାନଙ୍କ ସହିତ ହସ ଖୁସିରେ ଜଳକ୍ରୀଡ଼ା ଖେଳିଥିଲେ । ସମସ୍ତେ ମିଶି ଶ୍ୟାମସୁନ୍ଦରଙ୍କ ସହିତ କ୍ରୀଡ଼ା କରି ତାଙ୍କୁ ବିବଶ କରିଦେଲେ । ସେ ଅଜିତ ହୋଇ ମଧ୍ୟ ଏଠାରେ ହାରିଗଲେ ।

ଅନ୍ୟାନ୍ୟ ରାଜାଙ୍କର ରାଣୀଗଣ ଲଜ୍ଜାପୂର୍ବକ ହସି ହସି ପ୍ରସନ୍ନ ବଦନରେ ଶ୍ରୀକୃଷ୍ଣ ଓ ତାଙ୍କର ମିତ୍ର ବନ୍ଧୁ ବାନ୍ଧବଙ୍କୁ ଥଟ୍ଟା ପରିହାସ କରିବାରେ ଲାଗିଲେ । ଏପରି ସରସ କ୍ରୀଡ଼ାକୁ ଦେଖି ମଳିନ ବୁଦ୍ଧି ବ୍ୟକ୍ତିମାନଙ୍କର ମନରେ କ୍ଷୋଭ ଉତ୍ପନ୍ନ ହେଉଥାଏ ଓ ବିମଳମତି ମୁନିଋଷିମାନେ ଏହାକୁ ମାଧବଙ୍କର ମୋହିନୀ ମାୟା ବୋଲି ଜାଣି ଆନନ୍ଦିତ ହେଉଥାଆନ୍ତି । ଏହିପରି ଅନେକ ସମୟ ପର୍ଯ୍ୟନ୍ତ ଏହି କ୍ରୀଡ଼ା ଚାଲିଥିଲା ।

କ୍ରୀଡ଼ା ଶେଷ ହେବାରୁ ଋତ୍ୱିକଗଣ ଯୁଧିଷ୍ଠିରଙ୍କ ଦ୍ୱାରା "ସଯାଜ" ନାମକ ଯଜ୍ଞ ଓ ଅବଭୃଥ ସ୍ନାନର ସମସ୍ତ ସାଙ୍ଗୋପାଙ୍ଗ କର୍ମ କରାଇଲେ । ଏହି ସମୟରେ ସମସ୍ତ ରାଜା ଓ ପ୍ରଜାବର୍ଗ ମିଳି ଯୁଧିଷ୍ଠିର ଆଦିଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ଏହାପରେ ଧର୍ମରାଜ ସୁବର୍ଣ୍ଣମଣ୍ଡିତ ଦିବ୍ୟ ରଥରେ ନିଜ ପତ୍ନୀଙ୍କ ସହିତ ବସି ଯାଚକମାନଙ୍କୁ ବସ୍ତ୍ର ଧନରତ୍ନ ଦାନ କରି ଅତ୍ୟନ୍ତ ଆନନ୍ଦରେ ଇନ୍ଦ୍ରପ୍ରସ୍ଥ ଫେରି ଆସିଲେ ।

ଯଜ୍ଞକୁ ଆସିଥିବା ଅତିଥିମାନେ ଇନ୍ଦ୍ରପ୍ରସ୍ଥରେ ବର୍ଷେ ପର୍ଯ୍ୟନ୍ତ ରହି ନିଜ ନିଜ ରାଜ୍ୟକୁ ଫେରି ଯାଇଥିଲେ । ଧର୍ମରାଜ ମଧ୍ୟ ସମ୍ମାନର ସହିତ ସେମାନଙ୍କୁ ବିଦାୟ ଦେଇଥିଲେ । ସେତେବେଳେ ଶ୍ୟାମସୁନ୍ଦର ସଂକୋଚରେ କହିଥିଲେ—"ଧର୍ମରାଜ ! ମୋର ତ ଆପଣମାନଙ୍କୁ ଛାଡ଼ି ଯିବାକୁ ଆଦୌ ଇଚ୍ଛା ହେଉନାହିଁ । କିନ୍ତୁ ଦ୍ୱାରକାରେ ବହୁତ କାର୍ଯ୍ୟ ଅଛି, ମୋତେ ମଧ୍ୟ ଯିବାପାଇଁ ଅନୁମତି ପ୍ରଦାନ କରନ୍ତୁ ।"

ଏହା ଶୁଣି ଧର୍ମରାଜ ନୟନରୁ ନୀର ଗଡ଼ାଇ ଅବରୁଦ୍ଧ କଣ୍ଠରେ କହିଲେ— "ବାସୁଦେବ ! ଆପଣଙ୍କ ବିନା ତ ଏ ସ୍ଥାନ ଶୂନ୍ୟ ହୋଇଯିବ । ଆଜି ସମସ୍ତ ବନ୍ଧୁ, ସାଙ୍ଗସାଥୀ ସ୍ନେହୀ ରାଜାମାନେ ଚାଲିଯିବାରୁ ମୋର ଚିତ୍ତ ଉଦାସ ହେଉଅଛି । ଆପଣ ପାଖରେ ଥିବାରୁ ମନକୁ ସାନ୍ତ୍ୱନା ମିଳୁଛି । ଏବେ ଆପଣ ବି ଆମ୍ଭମାନଙ୍କୁ ଛାଡ଼ି ଚାଲିଯିବାକୁ ବସିଲେଣି । ଆମ୍ଭମାନଙ୍କର ଦଶା କ'ଣ ହେବ କହନ୍ତୁ ନା ! ଆପଣ ମୋର ପ୍ରାର୍ଥନା ରକ୍ଷା କରି ଆଉ କିଛିଦିନ ଏଠାରେ ଅବସ୍ଥାନ କରନ୍ତୁ ।"

ସୂତ କହିଲେ—"ମୁନିଗଣ ! ଧର୍ମରାଜ ବହୁତ ଆଗ୍ରହ କରିବାରୁ ଭଗବାନ ଆଉ କିଛି ଦିନ ରହିଗଲେ । ସେ ନିଜର ପୁତ୍ର ଶାମ୍ବଙ୍କୁ ଦ୍ୱାରକା ପଠାଇଦେଲେ । କୁଳ ସମ୍ବନ୍ଧ ହେତୁ ଦୁର୍ଯ୍ୟୋଧନ ଆଦି କୌରବଗଣ ମଧ୍ୟ ଆଉ କିଛି ଦିନ ଇନ୍ଦ୍ରପ୍ରସ୍ଥରେ ଅବସ୍ଥାନ କଲେ । ଭଗବାନ ଶ୍ରୀକୃଷ୍ଣଙ୍କ କୃପାରୁ ଧର୍ମରାଜ ନିଜର ମନୋରଥରୂପୀ ସମୁଦ୍ରକୁ ନିର୍ବିଘ୍ନରେ ପାର ହୋଇଗଲେ ! ତାଙ୍କର ସମସ୍ତ ଇଚ୍ଛା ପୂର୍ଣ୍ଣ ହୋଇଗଲା । ପ୍ରତ୍ୟେକେ ଯଜ୍ଞ ବୈଭବକୁ ଦେଖି ପରମ ଆନନ୍ଦିତ ହେଲେ । ଦେଶ ଦେଶାନ୍ତରର ଲୋକେ ଯଜ୍ଞର ବହୁ ପ୍ରଶଂସା କଲେ । ସମସ୍ତେ ଆନନ୍ଦିତ ହେଲେ ସତ୍ୟ; କିନ୍ତୁ ଯଜ୍ଞର ମହାନ୍ ବୈଭବକୁ ଦେଖି ଦୁର୍ଯ୍ୟୋଧନଙ୍କ ମନରେ କ୍ଲେଶ ହେଲା । ପାଣ୍ଡବଙ୍କର ଏପରି ଅଭ୍ୟୁଦୟ ଦେଖି ସେ ମନେ ମନେ ଈର୍ଷାରେ ଜଳି ଯାଉଥିଲେ । ଈର୍ଷାବଶତଃ ତାଙ୍କ ନିଦ୍ରା ହେଉ ନଥିଲା । ସେହି ସମୟରେ ଏକ ଦୁର୍ଘଟଣା ଘଟିଲା । ସେ ସମ୍ବନ୍ଧରେ ମୁଁ ପରବର୍ତ୍ତୀ ପ୍ରସଙ୍ଗରେ ଆପଣମାନଙ୍କୁ କହିବି ।"

## ଛପ୍‌ପୟ

ଗଙ୍ଗାଜୀ ପେ ଯାଇ ନ୍ହାନ କୀ ଧୂମ ମଚାଇ ।
ଘେରେ ରାନୀ ଶ୍ୟାମ ଉଲଚ ଜଲ ଦେହ ଭିଗାଇ ॥
ପିଚକାରୀ ପ୍ରଭୁ ମାର କରେଂ ବ୍ୟାକୁଲ ନାରିନ କୁଁ ।
ହୁଁସେ ହୁଁସାବେଂ ପକରି ଡୁବାବେଂ ସବ ସାଥିନ କୁଁ ॥
ରାନୀ ସଁଗ ହୋରୀ କରତ, ମଲତ ମୁଖନ ବେଶର ଲଲିତ ।
ସୁମନ ଗିରତ ଶିର କଚ ଖୁଲତ, କୃଷ୍ଣ କଲିତ କ୍ରୀଡ଼ା କରତ ॥

●

# ପାଣ୍ଡବଙ୍କ ଅଭ୍ୟୁଦୟ, ଦୁର୍ଯ୍ୟୋଧନର ଈର୍ଷା

ଯସ୍ମିନ୍ ନରେନ୍ଦ୍ରଦିତିଜେନ୍ଦ୍ରସୁରେନ୍ଦ୍ରଲକ୍ଷ୍ମୀ—
ର୍ନାନାବିଭାନ୍ତି କିଲ ବିଶ୍ୱସୃଜୋପକ୍ଳୃପ୍ତାଃ ।
ତାଭିଃ ପତୀନ୍ ଦ୍ରୁପଦରାଜସୁତୋପତସ୍ଥେ
ଯସ୍ୟାଂ ବିଷକ୍ତହୃଦୟଃ କୁରୁରାଡ଼ତପ୍ୟତ୍ ।। *

(ଶ୍ରୀ ଭା : ୧୦ ସ୍କ: ୭୫ ଅ: ୩୨ ଶ୍ଳୋକ)

## ଛପ୍ପୟ

କରି ଅବଭୃତ ଇସନାନ ନୃପତି ନିଜ ନିଜ ପୁର ଗମନେ ।
ସୁହୃଦ୍ ବନ୍ଧୋଦ୍ଧୋ ନିରଖି ଧରମ ସୁତ ଭୟେ ଅନମନେ ।।
ରହେ ପ୍ରେମବଶ ଶ୍ୟାମ ସୁଯୋଧନ ଠହର୍ୟୋ କଛୁଦିନ ।
ଲଖି ପାଣ୍ଡବ ଧନ ବିଭବ ତାସୁ ହିୟ ଜରତ ଛିନହି ଛିନ ।।
ଏକ ଦିବସ ମୟ ସଭା ମହିଁ, ଜଲ ଥଲ ଭ୍ରମ ତାକୁଁ ଭୟୋ ।
ଥଲ କୁଁ ଜଲ ଲଖି ମୋହ ବଶ, ପଗ ରପଟ୍ୟୋ ପୁନ ଗିରଗୟୋ ।।

ସଜ୍ଜନମାନଙ୍କ ହୃଦୟ ସର୍ବଦା ଅନ୍ୟର ଉନ୍ନତି ଦେଖି ପ୍ରସନ୍ନ ହେଉଥାଏ । ସେମାନେ ସୁଖୀ ଲୋକଙ୍କୁ ଦେଖି ସେମାନଙ୍କ ସହିତ ଆହ୍ଲାଦରେ ଆଳାପ ଆଲୋଚନା

---

* ନର ଅସୁର ସୁର ଶିରୀ । ଯାର ଭୁବନେ ଅଛି ପୂରି ।।
ବ୍ରହ୍ମା-ସୃଜିତ-ଭୋଗ ଯେତେ । ନାନା ପ୍ରକାରେ ଅପ୍ରମିତେ ।।
ଦ୍ରୁପଦ ରାଜାର ନନ୍ଦନୀ । ସର୍ବ ସମ୍ପଦ ସଙ୍ଗେ ଘେନି ।।
ସେବଇ ଯୁଧିଷ୍ଠିର ପାଦେ । କୃଷ୍ଣ ପ୍ରସନ୍ନେ ଅପ୍ରମାଦେ ।।
ତା ଦେଖି ଅନ୍ଧର ନନ୍ଦନ । ଅନ୍ତରେ ଦହଇ ଜୀବନ ।।

( ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୮୦ ଅ. )

କରନ୍ତି ଓ ଦୁଃଖୀ ଲୋକଙ୍କୁ ଦୟାରେ ଦ୍ରବିତ ହୋଇ ଯାଆନ୍ତି । କିନ୍ତୁ ଖଳ ଲୋକମାନେ ଅନ୍ୟର ଅଭ୍ୟୁଦୟ ଦେଖି ଜଳି ଉଠନ୍ତି । ସେମାନଙ୍କ ମନରେ ଈର୍ଷା ଜାତ ହୁଏ । ଅପର ସେମାନଙ୍କର ଅବନତି ହେବ, ସେହି କଥା ସର୍ବଦା ଚିନ୍ତା କରନ୍ତି । ଯଦି ଚ ଏହାଦ୍ୱାରା ସେମାନଙ୍କର କିଛି ଲାଭ ହୁଏ ନାହିଁ, ତଥାପି ସେମାନଙ୍କର ହୃଦୟ ଏତେ କଳୁଷିତ ଯେ, ସେମାନେ ସର୍ବଦା ଅନ୍ୟର ଅନିଷ୍ଟ ଚିନ୍ତା କରନ୍ତି । ପଛରେ ନିଜର ସମୃଦ୍ଧିଶାଳୀ ତଥା ଭଲ ଲୋକମାନଙ୍କର ନିନ୍ଦା କରନ୍ତି । ଅନ୍ୟର ଦୁଃଖ ଦେଖି ସେମାନଙ୍କ ମନ ଆନନ୍ଦିତ ହୁଏ । ଏପରି କି ସେମାନେ ନିଜର ସାଥୀ ଓ ବନ୍ଧୁବାନ୍ଧବମାନଙ୍କର ଉନ୍ନତିରେ ପୁତ୍ରଶୋକଠାରୁ ବଳି ଦୁଃଖିତ ହୋଇଥାଆନ୍ତି ।

ସୂତ କହିଲେ—"ମୁନିଗଣ ! ସଜ୍ଜନତା ଯୋଗୁ ଧର୍ମରାଜ ତ ଦୁର୍ଯ୍ୟୋଧନଙ୍କୁ ନିଜ କୁଳର ଶ୍ରେଷ୍ଠ ଜ୍ଞାନ କରି ରାଜାମାନେ ଦେଇଥିବା ଭେଟି ତାଙ୍କଦ୍ୱାରା ଗ୍ରହଣ କରାଇଥିଲେ; କିନ୍ତୁ ଏହାର ପରିଣାମ ବିପରୀତ ହେଲା । ସେ ଯେତେ ଯେତେ ଅଧିକ ଭେଟି ଗ୍ରହଣ କରୁଥାଆନ୍ତି, ତାଙ୍କର ଈର୍ଷା ସେତେ ସେତେ ଅଧିକ ବଢ଼ିବାରେ ଲାଗିଥାଏ । ପାଣ୍ଡବଙ୍କର ଉନ୍ନତିରେ ତାଙ୍କର ଅତ୍ୟଧିକ ଆନ୍ତରିକ ପୀଡ଼ା ହେବାକୁ ଲାଗୁଥାଏ । ସେ ଦେଖିଲେ ଲକ୍ଷ ଲକ୍ଷ ରାଜା ଉତ୍ତମରୁ ଉତ୍ତମ ଭେଟି ଆଣି ରାଜସୂୟ ଯଜ୍ଞରେ ପ୍ରଦାନ କରୁଛନ୍ତି । ସେ ସବୁ ଧନରତ୍ନ ରଖିବା ପାଇଁ ଜାଗା ଅଣ୍ଟୁ ନାହିଁ । ଧନ ଗୁଡ଼ିକ ମାଟି ଗୋଡ଼ି ଭଳି ଇତସ୍ତତଃ ଜମା କରାଯାଉଛି । ହାତୀ, ଘୋଡ଼ା, ରଥ, ଗୋରୁଗାଈ ଓ ଓଟ ଆଦି ଉପଯୋଗୀ ପଶୁ ମଧ୍ୟ କେତେକ ରାଜା ଭେଟି ଦେଉ ଥାଆନ୍ତି । ସେମାନଙ୍କୁ ବାନ୍ଧିବାକୁ ସ୍ଥାନର ଅଭାବ ହେଉ ଥିବାରୁ ସେମାନେ ଏଣେତେଣେ ବୁଲି ଚରୁଥାଆନ୍ତି । ରଥ ରଖିବା ପାଇଁ ଅନେକ ସ୍ଥାନ ଆବଶ୍ୟକ ପଡ଼ୁ ଥାଏ । ଦୁର୍ଯ୍ୟୋଧନ ଯେଉଁଆଡ଼େ ଗଲେ ଆଆନ୍ତି, ସେଆଡ଼େ ତାଙ୍କୁ ଚମତ୍କାର ଦେଖା ଯାଉଥାଏ । ଭୋଜନ କରିବା ପାଇଁ ସେଠାରେ ଏକ ଲକ୍ଷ ବ୍ରାହ୍ମଣ ଏକସଙ୍ଗେ ବସି ଥାଆନ୍ତି । ସେତେବେଳେ ଶଙ୍ଖ ବଜା ଯାଉଥାଏ । ମୂର୍ଦ୍ଧାଭିଷିକ୍ତ ବଡ଼ ବଡ଼ ରାଜାମାନେ ମଧ୍ୟ ଯଜ୍ଞରେ ଦାସଙ୍କ ଭଳି ସେବା କରୁଥାଆନ୍ତି । ହାତରେ ସୁବାସିତ ଜଳପାତ୍ର ଧରି ସମସ୍ତଙ୍କ ହାତ ଧୋଇ ଦେଉଥାଆନ୍ତି । ଶ୍ରୀକୃଷ୍ଣ ସମସ୍ତ ଅତିଥିଙ୍କର ପାଦଧୋଇ ଦେଉଥାଆନ୍ତି । ପାଣ୍ଡବଙ୍କର ଏତେ ଅଧିକ ସମ୍ମାନ ଦେଖି ଦୁର୍ଯ୍ୟୋଧନଙ୍କୁ ଜ୍ୱର ଆସି ଯାଉଥାଏ । ଈର୍ଷାହେତୁ ତାଙ୍କ ହୃଦୟ ଜଳି ଯାଉଥାଏ । ଯଜ୍ଞ ଉଦ୍‌ଯାପିତ ହେଲା । କୁଳଗତ ପରମ୍ପରା ଅନୁସାରେ ସେ ସମସ୍ତଙ୍କ ପଛରେ ଗଲେ ଯିବା କଥା । ତେଣୁ ତାଙ୍କୁ ଅଧିକ କିଛିଦିନ ପର୍ଯ୍ୟନ୍ତ ରହିବାକୁ ପଡ଼ିଲା । ସେ ସର୍ବଦା କ୍ରୋଧ ଓ ଅଭିମାନରେ ବୁଡ଼ି ରହୁଥାଆନ୍ତି । ଧର୍ମରାଜଙ୍କ ମହଲ ଉତ୍ସବମୁଖର ହୋଇ ଉଠିଥିଲା । ଶ୍ରୀକୃଷ୍ଣଙ୍କର ଷୋଳ ହଜାର ଏକଶହ ଆଠ ରାଣୀ ଯେତେବେଳେ ନିଜ ନିଜର କଟିହାର କାରଣରୁ ଚରଣର ନୂପୁର ଗୁଡ଼ିକର ଝଂକୃତ ମନ୍ଥର ସଙ୍ଗୀତରେ ଏଣେତେଣେ ବିଚରଣ କରୁଥିଲେ, ସେତେବେଳେ ଏପରି ଅନୁଭୂତ

ହେଉଥିଲା ଯେ; ସତେ ଯେପରି ଋଦ୍ଧି-ସିଦ୍ଧି ଗୁଡ଼ିକ ପାଣ୍ଡବଙ୍କ ଭବନରେ ବିହାର କରୁଅଛନ୍ତି। ଦ୍ରୌପଦୀଙ୍କ ସୌଭାଗ୍ୟ ସମ୍ବନ୍ଧରେ ତ କହିବା ସମ୍ଭବ ନୁହେଁ। ତାଙ୍କର ପାଞ୍ଚ ପତି ତାଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ। ହଜାର ହଜାର ଦାସୀମାନଙ୍କ ଗହଣରେ ସେ ନିଜ ପତିମାନଙ୍କର ସେବାରେ ସଲଗ୍ନ ରହୁଥିଲେ। ସେହି ଭାଗ୍ୟବତୀ ଦ୍ରୁପଦସୁତାଙ୍କୁ ଦେଖି ଦୁର୍ଯୋଧନଙ୍କ ହୃଦୟରେ କ୍ଷୋଭ ଜାତ ହୋଇ ତାଙ୍କର ଈର୍ଷା ଶେଷ ସୀମାରେ ପହଞ୍ଚି ଯାଇଥିଲା।

ଦିନେ ଧର୍ମରାଜ ଯୁଧିଷ୍ଠିର ମୟଦାନବ ଦ୍ୱାରା ନିର୍ମିତ ହୋଇଥିବା ଦିବ୍ୟ ସଭାରେ ସଚୀବ ଓ ଭାଇମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ଇନ୍ଦ୍ରଙ୍କପରି ବିରାଜମାନ କରିଥିଲେ। ତାଙ୍କର ଚାରିଭାଇ ଶ୍ରଦ୍ଧାର ସହିତ ତାଙ୍କର ସେବା କରୁଥିଲେ। ଶ୍ରୀକୃଷ୍ଣ ତାଙ୍କ ସମ୍ମୁଖରେ ବସିଥିଲେ। ସେ ପାଣ୍ଡବଙ୍କର ଅନ୍ତର ଓ ବାହାର ଉଭୟର ନେତ୍ର ସଦୃଶ ଥିଲେ। ସୂତ, ମାଗଧ ଓ ବନ୍ଦୀଗଣ ତାଙ୍କର ସ୍ତୁତି କରୁଥିଲେ। ସେହି ସମୟରେ ଦୁର୍ଯୋଧନଙ୍କୁ ମଧ୍ୟ ସେହି ସଭାରେ ଉପସ୍ଥିତ ହେବାକୁ ପଡ଼ିଥିଲା। ସେ ଯେଉଁଠାରେ ରହୁଥିଲେ, ତାହା ଅନ୍ତଃପୁରର ଏକ ଉତ୍ତମ ଭବନ ଥିଲା। ଧର୍ମରାଜ ତାଙ୍କ ଆଦର ସତ୍କାରର ବ୍ୟବସ୍ଥା କରିଦେଇଥିଲେ। ହଠାତ୍ ସେ ନିଜର ସୁବର୍ଣ୍ଣମଣ୍ଡିତ ମୁକୁଟ ପିନ୍ଧି ହସ୍ତରେ ଖଡ୍‌ଗ ଧାରଣ କରି ନିଜର ଦୁଇ ଚାରି ଭାଇଙ୍କୁ ସଙ୍ଗରେ ନେଇ ଧର୍ମରାଜ ସଭା ଆଡ଼କୁ ଚାହିଁଲେ। ସେ ବାହାରିବା ମାତ୍ରେ ହଜାର ହଜାର ସେବକ, ଦ୍ୱାରପାଳ ଆଦି ତାଙ୍କର ଅନୁଗମନ କଲେ। ସେ ସମସ୍ତଙ୍କୁ ଧମକ ଚମକ ଦେଇ ଫେରିଯିବାକୁ କହିଲେ। ସେ କହିଲେ— "ମୁଁ କ'ଣ ରାଜସଭାକୁ ବାଟ ଦେଖିନାହିଁ ଯେ ତୁମ୍ଭେମାନେ ମୋତେ ବାଟ ଦେଖାଇବାକୁ ଆସୁଛ ? ମୋତେ ବାଟ ବତାଇବା ଦରକାର ନାହିଁ, ତୁମ୍ଭେମାନେ ସମସ୍ତେ ଫେରିଯାଅ।"

କୁରୁରାଜଙ୍କର ଏପରି ଧମକରେ ସମସ୍ତ ସେବକ ଚୂପ୍‌ଚାପ ଫେରି ଆସିଲେ। ଏବେ ସେ ନିଜର ଭାଇଙ୍କ ଗହଣରେ ଅଗ୍ରସର ହେଲେ। ମୟାସୁର ସେ ସଭାକୁ ଅତି ସୁନ୍ଦର ଭାବରେ ନିର୍ମିତ କରିଥିଲା। ସେଠାରେ ନୀଲମ୍‌ର ଟାଇଲ ଖଞ୍ଜାଯାଇ ଏଭଳି ଦିଶୁଥିଲା ଯେ, ଦୂରରୁ ଦେଖିବା ଲୋକଙ୍କୁ ତାହା ଜଳପୂର୍ଣ୍ଣ ସରୋବର ପରି ପ୍ରତୀତ ହେଉଥିଲା। ସ୍ଥାନେ ସ୍ଥାନେ ସ୍ଫଟିକର ଏପରି ସରୋବର ନିର୍ମିତ ହୋଇଥିଲା ଯେ, ତାହାର ଜଳ ଶଙ୍ଖ ମଲ୍‌ମଲ୍‌ ପଥରର ଅଗଣାରେ ଆଦୌ ଦେଖାଯାଉ ନଥିଲା। ଦୂରରୁ ସମସ୍ତେ ତାହାକୁ ସ୍ଥଳ ବୋଲି ଜାଣିପାରୁଥିଲେ। ଦୁର୍ଯୋଧନ ଦେଖିଲେ—ପାଣ୍ଡବମାନେ ତାଙ୍କୁ ଭ୍ରମରେ ପକାଇବା ପାଇଁ ମାର୍ଗରେ ପାଣି ଭରି ଦେଇଛନ୍ତି। ତେଣୁ ସେ ନିଜର ପିନ୍ଧିଥିବା ବସ୍ତ୍ରକୁ ଟେକିଟାକି ନୀଲମ୍‌ ଟାଇଲ ଖଞ୍ଜା ଯାଇଥିବା ପଥରେ ଆଗକୁ ପାଦ ବଢ଼ାଇଲେ; କିନ୍ତୁ ସେଠାରେ ତ ପାଣି ନଥିଲା, ଏହା ଦେଖି ସେ ନିଜର ନିର୍ବୋଧ

ପଶିଆସୁ ପ୍ରକାଶ ହେବାକୁ ନଦେଇ ସଙ୍ଗେ ସଙ୍ଗେ ବସ୍ତ୍ରକୁ କୌଣସି ପୋକ ଝାଡ଼ିବା ବାହାନାରେ ଏପଟ ସେପଟ ବୁଲାଇ ଝାଡ଼ାଝଡ଼ିର ଅଭିନୟ କଲେ ଓ ବସ୍ତ୍ରକୁ ସଜାଡ଼ି ନେଲେ । ଏହାପରେ କିଛିଦୂର ଆଗେଇ ଯାଇ ଯେଉଁଠି ଯଥାର୍ଥରେ ଜଳପୂର୍ଣ୍ଣ ସରୋବର ଥିଲା; କିନ୍ତୁ ମୟାସୁରର ମାୟାରେ ଏପରି ବିମୋହିତ ହୋଇଗଲେ ଯେ, ସେହି ଜଳକୁ ସେ ସ୍ଥଳ ମନେକରି ଖୁବ୍ ପ୍ରଗଳ୍ଭତାରେ ଆଗକୁ ଆଗେଇ ଗଲେ ଓ ସଙ୍ଗେ ସଙ୍ଗେ ସେହି ସରୋବରରେ ଟଳିପଡ଼ିଲେ । ତାଙ୍କର ସମସ୍ତ ବସ୍ତ୍ର ଭିଜିଗଲା । ସେ ଓଦା ହୋଇଥିବା ବସ୍ତ୍ରରେ ଭଲ ଛଟପଟ ହେବାକୁ ଲାଗିଲେ । ତରବର ହୋଇ ଜଳ ମଧ୍ୟରୁ ବାହାରି ସେ ଲୁଗାପଟାକୁ ଚିପୁଡ଼ିଲେ । ତାଙ୍କର ଏହି ମୂର୍ଖତାକୁ ଦେଖି ସମସ୍ତ ସଭାସଦ ଓ ରାଣୀମାନେ ହସିଉଠିଲେ । ସେ ସଙ୍ଗେ ସଙ୍ଗେ ଏକ କାନ୍ଥ ନିକଟକୁ ଚାଲିଆସିଲେ । ସେଠାରେ ତାଙ୍କୁ ତାହା ଏକ ଦ୍ୱାର ଭଳି ପ୍ରତୀତ ହେଲା । ସେ ଯେତେବେଳେ ସେହି କାନ୍ଥକୁ ଦ୍ୱାର ମନେକରି ତା ଭିତରକୁ ପଶିବାକୁ ଚେଷ୍ଟା କଲେ, ସେତେବେଳେ ତାଙ୍କ ମୁଣ୍ଡ ସେହି କାନ୍ଥରେ ପିଟି ହୋଇଗଲା । ଏହା ଦେଖି ସମସ୍ତେ ଅଧିକ ହସିବାକୁ ଲାଗିଲେ । ଭୀମସେନ ବ୍ୟଙ୍ଗ ସ୍ୱରରେ କହିଲେ—“ଧୃତରାଷ୍ଟ୍ର ନନ୍ଦନ ! ସେଇଟା ଦ୍ୱାର ନୁହେଁ, ଦ୍ୱାର ତ ଏପଟେ । ଏ ପାଖକୁ ଚାଲି ଆସ । ସିଆଡ଼େ କୁଆଡ଼େ ଯାଉଛ ?”

ଧୃତରାଷ୍ଟ୍ର ନନ୍ଦନ ବୋଲି କହିବାର ତାତ୍ପର୍ଯ୍ୟ ଏହା ଥିଲା ଯେ, ତୁମର ବାପ ଯେପରି ଅନ୍ଧ, ତୁମେ ବି ସେହିପରି ଅନ୍ଧ । ଏହା କହି ଭୀମସେନ ହସି ହସି ଗଡ଼ିଗଲେ । ତାଙ୍କ ହସ ଦେଖି ସ୍ତ୍ରୀଲୋକମାନେ ଓ ଅନ୍ୟ ରାଜାମାନେ ମଧ୍ୟ ଜୋରରେ ହସିବାକୁ ଲାଗିଲେ । ଧର୍ମରାଜ ଏହା ଦେଖି ଅତ୍ୟନ୍ତ ଦୁଃଖିତ ହେଲେ । ସେ ସମସ୍ତଙ୍କୁ ବାରମ୍ବାର ତାଗିଦ କରୁଥିଲେ ମଧ୍ୟ କାହାରି ହସ ବନ୍ଦ ହେଉ ନଥିଲା । ସେ ବିରକ୍ତ ହୋଇ କହିଲେ—ଅନ୍ୟକୁ ପଡ଼ିଯିବାର ଦେଖି ଆମେମାନେ ସାହାଯ୍ୟ ସହାନୁଭୂତି କରିବା ପରିବର୍ତ୍ତେ ହସିବା କ'ଣ କର୍ତ୍ତବ୍ୟ ? ସେ ଗମ୍ଭୀରତା ପୂର୍ବକ ସମସ୍ତଙ୍କୁ ତ ଗାଳି ଦେଉଥିଲେ; କିନ୍ତୁ ଆମର ଏ କଳାକାହ୍ନୁ ଶୂନ୍ୟେ ଶୂନ୍ୟେ ସମସ୍ତଙ୍କୁ ସେତେବେଳେ ଠାରି ହସିବାକୁ ସଙ୍କେତ ଦେଉଥିଲେ ଓ ନିଜେ ମଧ୍ୟ ହସୁଥିଲେ । ହସିବା ତ ତାଙ୍କର ସ୍ୱଭାବ ଥିଲା । ତାଙ୍କ ମୁଖମଣ୍ଡଳରେ ସଦା ସର୍ବଦା ହସ ତ ଲାଗିରହି ଶୋଭା ପାଉଥାଏ । ଭଗବାନଙ୍କର ହର୍ଷ ଦେଖି ଧର୍ମରାଜଙ୍କ ବାରଣ ସତ୍ତ୍ୱେ ବି ସମସ୍ତେ ହସୁଥିଲେ ।

ଶୌନକ ପଚାରିଲେ—“ହେ ସୂତ ! ଏପରି ସମୟରେ ଭଗବାନଙ୍କୁ କାହିଁକି ହସ ମାଡ଼ିଲା ? ସେ କାହିଁକି ନିଜ ହସକୁ ବନ୍ଦ କରିପାରିଲେ ନାହିଁ ? ସେ ତ ହସିଲେ, ପୁନଶ୍ଚ ଅନ୍ୟମାନଙ୍କୁ ସେ କାହିଁକି ହସିବା ପାଇଁ ଇଙ୍ଗିତ ଦେଲେ ? ଦୁର୍ଯ୍ୟୋଧନଙ୍କୁ ଲଜ୍ଜିତ ଓ କୁପିତ କରାଇବା ତାଙ୍କର କ'ଣ ଉଦ୍ଦେଶ୍ୟ ଥିଲା ?”

ସୂତ କହିଲେ—"ମହାରାଜ ! ତାହା ହିଁ ତ ଭଗବାନ ବାସୁଦେବଙ୍କର ଅଭୀଷ୍ଟ ଥିଲା । ସେ ପୃଥିବୀର ପାପ ଭାର ହାଲୁକା କରିବାକୁ ଚାହୁଁଥିଲେ, ତେଣୁ ତ ସେ ଅବତୀର୍ଣ୍ଣ ହୋଇଥିଲେ । ଦୁର୍ଯ୍ୟୋଧନ ତାଙ୍କର ଇଚ୍ଛାରୁ ହିଁ ଭ୍ରମରେ ପଡ଼ିଗଲେ । ଯେ ପର୍ଯ୍ୟନ୍ତ ସେ କୁପିତ ହୋଇ ଯୁଦ୍ଧ କରିବାକୁ ଉଦ୍ୟତ ନ ହୋଇଛନ୍ତି, ସେ ପର୍ଯ୍ୟନ୍ତ ଅସୁର ରୂପରେ ଉତ୍ପନ୍ନ ହୋଇଥିବା ରାଜାମାନଙ୍କର ନାଶ କପରି ହୋଇପାରନ୍ତା ? ଭଗବାନ ତ ତାଙ୍କୁ କୁପିତ କରାଇ ଯୁଦ୍ଧ କରିବାକୁ ଚାହୁଁଥିଲେ । ଯେ ପର୍ଯ୍ୟନ୍ତ ଦୁର୍ଯ୍ୟୋଧନ ନିଜର ଘୋର ଅପମାନ ଅନୁଭବ ନ କରିଛି, ସେ ପର୍ଯ୍ୟନ୍ତ ସେ ସର୍ବନାଶୀ ଯୁଦ୍ଧ କରିବାକୁ କେବେହେଲେ ପ୍ରଯତ୍ନ କରିବ ନାହିଁ । ଭଗବାନ ଯାହାକୁ କୁପିତ କରାଇ ଯୁଦ୍ଧ କରାଇବାକୁ ଚାହାନ୍ତି, ତାହା ପାଇଁ ସେହି ବ୍ୟବସ୍ଥା କରନ୍ତି । ତା ନ ହେଉଥିଲେ ତାହାର ଏତେ ସାମର୍ଥ୍ୟ ଥାଆନ୍ତା ଯେ, ସେ ଲଢ଼ିବା ପାଇଁ ସାହସ କରନ୍ତା ? କ୍ରୋଧ ଜନ୍ମାଇବା ପରେ ତାହାର ଯୁଦ୍ଧ ନ କରିବାକୁ ଉପାୟ ମଧ୍ୟ ନାହିଁ ।"

ଶୌନକ ପଚାରିଲେ—"ହେ ସୂତ ! ତାହାପରେ କ'ଣ ହେଲା ଆମ୍ଭମାନଙ୍କୁ କହନ୍ତୁ ।"

ସୂତ କହିଲେ—"ହଁ ମହାଶୟ ! ଆଉ ହୁଅନ୍ତା ବା କ'ଣ ? ହୋଇବାର ପରିମାଣରୁ ଯାହା ହେବାର କଥା ତାହା ହେଲା । ଧର୍ମରାଜ ନିଜେ ଉଠି ତାଙ୍କପ୍ରତି ସହାନୁଭୂତି ପ୍ରଦର୍ଶନ କଲେ । ସେ ସଙ୍ଗେ ସଙ୍ଗେ ଯାଇ ନୂତନ ଶୁଭ୍ର ବସ୍ତ୍ର ମଗାଇ ଆଣିଲେ । ତାଙ୍କୁ କୌଣସି ପ୍ରକାର ବୋଧଶୋଧ କରାଇ ବସ୍ତ୍ର ପିନ୍ଧାଇଲେ । ନାନାପ୍ରକାର ମଧୁର ବଚନ କହି ତାଙ୍କୁ ସନ୍ତୁଷ୍ଟ କରାଇବାକୁ ଚେଷ୍ଟା କଲେ; କିନ୍ତୁ ତାଙ୍କର ତ କ୍ରୋଧରୂପୀ ଅଗ୍ନି କଣାମାନ ଲୋମକୂପମାନଙ୍କରୁ ବାହାରି ପଡ଼ୁଥିଲା । ସେ ସଙ୍ଗେ ସଙ୍ଗେ କହିଲେ—"ମହାରାଜ ! ମୁଁ ଏଠାରେ ରହିବା ଅନେକ ଦିନ ହୋଇଗଲା, ତେଣୁ ମୁଁ ହସ୍ତିନାପୁର ଯିବାପାଇଁ ଆପଣ ଏବେ ମୋତେ ଅନୁମତି ଦିଅନ୍ତୁ ।"

ଧର୍ମରାଜ ଆତି ସ୍ନେହରେ ମମତାଭରା କଣ୍ଠରେ କହିଲେ—"ନା, ଭାଇ ! ତୁମେ ଏବେ ଯଦି ଚାଲିଯିବ, ତାହାହେଲେ ଏଠାର କାମ କପରି ଚାଲିବ ? ଏବେ ତ ଏଠାରେ ଅନେକ ରାଜା ଅଛନ୍ତି । ତୁମଦ୍ୱାରା ତ ବହୁତ କାମ ହେବାର ଅଛି । ସବୁ ତ ତୁମେ କରୁଛ । ଆଉ ଅଳ୍ପ କେତେଦିନ ଏଠାରେ ରହିଯାଅ ।" ଧର୍ମରାଜ ଏହିପରି ଅନେକ ବୁଝାଇ କହିଲେ । କିନ୍ତୁ ତାଙ୍କ ମନରେ ଅତ୍ୟନ୍ତ ଲଜ୍ଜା ଓ ଗ୍ଲାନି ଭରି ଯାଇଥିବାରୁ ସେ ମୁଣ୍ଡ ତଳକୁ କରି କ୍ରୋଧାନଳରେ ଜଳୁଥିବା ଅବସ୍ଥାରେ ସଭାଭବନରୁ ସଙ୍ଗେ ସଙ୍ଗେ ଉଠି ସିଧା ହସ୍ତିନାପୁର ଅଭିମୁଖେ ଚାଲିଲେ । ତାଙ୍କର ସେବକ, ସୈନିକ ତାଙ୍କ ପଛେ ପଛେ ଜନକସପଛ ଧରି ଚାଲିଲେ ।

ସୂତ କହିଲେ—"ମୁନିଗଣ ! ଦୁର୍ଯ୍ୟୋଧନ ଯିବା ପରେ ସମସ୍ତ ସଜ୍ଜନ ପ୍ରମାଦ ଗଣିଲେ । ସମସ୍ତେ ଏକ ସ୍ୱରରେ କହିଲେ—"ଏହା ଠିକ୍ ହେଲା ନାହିଁ । ଧର୍ମରାଜଙ୍କ ହୃଦୟ ମଧ୍ୟ ଆନ୍ଦୋଳିତ ହେବାକୁ ଲାଗିଲା । ସେ ଚିନ୍ତାରେ ପଡ଼ିଲେ । କେବଳ ଭଗବାନ ଶ୍ରୀକୃଷ୍ଣ ହିଁ ଏଥିରେ ପ୍ରସନ୍ନ ଥିଲେ । ଏହିପରି ରାଜସୂୟ ଯଜ୍ଞ ଶେଷରେ ହିଁ ମହାଭାରତର ମୂଳରେ ବୀଜ ବପନ କରାଗଲା । ଦ୍ୟୂତ ସଭାରେ ତାହା ଅଙ୍କୁରିତ ହେଲା, ବନବାସରେ ପଲ୍ଲବିତ ଓ ପୁଷ୍ପିତ ହେଲା । ପରେ ସେଥିରେ ଯେଉଁ ବିଷାକ୍ତ ଫଳ ଫଳିଲା ତଦ୍ୱାରା କୁରୁକୁଳର ତଥା ପୃଥିବୀର ସମସ୍ତ ରାଜାଙ୍କର ବିନାଶ ହୋଇଗଲା । ତାହା ମହାଭାରତରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ପ୍ରସଙ୍ଗକ୍ରମେ ତନ୍ମଧ୍ୟରୁ କେତେକ କଥା ମୁଁ ପୂର୍ବରୁ କହିଛି ଓ ପରେ ସମୟ ଦେଖି ଆହୁରି କିଛି କହିବି । ଭଗବାନ ଶ୍ରୀକୃଷ୍ଣଙ୍କ ଏହିପରି ଭାବରେ କୃପା ହେବାରୁ ଧର୍ମରାଜ ଯୁଧିଷ୍ଠିରଙ୍କର ଯଜ୍ଞ ବିଧିବିଧାନରେ ଅତ୍ୟନ୍ତ ଆଡ଼ମ୍ବର ସହକାରେ ଉଦ୍‌ଯାପିତ ହେଲା । ରାଜସୂୟ ଯଜ୍ଞ ଯୋଗୁଁ ଭଗବାନ ଅନେକ ଦିନ ପର୍ଯ୍ୟନ୍ତ ଇନ୍ଦ୍ରପ୍ରସ୍ଥରେ ରହିଗଲେ । ଏଣେ ଦ୍ୱାରକାପୁରୀକୁ ଶ୍ରୀକୃଷ୍ଣ-ରହିତ ଦେଖି ତଥା ନିଜର ମିତ୍ର ଶିଶୁପାଳର ବଧ ବିଷୟ ଶୁଣି ଭଗବାନଙ୍କର ଦ୍ରୋହୀ ଆସୁରୀ ପ୍ରକୃତିର ରାଜା ଶାଲ୍ୱ ଭଗବାନଙ୍କ ପୁରୀ ଉପରେ ଆକ୍ରମଣ କରିଦେଲା । ସେ ଯାଦବମାନଙ୍କ ସହିତ ଭୟଙ୍କର ଯୁଦ୍ଧ କଲା ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏ ଶାଲ୍ୱ ପୁଣି କିଏ ? ଯାଦବମାନଙ୍କ ସହିତ ସେ ଦ୍ୱେଷ କାହିଁକି କରୁଥିଲା ? ଆପଣ କୃପାକରି ଆମ୍ଭମାନଙ୍କୁ ଏହି ଶାଲ୍ୱ ବୃତ୍ତାନ୍ତ କହନ୍ତୁ । ଭଗବାନ ଏହାକୁ ବଧ କଲେ ନା ନାହିଁ, ତାହା ମଧ୍ୟ କୁହନ୍ତୁ ।"

ସୂତ କହିଲେ —"ମହାରାଜ ! ଏହାକୁ ବଧ କରିବା ପାଇଁ ତ ଭଗବାନଙ୍କୁ ସଙ୍ଗେ ସଙ୍ଗେ ଦ୍ୱାରକା ଯିବାକୁ ପଡ଼ିଲା । ଭଗବାନଙ୍କ ଅନୁପସ୍ଥିତିରେ ସେ ଯାଦବମାନଙ୍କ ଉପରେ ହଠାତ୍ ଆକ୍ରମଣ କରି ଦେଇଥିଲା । ସେଥିପାଇଁ ଯାଦବଗଣ ବ୍ୟଥିତ ହୋଇ-ପଡ଼ିଥିଲେ । ଏବେ ମୁଁ ଆପଣମାନଙ୍କୁ ପରବର୍ତ୍ତୀ ଅଧ୍ୟାୟରେ ଶାଲ୍ୱ ଓ ଯାଦବଙ୍କ ଯୁଦ୍ଧ କଥା କହିବି । ଆପଣମାନେ ତାହା ମନଯୋଗ ସହକାରେ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ଲଖି ପାଣ୍ଡବ ନୃପ ହିଁସେ ଧରମସୁତ ବହୁତ କବାରେ ।
କହୁ କୌତୁକୀ କୃଷ୍ଣ ସେଁନ ମହିଁ ସବହିଁ ଉଷରେ ॥

ଦୁରଯୋଧନ ଅତ ଦୁଃଖୀ ଭୟୋ ଖୀଜ୍ୟା ଖିସିୟାୟୋ ।
ସବହୁଁ ବ୍ୟଙ୍ଗ ତେଁ କହେଂ ଅନ୍ଧନେ ଅନ୍ଧୋ ଜାୟୋ ॥
ଭରୟୋ କ୍ରୋଧମେଂ ଚଲ ଦୟୋ, ହସ୍ଥିନାପୁର ମହିଁ ଆୟକେଂ ।
ଛଲେଂ ପାଣ୍ଡବନ ଦ୍ୟୂତ ମହଁ, ସୋଚେଂ ଯୁକ୍ତି ବନାଇକେଂ ॥



# ଶାଲ୍ୱର ଦ୍ୱାରକା ଆକ୍ରମଣ

ଅଥାନ୍ୟଦପି କୃଷ୍ଣସ୍ୟ ଶୃଣୁ କର୍ମାଦ୍ଭୁତଂ ନୃପ ।
କ୍ରୀଡ଼ାନରଶରୀରସ୍ୟ ଯଥା ସୌଭପତିର୍ହତଃ ॥ *

(ଶ୍ରୀ ଭାଃ ୧୦ମ ସ୍କଃ ୭୬ ଅ ୧ ଶ୍ଳୋକ)

## ଛପ୍ପୟ

ଇତ ଯଦୁବର ତେଁ ରହିତ ଦ୍ୱାରକା ଶାଲ୍ୱ ନିହାରୀ ।
ଚଢ଼ିକେଂ ସୌଭ ବିମାନ ଲଡ଼ାଇ କୀହ୍ନୀ ଭାରୀ ॥
କରତ ନଗର ବିଧ୍ୱଂସ ଲଡ଼େଁ ନହିଁ ହାରତ ଅଧମନ୍ତ ।
ଯାଦବ ବଂଶ ବିନାଶ ହେତୁ ତପ କୀହ୍ନୋ ଖଲ ଅନ୍ତ ॥
ଔଘରଦାନୀ ଶମ୍ଭୁନେ, ଇଚ୍ଛିତ ବର ତାକୂଁ ଦୟୋ ।
ବାୟୁଯାନ ବର ମୟ ରଚିତ, ପାଇ ମଉ ଦୁରନ୍ତ ଭୟୋ ॥

---

* ଆନନ୍ଦମନେ ବ୍ୟାସ ସୁତ । ବୋଲନ୍ତି ଶୁଣ ପରୀକ୍ଷିତ ।
ଅଦ୍ଭୁତ କୃଷ୍ଣକର୍ମବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
କ୍ରୀଡ଼ା ମନୁଷ୍ୟ ଅବତାର । ଦେବ ମାନବେ ଅଗୋଚର ॥
ଯେମନ୍ତେ ପ୍ରଭୁ ଜଗନ୍ନାଥ । ଶାଲ୍ୱରାଜାଙ୍କୁ କଲେ ହତ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୮୧ ଅ)

ଭଗବାନ ଯେତେବେଳେ ଯେଉଁ ଲୀଳା ରଚନା କରିବାକୁ ଚାହାନ୍ତି, ସେତେବେଳେ ସେହିପରି ପ୍ରାଣୀଙ୍କର ବୁଦ୍ଧିକୁ ବଦଳାଇ ଦିଅନ୍ତି । ତାହା ନ ହୋଇଥିଲେ ତ୍ରିଭୁବନ ସୁନ୍ଦର, ଭୁବନ ମୋହନ, ଜଗଦ୍ଗୁରୁ ପତିଙ୍କ ସ୍ୱୟଂ ବୈରଭାବ କିଏ ଅବା କରି ପାରନ୍ତା ? କେହି କ'ଣ କେବେ ବୈରଭାବ ପୋଷଣ କରି ତାଙ୍କର କିଛି କ୍ଷତି କରି ପାରିବ ? କାହା ନୁହେଁ । ତାଙ୍କ ଆଶ୍ରିତଙ୍କର କେହି ହେଲେ ଅନିଷ୍ଟ କରି ନ ପାରନ୍ତି । କିନ୍ତୁ କ୍ରୀଡ଼ା କରିବା ପାଇଁ ସେ କାହାର କାହାର ମତିକୁ ବିପରୀତ କରି ଦିଅନ୍ତି, ଏହାଦ୍ୱାରା ସେ ଦ୍ୱେଷ ବଶତଃ ଭଗବାନଙ୍କ ସହିତ ଓ ଭକ୍ତଙ୍କ ସହିତ ବିରୁଦ୍ଧାଚରଣ କରେ । ବିରୋଧାଚରଣରୁ ହିଁ ସଂଘର୍ଷ ହୁଏ । ସେହି ସଂଘର୍ଷ ହିଁ ତାଙ୍କର କ୍ରୀଡ଼ା । ସେହି ସଂଘର୍ଷରେ ସେ ଅନ୍ୟ ପାତ୍ରଙ୍କ ସହିତ କ୍ରୀଡ଼ା କରନ୍ତି । ସେହି କ୍ରୀଡ଼ା ହିଁ ଭକ୍ତଙ୍କ ପାଇଁ ପରମ ଶ୍ରବଣୀୟ ଚରିତ୍ର । ଖେଳ ହିଁ ତ ଖେଳ, ତାହା ଶୃଙ୍ଗାରର ଖେଳ ହେଉ କିମ୍ବା ହାସ୍ୟ, କରୁଣ, ରୌଦ୍ର, ବୀର, ବୀଭତ୍ସ, ଭୟାନକ ଅଥବା ଶାନ୍ତ ହୋଇଥାଉ, ସବୁ ତାଙ୍କ ପାଇଁ ସମାନ । ସେଥିରେ ଭଗବାନ ଓ ତାଙ୍କ ଭକ୍ତ ଲିପ୍ତ ହୁଅନ୍ତି ନାହିଁ ।

ସୂତ କହିଲେ—"ମୁନିଗଣ ! ଦୁର୍ଯ୍ୟୋଧନ ମୟ ନିର୍ମିତ ସଭାରେ ପଡ଼ିଯିବା ଯୋଗୁଁ ଅତ୍ୟନ୍ତ ଦୁଃଖୀ ହୋଇଥିଲେ । ଏଥିରେ ତାଙ୍କୁ ବଡ଼ ଅପମାନିତ ହେବାକୁ ପଡ଼ିଥିଲା । ପ୍ରଥମରୁ ତ ସେଠାରେ ଜଳ ରହିଥିଲା । ସେ ମଧ୍ୟ ପ୍ରଥମରୁ ଈର୍ଷାନ୍ୱିତ ହୋଇ କ୍ଷୁବ୍ଧ ହୋଇ ପଡ଼ିଥିଲେ । ଏବେ ପ୍ରଜ୍ୱଳିତ ଅଗ୍ନିରେ ଏହି ଘଟଣାରେ ଘୃତାହୁତିର କାର୍ଯ୍ୟ କଲେ । ସେ ଚାଲିଯିବାରୁ ଧର୍ମରାଜ ତ ଉଦାସ ହୋଇପଡ଼ିଲେ । ଶ୍ରୀକୃଷ୍ଣ ପ୍ରତିଦିନ ଦ୍ୱାରକା ଯିବାକୁ ପ୍ରସ୍ତୁତ ହେବାକୁ ଲାଗିଲେ । କିନ୍ତୁ କୌଣସି ନା କୌଣସି କାରଣ ଦର୍ଶାଇ ଧର୍ମରାଜ ତାଙ୍କୁ ପ୍ରେମପୂର୍ବକ ଅଟକାଇ ଥାଆନ୍ତି ।

ତନେ ଭଗବାନ ଶ୍ରୀକୃଷ୍ଣ ଧର୍ମରାଜଙ୍କୁ କହିଲେ—"ରାଜନ୍ ! ଆପଣ ସମସ୍ତଙ୍କୁ ବିଦାୟ ଦେଇ ମୋତେ ଆଦୌ ଛାଡ଼ିବାକୁ ଇଚ୍ଛା କରୁ ନାହାନ୍ତି; କିନ୍ତୁ ଆଜିକାଲି ମୁଁ ବଡ଼ ବଡ଼ ଅପଶକୁନ ଦେଖିବାକୁ ପାଉଛି । ସେହି କାରଣରୁ ମୋର ସନ୍ଦେହ ହେଉଛି ଯେ, ଦ୍ୱାରକା ପୁରରେ ନିଶ୍ଚିତ ଭାବରେ କୌଣସି ଅଘଟଣ ଘଟିଛି, ତେଣୁ ଆପଣ ମୋତେ ଆଜ ଯିବାପାଇଁ ଅନୁମତି ଦିଅନ୍ତୁ ।"

ଧର୍ମରାଜ ଅଶ୍ରୁଭରା ନୟନରେ କହିଲେ—"ବାସୁଦେବ ! ଏବେ ମୁଁ କଣ କହିବି । ମୁଁ କ'ଣ କେବେ ଚାହେଁ ଯେ ଆପଣ ମୋ ଆଗରୁ ଏକ ପଲକ ପାଇଁ ପୃଥକ ହୁଅନ୍ତୁ ? କିନ୍ତୁ ଏବେ ମୁଁ ଅଧିକ ଅଟକାଇ ରଖିବା ପାଇଁ ଆଗ୍ରହ କରି ପାରୁ ନାହିଁ । ଦ୍ୱାରକା ମଧ୍ୟ ଆପଣଙ୍କ ବିନା ଶୂନ୍ୟ ପଡ଼ିଛି ।"

ଭଗବାନ କହିଲେ—"ନା, କୌଣସି ବିଶେଷ କାର୍ଯ୍ୟ ଏଠାରେ ଥିଲେ ମୁଁ ଆଉ କିଛିଦିନ ରହି ଯାଇ ଥାଆନ୍ତି । ଏବେ ତ ଆପଣଙ୍କର ଯଜ୍ଞ ସକୁଶଳେ ସମାପ୍ତ

ହୋଇଅଛୁ । ଯଜ୍ଞକୁ ଆସିଥିବା ସମସ୍ତ ନୃପତି ପ୍ରାପ୍ୟ ଉପହାର ନେଇ ଯାଇ ସାରିଲେଣି । ମୁଁ ଦେଖୁଛି ଆପଣ ମୋତେ କଦାପି ଯିବାକୁ କହିବେ ନାହିଁ କାରଣ ମୋର ମଧ୍ୟ ଆପଣଙ୍କୁ ଛାଡ଼ି ଯିବାକୁ ଇଚ୍ଛା ହେଉ ନାହିଁ ।"

ଧର୍ମରାଜ କହିଲେ—"ପ୍ରଭୋ ! ଯଜ୍ଞର କର୍ତ୍ତା ଧର୍ତ୍ତା ଓ ପୂର୍ତ୍ତି କରାଇଥିବା ବ୍ୟକ୍ତି ହିଁ ତ ଆପଣ । ଆପଣଙ୍କ କୃପାରୁ ହିଁ ସବୁକିଛି ହେଲା, ତାହା ନ ହୋଇଥିଲେ ମୋର ଅବା ଏତେ ସାମର୍ଥ୍ୟ କାହିଁ ? ପୃଥିବୀର ଏତେ ବଡ଼ ବଡ଼ ସମସ୍ତ ରାଜା ଶ୍ରଦ୍ଧାରେ ଆସି ଏଠାରେ ଭେଟି ଦେବା ଓ ଦାସଙ୍କ ଭଳି ଯଜ୍ଞରେ କାର୍ଯ୍ୟ କରିବା ହିଁ ଆପଣଙ୍କ ଯୋଗେ ସମ୍ଭବ ହେଲା ।"

ଏହା ଶୁଣି ଭଗବାନ ଅତ୍ୟନ୍ତ ସ୍ନେହରେ ଧର୍ମରାଜଙ୍କୁ ଆଲିଙ୍ଗନ କଲେ ଓ ତାଙ୍କୁ ଧରି ଅନ୍ତଃପୁରରେ ଥିବା କୁନ୍ତୀଙ୍କ ନିକଟକୁ ନେଇଗଲେ ଏବଂ କହିଲେ—"ମାଉସୀ ! ଦେଖ, ତୁମ ପୁଅ ସମ୍ରାଟ ହୋଇଗଲା । ତାହାର ରାଜସୂୟ ଯଜ୍ଞ କରିବାର ପ୍ରବଳ ଇଚ୍ଛା ଥିଲା, ତାହା ତ ପୂର୍ତ୍ତି ହୋଇଗଲା । ଯଜ୍ଞର ସମସ୍ତ କାର୍ଯ୍ୟ ସମାପ୍ତ ହୋଇଗଲା । ଏବେ ମୋତେ ଯିବା ପାଇଁ ଅନୁମତି ଦିଅ ।" ଏହା ଶୁଣିବା ମାତ୍ରେ କୁନ୍ତୀ ଶ୍ରୀକୃଷ୍ଣଙ୍କର ଭବିଷ୍ୟ ଅନୁପସ୍ଥିତି ସ୍ମରଣ କରି କ୍ରନ୍ଦନ କରିବାକୁ ଲାଗିଲେ ! ସେହି ସମୟରେ ସୁଭଦ୍ରା ଓ ଦ୍ରୌପଦୀ ସେଠାରେ ଆସି ପହଞ୍ଚିଲେ । ଶ୍ରୀକୃଷ୍ଣଙ୍କ ଗମନ ବୃତ୍ତାନ୍ତ ଶୁଣି ସେମାନେ ମଧ୍ୟ ଉଦାସ ହୋଇ ପଡ଼ିଲେ । ସେମାନଙ୍କ ନେତ୍ରରୁ ଅଶ୍ରୁ ଝରିବାକୁ ଲାଗିଲା । ଭଗବାନ ବ୍ରାହ୍ମଣମାନଙ୍କ ଦ୍ୱାରା ସ୍ୱସ୍ତ୍ୟୟନ କରାଇ ରଥରେ ବସି ସମସ୍ତଙ୍କଠାରୁ ଅନୁମତି ନେଇ ଦ୍ୱାରକା ଅଭିମୁଖେ ଯାତ୍ରା କଲେ । ଧର୍ମରାଜ ପ୍ରେମରେ ବିହ୍ୱଳ ହୋଇ ଭାଇମାନଙ୍କ ସହିତ ତାଙ୍କ ପଛେ ପଛେ କିଛି ଦୂର ଗଲେ । ଧର୍ମରାଜଙ୍କୁ ପଛରେ ଆସୁଥିବାର ଦେଖି ଭଗବାନ ରଥ ଠିଆ କରାଇଲେ ଓ ନିଜେ ରଥରୁ ଓହ୍ଲାଇ ସମସ୍ତଙ୍କ ସମ୍ମୁଖକୁ ଆସିଲେ । ସମସ୍ତଙ୍କୁ ଭଲଭାବେ ବୁଝାଇ ସୁଝାଇ ପୁନଶ୍ଚ ରଥରେ ବସି ଦ୍ୱାରକା ପୁରୀକୁ ଚାଲିଗଲେ । ଭଗବାନଙ୍କ ବିନା ପାଣ୍ଡବଙ୍କୁ ଚତୁର୍ଦ୍ଦିଗ ଶୂନ୍ୟ ଦେଖାଗଲା ।

ଏଣେ ମୟ ଦାନବ ନିର୍ମିତ ସଭା ଗୃହରେ ଜଳରେ ସ୍ଥଳର ଭ୍ରମ ହୋଇ ଥିବା କାରଣରୁ ଦୁର୍ଯ୍ୟୋଧନ ଯେଉଁଭଳି ଅପମାନିତ ହୋଇଥିଲା, ତାହାର ପରିଣାମ ଏବେ ବଡ଼ ଭୟଙ୍କର ହେଲା । ସେ ପାଣ୍ଡବଙ୍କୁ ନୀଚ ପ୍ରମାଣିତ କରିବା ପାଇଁ ନିରନ୍ତର ଉପାୟ ଚିନ୍ତା କରୁଥିଲେ । ତାଙ୍କର ଶକୁନି ନାମରେ ଜଣେ ମାମୁଁ ଥିଲେ । ସେ ଅତ୍ୟନ୍ତ ଧୂର୍ତ୍ତ ଓ ଜୁଆଡ଼ୀ ଥିଲେ । ତାଙ୍କ ସହାୟତାରେ ମୁଁ ଯୁଧିଷ୍ଠିରଙ୍କୁ ପଶାଖେଳରେ (ଜୁଆ ଖେଳରେ) ଜିତିଯିବି । ସେ ଏହା ଚିନ୍ତା କରି ନିଜର ପିତା ଧୃତରାଷ୍ଟ୍ରଙ୍କଠାରୁ ଦ୍ୟୂତ ସଭା କରିବା ପାଇଁ ତାଙ୍କ ଦ୍ୱାରା ଅନୁମତି ଆଣାଇଲେ ।

ଏହି କଥାରେ ଦୁର୍ଯ୍ୟୋଧନ ଖୁବ୍ ପ୍ରସନ୍ନ ହେଲେ ଯେ, ଯେକୌଣସି ପ୍ରକାରେ ଅନ୍ଧ ଧୃତରାଷ୍ଟ୍ରଙ୍କଠାରୁ ମାମୁଁ ଅନୁମତି ନେଇ ଆସିଛନ୍ତି । ଯଦି ଚ ଅନ୍ଧ ଧୃତରାଷ୍ଟ୍ର ଜୁଆ ଖେଳର ଦୋଷ ଜାଣିଥିଲେ, ସେ ପୁତ୍ର ସ୍ନେହରେ ଅନିଚ୍ଛା ସତ୍ତ୍ୱେ ବି ଅନୁମତି ଦେଇ ଦେଲେ ।"

ଦ୍ୟୂତ ଖେଳିବା ପାଇଁ ଧର୍ମରାଜଙ୍କୁ ଆମନ୍ତ୍ରିତ କରାଗଲା । ସେ ସମୟରେ ଏହା ଏକ ସଦାଚାର ଥିଲା ଯେ ଜଣେ କ୍ଷତ୍ରିୟଙ୍କୁ ଅନ୍ୟଜଣେ କ୍ଷତ୍ରିୟ ଯୁଦ୍ଧ ପାଇଁ ବା ଦ୍ୟୂତକ୍ରୀଡ଼ା ପାଇଁ ଆମନ୍ତ୍ରିତ କଲେ ସେ ମନାକଲେ ନିଜେ ଅପମାନିତ ହେବ । ଦ୍ୟୂତ ଓ ଯୁଦ୍ଧର ଆହ୍ୱାନକୁ ଶ୍ରେଷ୍ଠ କ୍ଷତ୍ରିୟ ସ୍ୱୀକାର କରି ନେଉଥିଲେ । ଏଥିପାଇଁ ଧର୍ମରାଜ ଦ୍ୟୂତ-ନିମନ୍ତ୍ରଣକୁ ପାଇବା ମାତ୍ରେ ହସ୍ତିନାପୁର ଗଲେ । ଦ୍ୟୂତକ୍ରୀଡ଼ାରେ ଶକୁନି ବଡ଼ କପଟ ଆଚରଣ କଲେ । ଧର୍ମରାଜ ପଣ ରଖି ଦ୍ୟୂତ କ୍ରୀଡ଼ାରେ ସର୍ବସ୍ୱ ହାରିଗଲେ । ଏପରିକି ନିଜ ପତ୍ନୀ ଦ୍ରୌପଦୀଙ୍କୁ ମଧ୍ୟ ହରାଇବାକୁ ପଡ଼ିଲା । ପରେ ଧୃତରାଷ୍ଟ୍ର ଅଭୟ ଦେଇ ଦ୍ରୌପଦୀଙ୍କୁ ମୁକ୍ତ କରିଦେଲେ ଓ ପାଣ୍ଡବଙ୍କ ରାଜ୍ୟ ମଧ୍ୟ ଫେରାଇ ଦେଲେ । ପାଣ୍ଡବ ଇନ୍ଦ୍ରପ୍ରସ୍ଥକୁ ଫେରି ଯାଉଥିଲେ । ଏହି ସମୟରେ ଶକୁନିଙ୍କ କଥାରେ ପୁନଶ୍ଚ ଧର୍ମରାଜଙ୍କୁ ଫେରିବାକୁ ପଡ଼ିଲା ଓ ପୁନଶ୍ଚ ଦ୍ୟୂତକ୍ରୀଡ଼ାରେ ଏହା ପଣ ରଖାଗଲା ଯେ, "ଯିଏ ଏଥର ହାରିଯିବ, ସେ ବାରବର୍ଷ ବନବାସ ଏକବର୍ଷ ଅଜ୍ଞାତବାସ କରିବ । ଅଜ୍ଞାତବାସ ସମାପ୍ତି ପୂର୍ବରୁ ଯଦି ତାଙ୍କର ସନ୍ଧାନ ମିଳିଯାଏ, ତାହାହେଲେ ପୁନଶ୍ଚ ବାରବର୍ଷ ଅଜ୍ଞାତବାସ କରିବାକୁ ପଡ଼ିବ ।" ଦୁର୍ଯ୍ୟୋଧନାଦି କୌରବଗଣ ଚିନ୍ତା କଲେ—"ପାଣ୍ଡବମାନେ ଏପରି ବଳୀ ଓ ପ୍ରସିଦ୍ଧ ଯେ, ଯେମାନେ ଯେଉଁଠାରେ ଅଜ୍ଞାତବାସ କଲେ ମଧ୍ୟ ତାଙ୍କର ସନ୍ଧାନ ମିଳିଯିବ । ଏହିପରି ଭାବରେ ସେମାନେ ଯାବଜ୍ଜୀବନ ବନବାସ ହିଁ କରୁଥିବେ ।"

ଏହା ଚିନ୍ତାକରି ପଣ ରଖାଗଲା । ଧର୍ମରାଜ ମଧ୍ୟ ଏହା ସ୍ୱୀକାର କଲେ । ଶକୁନିଙ୍କ ଛଳ କପଟରେ ଏଥର ମଧ୍ୟ ଧର୍ମରାଜ ହାରିଗଲେ । ପାଣ୍ଡବମାନେ ବଳ୍କଳ ପରିଧାନ କରି କୁନ୍ତୀଙ୍କୁ ବିଦୁରଙ୍କ ନିକଟରେ ଛାଡ଼ି ଦ୍ରୌପଦୀଙ୍କ ସହିତ ବନକୁ ଚାଲିଗଲେ ଓ ବନରେ ବନବାସୀଙ୍କ ଭଳି ଜୀବନଯାପନ କରିବାକୁ ଲାଗିଲେ । କାଲି ଯେଉଁମାନେ ଯିଏ ସମ୍ରାଟ ଥିଲେ, ସେମାନଙ୍କୁ ଆଜି ବନବାସୀ ହେବାକୁ ପଡ଼ିଲା । କାଳର ଏପରି କୁଟିଳ ଗତି ସିନା ?

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଭଗବାନ୍ ଆସି ଏ ଜୁଆ ଖେଳକୁ କାହିଁକି ବନ୍ଦ ନ କଲେ ? ଧର୍ମରାଜଙ୍କର ଏପରି ସମୟରେ ସେ ତାଙ୍କୁ ସାହାଯ୍ୟ କାହିଁକି ନ କଲେ ?"

ସୂତ ହସି ହସି କହିଲେ—"ମହାରାଜ ! ଏସବୁ କାର୍ଯ୍ୟ କରାଇଲାବାଲା ହିଁ ଭଗବାନ୍ । ଭଗବାନଙ୍କ ଇଚ୍ଛାରେ ହିଁ ଏ ସବୁ ଘଟିଥିବ। । ଏପରି ଲୌକିକ ଦୃଷ୍ଟିରେ ଦେଖିଲେ ତେଣେ ଭଗବାନ୍ ଶାଲ୍ୱ ସହିତ ଯୁଦ୍ଧରେ ବ୍ୟସ୍ତ ଥିଲେ । ଯେ ପର୍ଯ୍ୟନ୍ତ ଶାଲ୍ୱ ମରି ନଥିଲା, ସେ ପର୍ଯ୍ୟନ୍ତ ପାଣ୍ଡବ ବନବାସ କରୁଥିଲେ ।"

ଶୌନକ ପଚାରିଲେ—"ହେ ସୂତ ! ଆପଣ ପ୍ରଥମେ ଆମ୍ଭମାନଙ୍କୁ ଶାଲ୍ୱବଧ ବିଷୟରେ କହନ୍ତୁ । ଶାଲ୍ୱ ଭଗବାନଙ୍କ ସହିତ କାହିଁକି ଦ୍ୱେଷ କରୁଥିଲା ? ଭଗବାନ ତାକୁ କାହିଁକି ମାରିଲେ ?

ସୂତ କହିଲେ—"ହଁ, ମହାରାଜ ! ଏବେ ମୁଁ ଆପଣମାନଙ୍କୁ ଶାଲ୍ୱ ବଧ କଥା କହିବି । ସେହି ଶାଲ୍ୱ ଅତ୍ୟନ୍ତ ବଳୀ ଥିଲା । ମାର୍ତ୍ତିକାବତ ନାମକ ନଗରରେ ସେ ରାଜତ୍ୱ କରୁଥିଲା । ଜରାସନ୍ଧ ଓ ଶିଶୁପାଳଙ୍କର ସେ ବଡ଼ ମିତ୍ର ଥିଲା । ଏମାନେ ସମସ୍ତେ ଆସୁରୀ ପ୍ରକୃତିର ଥିଲେ ଓ ଭଗବାନଙ୍କ ସହିତ ଦ୍ୱେଷ କରୁଥିଲେ । ଶିଶୁପାଳ ଯେତେବେଳେ କୁଣ୍ଡିନପୁରରେ ମହାରାଜ ଭୀଷ୍ମକଙ୍କର କନ୍ୟା ରୁକ୍ମିଣୀଙ୍କ ସହିତ ବିବାହ କରିବାକୁ ଯାଇଥିଲା, ସେତେବେଳେ ଜରାସନ୍ଧ, ଆଦି ମଧ୍ୟ ବରଯାତ୍ରୀ ସହିତ ଯାଇଥିଲେ । ଇଏ ମଧ୍ୟ ସବୁ ରାଜାଙ୍କ ପରି ଯୁଦ୍ଧରେ ହାରି ଯାଇଥିଲା । ଯାଦବମାନେ ତାକୁ ଯୁଦ୍ଧରେ ହରାଇ ଦେଇଥିବାରୁ ତା ମନରେ ଅତ୍ୟନ୍ତ କ୍ଲେଶ ହୋଇଥିଲା । ସେ ରାଜ୍ୟ ଛାଡି ଉତ୍ତରାଖଣ୍ଡରେ ଘୋର ତପସ୍ୟା କରିବାକୁ ଚାଲି ଯାଇଥିଲା । ଯିବା ସମୟରେ ସେ କୁଣ୍ଡିନପୁରରେ ସମସ୍ତ ରାଜାଙ୍କ ସମ୍ମୁଖରେ ପ୍ରତିଜ୍ଞା କରିଥିଲା ଯେ, "ମୁଁ ଦିନେ ସମସ୍ତ ପୃଥିବୀକୁ ଯାଦବଶୂନ୍ୟ କରିଦେବି । ଆପଣମାନେ ମୋର ପୁରୁଷାର୍ଥ ଦେଖିବେ ।" ଏପରି ପ୍ରତିଜ୍ଞା କରି ସେ ଉତ୍ତରାଖଣ୍ଡରେ ମହାଦେବଙ୍କୁ ପ୍ରସନ୍ନ କରିବା ପାଇଁ ଘୋର ତପ କରିବାକୁ ଲାଗିଲା ।

ତପସ୍ୟା କାଳରେ ସେ ଆହାର ତ୍ୟାଗ କରି ଦେଇଥିଲା । ଆଠ ପ୍ରହରରେ କେବଳ ଥରେ ଏକ ମୁଠା ଭସ୍ମ ପାଟିରେ ପକାଉଥିଲା, ନହେଲେ ମଧ୍ୟ କେବଳ ଭଗବାନ ଶିବଙ୍କର ଆରାଧନାରେ ମଗ୍ନ ଯାଉଥିଲା । ଏହିପରି ସେ ଏକବର୍ଷ ପର୍ଯ୍ୟନ୍ତ ଘୋର ତପସ୍ୟା କଲା । ଏକବର୍ଷ ପୂରିଯିବା ପରେ ଆଶୁତୋଷ ଭଗବାନ୍ ଭୋଲାନାଥ କହିଲେ—"ରାଜନ୍ ! ମୁଁ ତୁମଠାରେ ପ୍ରସନ୍ନ ହୋଇଛି । ତୁମେ ଆଉ ଏତେ କଷ୍ଟକରି ତପସ୍ୟା କରନା । ମୋତେ ତୁମର ଅଭୀଷ୍ଟ ବର ପ୍ରାର୍ଥନା କର ।"

ଶାଲ୍ୱ ଏହା ଶୁଣି ହାତଯୋଡ଼ି ବିନମ୍ର ସହିତ କହିଲା—"ପ୍ରଭୋ ! ଆପଣ ଶରଣାଗତବତ୍ସଳ, ଯଦି ମୋଠାରେ ଆପଣ ପ୍ରସନ୍ନ ହୋଇଛନ୍ତି, ତାହାହେଲେ ମୋତେ ଏପରି ଏକ ବାୟୁଯାନ ଦିଅନ୍ତୁ, ଯେଉଁଥିରେ ବସି ମୁଁ ଆକାଶରୁ ଅସ୍ତ୍ରଶସ୍ତ୍ର ବର୍ଷା

କରିପାରିବ । ସେହି ବିମାନଟି ଯେପରି ଇଚ୍ଛାନୁସାରେ ସବୁଠାକୁ ଯାଇପାରୁଥିବ ଓ ଦେବତା, ଅସୁର, ମନୁଷ୍ୟ, ଗନ୍ଧର୍ବ ସର୍ପ, ଏବଂ ରାକ୍ଷସମାନଙ୍କ ମୁଁ ଜୟ କରିପାରୁଥିବ । ଯାହା ଯେପରି ଯାଦବମାନଙ୍କର ଭୟର କାରଣ ହୋଇଥିବ ।"

ଶିବ ତ ଅସମ୍ଭବ ବରପ୍ରଦାନକାରୀ, ସେ କହିଲେ—"ଆଚ୍ଛା ଠିକ୍ ଅଛି, ତାହା ହିଁ ମୁଁ ପ୍ରଦାନ କଲି । ମୁଁ ମୟକୁ କହି ସମ୍ପ୍ରଧାରୁର ଏପରି ବିମାନ ନିର୍ମାଣ କରାଅ, ଯାହାକି ଶତ୍ରୁମାନଙ୍କ ଜୟ କରିବାରେ ସହାୟକ ହେବ, ଆକାଶରେ ଇଚ୍ଛା ଅନୁସାରେ ଉଡ଼ିପାରିବ ଓ ସେହି ଲୌହମୟ ବିମାନ ଏପରି ଅନ୍ଧକାରମୟ ହେବ ଯେ, ଉଡ଼ୁଥିବା ବେଳେ ତାକୁ କେହି ଦେଖିପାରିବେ ନାହିଁ ।"

ଏହା ଶୁଣି ଶାଲ୍ୱ ଅତ୍ୟନ୍ତ ପ୍ରସନ୍ନ ହେଲା । ଶିବ ମଧ୍ୟ ମୟ ଦାନବକୁ ଏହି ଆଜ୍ଞା ଦେଇ ଦେଲେ । ସେ ସଙ୍ଗେ ସଙ୍ଗେ ଏକ ସୁନ୍ଦର ଯୁଦ୍ଧୋପଯୋଗୀ ସାମଗ୍ରୀଯୁକ୍ତ ବିମାନ ନିର୍ମାଣ କରି ତାକୁ ଦେଇଦେଲା । ତାହାକୁ ନେଇ ଶାଲ୍ୱ ନିଜ ରାଜ୍ୟକୁ ଫେରି ଆସିଲା । ସେ ଆସିବା ମାତ୍ରେ ବହୁ ସୈନ୍ୟ ଏକତ୍ରିତ କରି ଯାଦବଙ୍କ ଉପରେ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇ ରହିଥାଏ । ଏତେ ସୈନ୍ୟ ଓ ସୌଭ ବିମାନ ଥାଇ ମଧ୍ୟ ଯେତେବେଳେ ଭଗବାନ ଦ୍ୱାରକାରେ ନିବାସ କରୁଥିଲେ, ସେତେବେଳେ ଯାଦବଙ୍କ ସହିତ ଯୁଦ୍ଧ କରିବାକୁ ସେ ସାହସ କରୁ ନଥିଲା ।

ଯେତେବେଳେ ଭଗବାନ୍ ଧର୍ମରାଜଙ୍କ ରାଜସୂୟ ଯଜ୍ଞକୁ ଆସି ଅନେକ ଦିନ ରହିଗଲେ, ସେତେବେଳେ ସେ ଦ୍ୱାରକାପୁରୀ ଆକ୍ରମଣ କରିବାର ସୁଯୋଗ ପାଇଗଲା । ସେହି ସମୟରେ ସେ ଶୁଣିଲା, ଶ୍ରୀକୃଷ୍ଣ ତାର ସଖା ଶିଶୁପାଳକୁ ମାରି ଦେଇଛନ୍ତି । ଏହା ଶୁଣିବାକ୍ଷଣି ତ ତାର କ୍ରୋଧର ସୀମା ରହିଲା ନାହିଁ । ସେ ତାହାର ବିରାଟ ଚତୁରଙ୍ଗ ସୈନ୍ୟ ସଜାଇ ହଠାତ୍ ଦ୍ୱାରକାପୁରୀ ଉପରେ ଆକ୍ରମଣ କରିଦେଲା । ସେ ଦ୍ୱାରକା-ପୁରୀକୁ ଚତୁର୍ଦ୍ଦିଗରୁ ଘେରାଉ କରିନେଲା । ଯାଦବମାନେ କଳ୍ପନା କରି ନଥିଲେ ଯେ, କେହି ତାଙ୍କ ଉପରେ ଆକ୍ରମଣ କରିବ । ସେମାନେ ତ ନିଶ୍ଚିନ୍ତ ହୋଇ ଆମୋଦ ପ୍ରମୋଦରେ ବ୍ୟସ୍ତ ଥିଲେ । ଶାଲ୍ୱର ସୈନ୍ୟମାନେ ହଠାତ୍ ଆକ୍ରମଣ କରି ଦ୍ୱାରକାପୁରୀକୁ ଧ୍ୱଂସ କରିବାରେ ଲାଗିଲେ । ଶାଲ୍ୱ ନିଜେ ତାହାର ସୌଭ ନାମକ ବିମାନରେ ବସି ଉପରୁ ଅସ୍ତ୍ରଶସ୍ତ୍ର ବର୍ଷା କରିବାକୁ ଲାଗିଲା । ନଗର ବଡଗ ଧୂଳିରେ ବ୍ୟାପ୍ତ ହୋଇଗଲା । ବଡ଼ ବଡ଼ ବୃକ୍ଷ, କୋଠାବାଡ଼ି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ଦ୍ୱାରକାବାସୀଙ୍କୁ ସେ ଅତ୍ୟନ୍ତ କଷ୍ଟ ଦେଲା ।

ଏତେବେଳକୁ ଯାଦବମାନଙ୍କର ଚୈତନ୍ୟ ଉଦୟ ହେଲା । ସେମାନେ ଆଉ ଆମୋଦ ପ୍ରମୋଦ କରିପାରିଲେ ନାହିଁ । ବୃଦ୍ଧଆଡ଼େ ସେମାନେ ଘୋଷଣା କରିଦେଲେ ଯେ,

କେହି କେବେଳେ ଦ୍ୟୂତ ବ୍ୟସନ କରିପାରିବେ ନାହିଁ କିମ୍ବା ମଦିରା ପାନ କରିପାରିବେ ନାହିଁ । ନାଟକ, ଅଭିନୟ ସବୁ ବନ୍ଦ କରିବାକୁ ପଡ଼ିବ । ଏହାପରେ ସୈନିକମାନଙ୍କୁ ଆଜ୍ଞା ଦେଲେ ଯେ ସେମାନେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଯାଆନ୍ତୁ । ପୂର୍ବରୁ ନଗରର ଚତୁର୍ଦ୍ଦିଗରେ ତ୍ରିଶୂଳାକାର ଲୌହକଣ୍ଟା ନିର୍ମିତ ପାଚେରି ଘେରିଯାଇଥିଲା । ତା ଉପର ଦେଇ ସହଜରେ ଶତ୍ରୁ ଆକ୍ରମଣ କରିବା ପାଇଁ ନଗର ମଧ୍ୟରେ ପ୍ରବେଶ କରି ନପାରୁ ସେପୁଲଗୁଡ଼ିକୁ ଖୋଳି ପକାଇଲେ ଓ ଜାହାଜର ଯୋଗସୂତ୍ରଗୁଡ଼ିକୁ ଉପାଡ଼ି ପକାଇଲେ । ସ୍ଥାନେ ସ୍ଥାନେ ସୈନ୍ୟମାନଙ୍କୁ ପ୍ରହରୀ ଦେବାପାଇଁ ମୁତୟନ କରିଗଲା । ଉପରୁ ଯେପରି କୌଣସି ଅସ୍ତ୍ରଶସ୍ତ୍ର ବର୍ଷା ନ ହେବ, ସେଥିପାଇଁ ଉପରୁ ଖସୁଥିବା ଅସ୍ତ୍ରଶସ୍ତ୍ରକୁ ଉଡ଼ାଇ ଦେବାପାଇଁ ଯନ୍ତ୍ରମାନ ଖଞ୍ଜାଗଲା । ସ୍ଥାନେ ସ୍ଥାନେ ଆକ୍ରମଣକୁ ଅଟକାଇବା ପାଇଁ ବିଧ୍ୱଂସକାରିଣୀ ଭୁଷଣ୍ଡି, ଶତଘ୍ନି ଓ ଅନ୍ୟ ଗୋଲାବାରୁଦ ନିର୍ମିତ ତୋପମାନ ଖଞ୍ଜାଗଲା । ବଡ଼ ବଡ଼ ସୁଡ଼ଙ୍ଗମାନ ବିଭିନ୍ନ ସ୍ଥାନରେ ସଙ୍ଗେ ସଙ୍ଗେ ଖୋଲା ହୋଇଗଲା । ମୁଖ୍ୟ ସ୍ଥାନମାନଙ୍କରେ ସୈନ୍ୟମାନଙ୍କ ପାଇଁ ଅନ୍ନ, ଜଳର ଏପରି ବ୍ୟବସ୍ଥା କରାଗଲା ଯେ, ଯେତେଦିନ ଯୁଦ୍ଧ ଚାଲିଲେ ବି ତାହା କଦାପି ସରିବ ନାହିଁ । ଯୁଦ୍ଧପାଇଁ ଆବଶ୍ୟକୀୟ ବସ୍ତୁ ଯଥା ଆଗ୍ନେୟାସ୍ତ୍ରକୁ ଠେଲି ନେବା ପାଇଁ ଗାଡ଼ି, ଆୟୁଧ, ତୋମର, ଅଂକୁଶ, ଶତଘ୍ନୀ, ଲାଙ୍ଗଳ, ଭୁଷୁଣ୍ଡି, ପାଷାଣଖଣ୍ଡ, ତ୍ରିଶୂଳ, ଫାରସା, ଢେଣ୍ଟା ଢାଲ, ଗଦା ଓ ଜ୍ୱଳନ୍ତ ଅଗ୍ନି ସଂଯୋଗଦାୟୀ ବସ୍ତୁ ବିପୁଳ ମାତ୍ରାରେ ଏକତ୍ରିତ କରାଗଲା । ସାରକଥା ହେଲା, ଶତ୍ରୁଙ୍କ ଆକ୍ରମଣକୁ ଅଟକାଇବା ପାଇଁ ଯେତେ ଯାହା ଅସ୍ତ୍ରଶସ୍ତ୍ର ଆବଶ୍ୟକ ସେତେ ମହାରାଜ ଉଗ୍ରସେନଙ୍କ ଆଜ୍ଞାରେ ଏକତ୍ରିତ କରାଗଲା ।

ଶାଲ୍ୱର ଆକ୍ରମଣରେ ନଗରବାସୀ ଭୟଭୀତ ହୋଇପଡ଼ିଲେ । କାରଣ ସ୍ଥଳଯୁଦ୍ଧ ହେବା ସମ୍ବନ୍ଧରେ ତାହାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଶାଲ୍ୱ ଉପରେ ଆକାଶ ମାର୍ଗରେ ରହି ବାଣ ବୃଷ୍ଟି କରିବାରେ ଲାଗିଥିଲା । ଯଦି ଗୋଟିଏ ସ୍ଥାନ ହୋଇ ଥାଆନ୍ତା, ତାହାହେଲେ ସେଠାରେ ପ୍ରତ୍ୟାକ୍ରମଣର ପ୍ରଶ୍ନ ଓ ଅସ୍ତ୍ରଶସ୍ତ୍ର ପ୍ରତିରୋଧର ପ୍ରଶ୍ନ ଉଠନ୍ତା । କିନ୍ତୁ ଶାଲ୍ୱର ସେହି ବାୟୁଯାନ ତ ମନ୍ତ୍ରବାନବଳିତ ଥିଲା, ତାହା କଦାପି ଏକ ପ୍ରକାର ଦେଖାଯାଉ ନ ଥିଲା । ତାହା ଅନେକ ରୂପରେ ଦୃଷ୍ଟିଗୋଚର ହେଉଥିଲା । ସମସ୍ତ ସମୟରେ ତାହା ଅଦୃଶ୍ୟ ବି ହୋଇଯାଉଥିଲା ଓ ପର ମୁହୂର୍ତ୍ତରେ ଅନ୍ୟତ୍ର ଦୃଷ୍ଟିଗୋଚର ହେଉଥିଲା । ପୁନଶ୍ଚ ସମସ୍ତ ସମୟରେ ତାହା ଭୂପୃଷ୍ଠକୁ ଅବତରଣ କରୁଥିଲା ଓ ସେଠାରୁ ନିରନ୍ତର ଅସ୍ତ୍ର ପ୍ରହାର କରୁଥିଲା । ସମସ୍ତ ସମୟରେ ତାହା ସମସ୍ତ ନଗରକୁ ଆଚ୍ଛାଦିତ କରି ଅସ୍ତ୍ରଶସ୍ତ୍ର ବୃଷ୍ଟି କରୁଥିଲା । ତାହା ମଧ୍ୟ ସମୁଦ୍ର ଉପରେ ଅବତରଣ କରୁଥିବାର ଲୋକେ ଦେଖୁଥିଲେ । ସମସ୍ତ ସମୟରେ ତାହା ପର୍ବତ ଶିଖରରେ ସ୍ଥିରହୋଇ ରହି ଯାଉଥିଲା । ଏହି କାରଣରୁ ସମସ୍ତେ ତାହାର ଏହି କାର୍ଯ୍ୟରେ ବିସ୍ମିତ ଓ ଭୟଭୀତ ହୋଇଯାଉଥିଲେ ।

ଭଗବାନ ଶ୍ରୀକୃଷ୍ଣଙ୍କର ଜ୍ୟେଷ୍ଠ ଓ ଶ୍ରେଷ୍ଠ ପୁତ୍ର ଶ୍ରୀ ପ୍ରଦ୍ୟୁମ୍ନ ଯେତେବେଳେ ଦେଖିଲେ ଯେ, ଶାଲ୍ୱର ବିମାନ ନଗରବାସୀଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି କରୁଛି, ସେତେବେଳେ ସେ ସମସ୍ତଙ୍କୁ ସାନ୍ତ୍ୱନା ଦେଇ ମେଘ ଗମ୍ଭୀର ବାଣୀରେ କହିଲେ— "ଆପଣମାନେ ଭୟ କରିବାର କୌଣସି କାରଣ ନାହିଁ । ମୁଁ ଏବେ ଯାଇ ଯୁଦ୍ଧରେ ଶତ୍ରୁ ପରାସ୍ତ କରୁଛି ।"

ପ୍ରଦ୍ୟୁମ୍ନଙ୍କର ଏପରି ବୀରତ୍ୱପୂର୍ଣ୍ଣ ବଚନ ଶୁଣି ସମସ୍ତେ ଧୈର୍ଯ୍ୟ ଧାରଣ କଲେ । ସମସ୍ତଙ୍କୁ ସାନ୍ତ୍ୱନା ଦେଇ ପ୍ରଦ୍ୟୁମ୍ନ, ସାତ୍ୟକି, ଚାରୁଦେଷ୍ଣ, ଶାମ୍ବ, ଅକ୍ରୂର ଓ ତାଙ୍କର ଭାଇ ହାର୍ଦ୍ଦିକ୍ୟ, ଭାନୁବିନ୍ଦ, ଗଦ, ଶୁକ, ସାରଣ ଓ ଅନ୍ୟାନ୍ୟ ବଡ଼ ବଡ଼ ଧନୁର୍ଦ୍ଧର ମହାରଥୀ ଯାଦବ ବୀରଙ୍କୁ ସଙ୍ଗରେ ନେଇ ଶାଲ୍ୱ ସହିତ ଯୁଦ୍ଧ କରିବାକୁ ବାହାରିଲେ । ତାଙ୍କ ସହିତ ଅସଂଖ୍ୟ ଚତୁରଙ୍ଗ ସେନା ମଧ୍ୟ ଗଲେ । ହାତୀ, ଘୋଡ଼ା, ରଥ ଓ ପଦାତି ସେନାଙ୍କ ଦ୍ୱାରା ସୁରକ୍ଷିତ ସମସ୍ତ ଶୂରବୀର ଉତ୍ସାହର ସହିତ ସମର କରିବା ପାଇଁ ଯାଉଥିଲେ । ସେମାନେ ସମସ୍ତେ ଅଙ୍ଗରକ୍ଷା ପାଇଁ ଦୃଢ଼ କବଚ ଧାରଣ କରିଥିଲେ । ଏମାନଙ୍କର ସେନାପତି ଥିଲେ ପ୍ରଦ୍ୟୁମ୍ନ । ସେନା ସହିତ ଶ୍ରୀକୃଷ୍ଣ ନନ୍ଦନ ପ୍ରଦ୍ୟୁମ୍ନଙ୍କୁ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ଯାଉଥିବାର ଦେଖି ଶାଲ୍ୱ ଗର୍ଜି ଉଠିଲା । ଉଭୟ ପକ୍ଷର ସୈନ୍ୟଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଚାଲିଲା । ଏବେ ପ୍ରଦ୍ୟୁମ୍ନ ଓ ଶାଲ୍ୱଙ୍କ ମଧ୍ୟରେ ଯେପରି ଯୁଦ୍ଧ ହେଲା, ତାହା ମୁଁ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନା କରିବି । ଆପଣମାନେ ମନଧ୍ୟାନ ଦେଇ ଶ୍ରବଣ କରନ୍ତୁ ।

## ଛପ୍ପୟ

ଇନ୍ଦ୍ରପ୍ରସ୍ଥୁ ପ୍ରଭୁ ଗୟେ ଦ୍ୱାରକା ପୈ ଚଢ଼ି ଆୟୋ ।
ଲୈ କେଂ ସୌଭ ବିମାନ ନଗର ମହଁ ଦ୍ୱନ୍ଦ ମଚୟୋ ॥
ଅସ୍ତ୍ର ଶସ୍ତ୍ର ବରଷାଇ ତୁରତ ନଭ ମହଁ ଛିପି ଜାବୈ ।
ଜଲ ମହଁ ଉତରେ ଫେରି ସତତ ଗୋଲା ବରଷାବୈ ॥
ହରିନନ୍ଦନ ପ୍ରଦ୍ୟୁମ୍ନ ତବ, ସଜି ସେନା ରିପୁ ଦଲନ ହିତ ।
ଚଲେ ସଙ୍ଗ ଯାଦବ ସୁଭଟ, ମଚ୍ୟୋ ସୌଭ ଲଖି ଚକିତ ଚିତ ॥



## ପ୍ରଦ୍ୟୁମ୍ନ ଓ ଶାଲ୍ୱଙ୍କ ଯୁଦ୍ଧ

**ତାଶ୍ଚ ସୌଭପତେର୍ମାୟା ଦିବ୍ୟାସ୍ତ୍ରୈ ରୁକ୍ମିଣୀସୁତଃ ।**
**କ୍ଷଣେନ ନାଶୟାମାସ ନୈଶଂ ତମ ଇବୋଷ୍ଣଗୁଃ ॥***

(ଶ୍ରୀ ଭା. ୧୦ ସ୍କ. ୭୬ ଅ: ୧୭ ଶ୍ଲୋକ)

### ଛପ୍ପୟ

ତରେ କହ୍ୟୋଂ ପ୍ରଦ୍ୟୁମ୍ନ ପ୍ରଥମ ରିପୁ ମାୟା ନାଶୀ ।
ଛୋଡେ ଅଗନିତ ବାନ କୃଷ୍ଣ ନନ୍ଦନ ସୁଖରାଶୀ ॥
କୀୟୋ ମୂର୍ଚ୍ଛିତ ଶାଲ୍ୱ ସଚିବ ତାକୋ ପୁନ ଆୟୋ ।
ଦେଖ୍ୟୋ ଆବତ ଶତ୍ରୁ ତବହିଁ ରଥ ତୁରତ ଘୁମାୟୋ ॥
ସହସା ଶ୍ରୀପ୍ରଦ୍ୟୁମ୍ନ ହିୟ, ଗଦା ମାରି ଗରଜ୍ୟୋ ସଚିବ ।
ବଜ୍ର ସରିସ ହିୟ ମହଁ ଲଗୀ, ଦୁଖିତ ସାରଥୀ ଭୟୋ ତବ ॥

ଯଦି ପରସ୍ପର ମଧ୍ୟରେ ଦୁଇବାର ଲଢ଼ାଲଢ଼ି ହୁଅନ୍ତି, ତାହାହେଲେ ଜଣକର ଜୟ ଓ ଅନ୍ୟ ଜଣକର ପରାଜୟ ଘଟେ । ଯିଏ ଯୁଦ୍ଧ କରିବାକୁ ଯାଏ, ସେ ନିଜକୁ ସର୍ବଶ୍ରେଷ୍ଠ ଶୂର ବୋଲି ମନେକରେ । ଯାହାର ନିଜ ଯୁଦ୍ଧରେ ସନ୍ଦେହ ଥାଏ, ସେ ଅନ୍ୟ ସହିତ କପରି ଅବା ଯୁଦ୍ଧ କରନ୍ତା ? ସମସ୍ତ ସମୟରେ ନିଜ ବଳ ଉପରେ ପୂର୍ଣ୍ଣ ବିଶ୍ୱାସ ରଖିଥିଲେ ବି ବଳୀ ପୁରୁଷ ସାଧାରଣ ଶୂରବୀରଙ୍କ ଦ୍ୱାରା ପରାଜିତ ହୋଇଥାଏ । ସେହି ପରାଜୟରେ ଭୟଭୀତ ହୋଇ ପୁନଃ ଲଢ଼ିବାକୁ ଯଦି ସେ

---

* ଶାଲ୍ୱର ମାୟାଗଢ ଯେତେ । ନାନା ପ୍ରପଞ୍ଚ ଅପ୍ରମିତେ ॥
ପ୍ରକାଶି ଥିଲା ଶୂନ୍ୟ ମଧ୍ୟେ । ଶାଲ୍ୱ-ଯାଦବ ଘୋରଯୁଦ୍ଧେ ॥
ରୁକ୍ମିଣୀସୁତ ଦେଖି ତାହା । ଶସ୍ତ୍ରେ ଛେଦିଲା ତାର ମାୟା ॥
ରଜନୀ ଅନ୍ତେ ରବିହାସ । ଯେସନ୍ତେ ଅନ୍ଧାର କରେ ନାଶ ॥

(ଭାଗବତ : ଜଗନ୍ନାଥ ଦାସ ୧୦ମ ସ୍କ. ୮୧ ଅ.)

ଇଚ୍ଛାକରେ, ତାହାହେଲେ ତାହା ତାହାର ଭୀରୁତା । କିନ୍ତୁ ଯିଏ ପରାଜୟକୁ ଯୁଦ୍ଧର ଏକ ସାମାନ୍ୟ ଅଙ୍ଗ ବୋଲି ବିଚାର କରି ତାହାକୁ ଉପେକ୍ଷା କରେ ଓ ବୀରତ୍ୱର ସହିତ ପୁନଃ ଶତ୍ରୁ ସହ ସମ୍ମୁଖ ସମର କରେ ସେହି ହିଁ ପ୍ରକୃତରେ ବୀର । ଏପରି ସାହସୀ ଓ ନିର୍ଭୀକ ବୀରଙ୍କର କଦାପି ପରାଜୟ ହୁଏନାହିଁ । ସେ ଯେ ପର୍ଯ୍ୟନ୍ତ ଜୀବିତ ରହେ, ସେ ପର୍ଯ୍ୟନ୍ତ ଯଶଲାଭ କରୁଥାଏ ଓ ଶତ୍ରୁ ସମ୍ମୁଖରେ ବୀରତ୍ୱର ସହିତ ଯୁଦ୍ଧ କରି ଶସ୍ତ୍ରଦ୍ୱାରା ପ୍ରାଣତ୍ୟାଗ କରେ, ତେବେ ସେ ମୃତ୍ୟୁପରେ ସ୍ୱର୍ଗକୁ ଯାଏ । ବୀରଙ୍କର କଦାପି ଅପଯଶ ହୁଏ ନାହିଁ କିମ୍ବା ସେମାନଙ୍କର ମୃତ୍ୟୁ ହୁଏ ନାହିଁ । ସେମାନେ ତ ସଦା ଅଜର ଅମର ହୋଇ ରହନ୍ତି ।

ସୂତ କହିଲେ—"ମୁନିଗଣ ! ଶାଲ୍ୱ ଯେତେବେଳେ ଦ୍ୱାରକାପୁରୀ ଉପରେ ଆକ୍ରମଣ କଲା, ସେତେବେଳେ ପ୍ରଦ୍ୟୁମ୍ନ ନିଜର ସେନା ସଜାଇ ତାହାର ପ୍ରତିଆକ୍ରମଣ କରିବାକୁ ଚାଲିଲେ । ସେ ଆସୁରୀ ମାୟା ବିସ୍ତାର କରିଥିଲା । ପ୍ରଦ୍ୟୁମ୍ନ ନିଜର ଦିବ୍ୟ ଅସ୍ତ୍ରଦ୍ୱାରା ତାହା ନାଶ କରିଦେଲେ । ସର୍ବପ୍ରଥମେ ସେ ଶାଲ୍ୱର ସେନାପତି ଉପରେ ପଚିଶଟି ବାଣ ପ୍ରହାର କଲେ । ସେ ବାଣ ସାମାନ୍ୟ ବାଣ ନଥିଲା । ତାହାର ମୂନ ତୀକ୍ଷ୍ଣ ଓ ତାହା ଉତ୍ତମ ଲୌହ ନିର୍ମିତ ଥିଲା । ତାହାର ପକ୍ଷ ସୁବର୍ଣ୍ଣର ଥିଲା । ତାହା ସହଜରେ ଭାଙ୍ଗିବାର ନ ଥିଲା, କାରଣ ତାହା ମଧ୍ୟରେ ଥିବା ଯୋଡ଼ ଦୃଶ୍ୟ ହେଉ ନ ଥିଲା, ସବୁ ସମାନ ଥିଲା । ସେନାପତିକୁ ବାଣଦ୍ୱାରା ବ୍ୟଥିତ କରି ସେ ସଙ୍ଗେ ସଙ୍ଗେ ଅତ୍ୟନ୍ତ ଲାଘବ କରି ଶହେ ବାଣ ସୌଭ ଉପରକୁ ମାରିଲେ । ତାଙ୍କ ସହିତ ଯେତେ ସୈନ୍ୟ ଥିଲେ, ସମସ୍ତଙ୍କ ଉପରକୁ ଏକ ଏକ ବାଣ ନିକ୍ଷେପ କଲେ । ସେନାମାନଙ୍କର ଅନ୍ୟ ଅଧିନାୟକମାନଙ୍କୁ ମଧ୍ୟ ଦଶ ଦଶ ବାଣ ପ୍ରହାର କଲେ ଏବଂ ତିନ ତିନ ବାଣରେ ଶତ୍ରୁପକ୍ଷୀୟ ହାତୀ, ଘୋଡ଼ା ଆଦି ବାହନଙ୍କୁ କ୍ଷତବିକ୍ଷତ କରିଦେଲେ ।

ଏବେ ସର୍ବତ୍ର ପ୍ରଦ୍ୟୁମ୍ନଙ୍କର ବୀରତ୍ୱର ପ୍ରଶଂସା କରାଯିବାକୁ ଲାଗିଲା । ଯାଦବ ବୀର ସିଂହନାଦ କରି ବାସୁଦେବ ନନ୍ଦନଙ୍କର ଜୟଗାନ କରିବାକୁ ଲାଗିଲେ । ଶତ୍ରୁ ପକ୍ଷର ବୀରମାନେ ମନକୁ ମନ କହିବାକୁ ଲାଗିଲେ—"ଏ ପ୍ରକୃତରେ ଜଣେ ଶୂରବୀର ।

ଶାଲ୍ୱର ବିମାନ ସେ ସ୍ଥାନରୁ ଉଡ଼ି ଅଦୃଶ୍ୟ ହୋଇଗଲା । ପ୍ରଦ୍ୟୁମ୍ନ ତାକୁ ଅନୁସନ୍ଧାନ କଲେ; କିନ୍ତୁ କେଉଁଠାରେ ଦେଖିବାକୁ ପାଇଲେ ନାହିଁ । ହଠାତ୍ ତାହା ତାଙ୍କୁ ଦୂରରେ ଦେଖାଗଲା । ସେ ସଙ୍ଗେ ସଙ୍ଗେ ନିଜର ସାଥୀ ଯାଦବ ବୀରଙ୍କୁ ନେଇ ସେ ଆଡ଼କୁ ଧାଇଁଲେ । ସେଠାକୁ ଯାଇ ସେ ତା ଉପରକୁ ଅସଂଖ୍ୟ ବାଣ ନିକ୍ଷେପ କଲେ । ସେ ସମସ୍ତ ବାଣ ସୂର୍ଯ୍ୟସମ ତେଜୋମୟ ଥିଲା, ଅଗ୍ନିସମ ପ୍ରଜ୍ୱଳିତ ହେଉଥିଲା, ସର୍ପସମ

ବକ୍ରମୁଖ ଥିଲା ଓ ଇନ୍ଦ୍ରଙ୍କ ବଜ୍ର ସମ ଅମୋଘ ଥିଲା । ସେ ସମସ୍ତ ବାଣ ମଧ୍ୟ ଗରୁଡ଼ ଭଳି ବେଗବିଶିଷ୍ଟ ଥିଲା ।

ପ୍ରଥମେ ପ୍ରଦ୍ୟୁମ୍ନଙ୍କ ସହିତ ଶାଲ୍ୱର ମହାମନ୍ତ୍ରୀ ଦ୍ୟୁମାନ୍ ଯୁଦ୍ଧ କରୁଥିଲା । ସେ ଥିଲା ଅତ୍ୟନ୍ତ ବଳୀ ଓ ସମର ତେଜସ୍ୱୀ । କିନ୍ତୁ ପ୍ରଦ୍ୟୁମ୍ନ ବାଣ ମାରି ତାକୁ ଅତ୍ୟନ୍ତ ବ୍ୟଥିତ କରିଦେଲେ । ଏଥିପାଇଁ ସେ ଯୁଦ୍ଧ ଛାଡ଼ି ପଳାୟନ କଲା । ପ୍ରଦ୍ୟୁମ୍ନ ତାକୁ ଛାଡ଼ି ଶାଲ୍ୱ ଉପରକୁ ବାଣ ନିକ୍ଷେପ କଲେ । ଯଦିଓ ଶାଲ୍ୱ ଆକାଶଗାମୀ ବିମାନରେ ବସିଥିଲା ଓ ପ୍ରଦ୍ୟୁମ୍ନ ତଳେ ରଥ ଉପରେ ବସିଥିଲେ, ତଥାପି ଭୂପୃଷ୍ଠରୁ ସେ ଏପରି ବାଣ ନିକ୍ଷେପ କଲେ, ଯାହାକି ଶାଲ୍ୱକୁ କ୍ଷତ ବିକ୍ଷତ ଓ ମୂର୍ଚ୍ଛିତ କରିଦେଲା ।

ଶାଲ୍ୱ ମୂର୍ଚ୍ଛିତ ହୋଇ ପଡ଼ିଥିଲା, ପରେ ଚେତା ଫେରିବାରୁ ସଙ୍ଗେ ସଙ୍ଗେ ପ୍ରଧାନମନ୍ତ୍ରୀ ଦ୍ୟୁମାନ୍ ସେଠାକୁ ଆସିଲା ଓ ପ୍ରଦ୍ୟୁମ୍ନଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ଯାଦବ ବୀର ଦୃଢ଼ ପ୍ରତିଜ୍ଞ ହୋଇ ରଣ କରିବା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ । ଯୁଦ୍ଧରୁ ହଟିବାର ପ୍ରଶ୍ନ ଉଠୁ ନଥିଲା । ସେମାନେ ଦୃଢ଼ ନିଶ୍ଚୟ କରି ନେଇଥିଲେ ଯେ, ଶତ୍ରୁକୁ ପରାସ୍ତ କରି ଯଶ ଲାଭ କରିବେ କିମ୍ବା ସମ୍ମୁଖ ଯୁଦ୍ଧରେ ପ୍ରାଣ ବଳି ଦେଇ ସ୍ୱର୍ଗଯାତ୍ରୀ ହେବେ । ଏଥିପାଇଁ କେହିହେଲେ ପଛଘୁଞ୍ଚା ଦେଉ ନ ଥିଲେ । ହଠାତ୍ ଦ୍ୟୁମାନ ଆସି ବଜ୍ର ଲୌହ ନିର୍ମିତ ଏକ ଅତି ଓଜନ ବିଶିଷ୍ଟ ଭୟଙ୍କର ଗଦାକୁ ଧରି ପ୍ରଦ୍ୟୁମ୍ନଙ୍କ ଛାତିରେ ଆଘାତ କଲା ଓ ସିଂହ ଭଳି ଗର୍ଜନ କଲା । ଗଦାଘାତରେ ପ୍ରଦ୍ୟୁମ୍ନଙ୍କ ଛାତି ବିଦୀର୍ଣ୍ଣ ହୋଇଗଲା । ସେ ସଂଜ୍ଞାହୀନ ହୋଇ ରଥରେ ଢଳି ପଡ଼ିଲେ । ସେ ଢଳି ପଡ଼ିବାରୁ ତାଙ୍କର ବୁଦ୍ଧିମାନ୍ ସାରଥୀ ସଙ୍ଗେ ସଙ୍ଗେ ରଥକୁ ଅତି କୌଶଳରେ ସେଠାରୁ ହଟାଇ ନେଲେ । ସେ ଶତ୍ରୁସେନାଙ୍କୁ ଭେଦ କରି ବାହାରକୁ ରଥ ନେଇ ଚାଲି ଆସିଲେ । ପ୍ରଦ୍ୟୁମ୍ନଙ୍କୁ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରୁଥିବାର ଦେଖି ଶତ୍ରୁସୈନ୍ୟମାନେ ଅତି ଆନନ୍ଦିତ ହେଲେ । ଯାଦବ ବୀରଗଣ ଶୋକରେ ଅଧୀର ହୋଇପଡ଼ିଲେ ।

ରଣାଙ୍ଗନରୁ କିଛି ଦୂର ଚାଲିଯିବା ପରେ ପ୍ରଦ୍ୟୁମ୍ନଙ୍କ ଦେହରେ ଶୀତଳ ବାୟୁ ବାଜିବାରୁ ତାଙ୍କର ମୂର୍ଚ୍ଛା ଭଙ୍ଗ ହେଲା । ସେ ନିଜକୁ ସମର ଭୂମିର ବାହାରେ ଥିବାର ଦେଖିଲେ । ସେ ତ ପ୍ରଥମେ ଜାଣିପାରି ନ ଥିଲେ ଯେ ସେ କିପରି ଏଠାକୁ ଆସିଲେ, କିଛିକ୍ଷଣ ଏଣେ ତେଣେ ଦୃଷ୍ଟି ପକାଇବା ପରେ ସମସ୍ତ ରହସ୍ୟ ବୁଝି ପାରିଲେ । ସେ ନିଜର ସାରଥୀକୁ ଆକଟ କରି କହିଲେ—"ସୂତ ! ତୁ ଏହା କାହିଁକି କଲୁ ? ମୋତେ ତୁ ରଣାଙ୍ଗନରୁ ବାହାରକୁ କାହିଁକି ନେଇ ଆସିଲୁ ?"

ସାରଥୀ ବିନୀତ ସ୍ୱରରେ ହାତଯୋଡ଼ି କହିଲା—"ପ୍ରଭୋ ! ଆପଣ ମୂର୍ଚ୍ଛିତ ହୋଇ ଯାଇଥିଲେ ।"

ପ୍ରଦ୍ୟୁମ୍ନ ତାଙ୍କୁ ଧମକାଇ କରି କହିଲେ—"ମୂର୍ଚ୍ଛିତ ହେଲି ତ କ'ଣ ହେଲା, ରଣରେ ତ ମୂର୍ଚ୍ଛିତ ହେବାକୁ ପଡ଼େ । ପ୍ରହାର ହେଲେ ଯେ କେହି ତ ମୂର୍ଚ୍ଛିତ ହେବା ସ୍ୱାଭାବିକ । ଶରୀରର ପୁରୁଷ ମୂର୍ଚ୍ଛିତ ହେବାରେ ଅଯଶ ହୁଅନ୍ତି ନାହିଁ । ଯେଉଁମାନେ ଭୟଭୀତ ହୋଇ ରଣକ୍ଷେତ୍ର ଛାଡ଼ି ଚାଲି ଆସନ୍ତି ସେମାନେ କାପୁରୁଷ । ଯଦି ଚ ମୁଁ ଯୁଦ୍ଧରୁ କାପୁରୁଷଙ୍କ ପରି ପଳାଇ ଆସି ନାହିଁ, ତଥାପି କାପୁରୁଷ ସ୍ୱଭାବର ସାରଥୀ ଯୋଗୁଁ ଆଜି ମୋତେ ସମସ୍ତେ କାପୁରୁଷ ବୋଲି ଭାବିଲେ । ରଣରୁ ପଛଘୁଞ୍ଚା ଦେବା ଆମ କ୍ଷତ୍ରିୟଙ୍କ ପକ୍ଷେ ଅତ୍ୟନ୍ତ କଳଙ୍କର ବିଷୟ । ଏ ଅପମାନ ତ ମୃତ୍ୟୁ ଠାରୁ ବଳି ଅପମାନ । ମୁଁ ତ ଏବେ କାହାରିକୁ ନିଜ ମୁଖ ଦେଖାଇପାରିବି ନାହିଁ । ମୋର ପିତା ଆସି ଯଦି ମୋତେ ପଚାରନ୍ତି, ତାହାହେଲେ ମୁଁ ତାଙ୍କୁ କି ଉତ୍ତର ଦେବି ? ମୋର ବଡ଼ବାପା ବଳଦେବ ଯଦି ଅପମାନ ସ୍ୱରରେ କହିବେ ଯେ ତୁମେ କ୍ଷତ୍ରିୟ ଧର୍ମ ଉଲଙ୍ଘନ କଲ କାହିଁକି, ତାହାହେଲେ ମୁଁ ତାଙ୍କୁ ଅବା କ'ଣ କହିବି ? ମୋର ସମବୟସ୍କ ବନ୍ଧୁ ବାନ୍ଧବ ଏବେ ମୋର ଏହି ଅପମାନଜନକ ନିନ୍ଦିତ କୁକୃତ୍ୟର ପରସ୍ପର ମଧ୍ୟରେ ଚର୍ଚ୍ଚା କରୁଥିବେ । ତେଣୁ ଏହା ମୋତେ ମୃତ୍ୟୁସମ କ୍ଳେଶ ହେବ । ଯଦୁକୁଳର ଉତ୍ପନ୍ନ କୌଣସି ବୀର କେବେ ରଣକ୍ଷେତ୍ରରୁ ପଳାଇ ଆସିଥିବାର ଶୁଣାଯାଇ ନାହିଁ । ଯେତେବେଳେ ମୋର ଭାଉଜମାନେ ହସି ହସି ଥଟ୍ଟାରେ କହିବେ—"କି ହୋ, ଶୂରବୀର ଦେବର ! କେଉଁ କାରଣରୁ ବିପକ୍ଷ ବୀରଙ୍କ ନିକଟରୁ କାପୁରୁଷଙ୍କ ପରି ପଳାଇ ଆସିଲ ?" ସେତେବେଳେ ମୁଁ ସେମାନଙ୍କୁ କି ଉତ୍ତର ଦେବି ? ତୁ ମୋର ମିତ୍ର ରୂପରେ ଶତ୍ରୁ । ମୋତେ ଜଣାପଡ଼ୁଛି, ତୁ ହୁଏତ ଯୁଦ୍ଧ ବିଦ୍ୟାରେ ଅନଭିଜ୍ଞ କିମ୍ବା ଶତ୍ରୁମାନେ ତୋତେ ପ୍ରଲୋଭନ ଦେଖାଇ ନିଜ ପକ୍ଷ କରି ନେଇଛନ୍ତି ।"

ଏହା ଶୁଣି ସାରଥୀ ବିନମ୍ର ସ୍ୱରରେ କହିଲା—"ଆୟୁଷ୍ମାନ ! ଆପଣ ମୋତେ ବୃଥା ହିଁରେ ସନ୍ଦେହ କରନ୍ତୁ ନାହିଁ । ମୁଁ ଶତ୍ରୁଙ୍କ ସହିତ ମିଶି ନାହିଁ କିମ୍ବା ଯୁଦ୍ଧ ବିଷୟରେ ମୁଁ ଅନଭିଜ୍ଞ ନୁହେଁ । ମୁଁ ଆପଣଙ୍କ ପୂଜ୍ୟ ପିତାଙ୍କର ସାରଥୀ ଦାରୁକର ପୁତ୍ର । ମୁଁ ବଡ଼ ବଡ଼ ଯୁଦ୍ଧରେ ଆପଣଙ୍କ ସହିତ ରହିଆସିଛି । ମୋତେ ରଥୀ ଓ ସାରଥୀଙ୍କ କର୍ତ୍ତବ୍ୟ ଭଲଭାବରେ ଜଣା । ସାରଥୀଙ୍କର ଧର୍ମ ହେଉଛି, ଯେତେବେଳେ ରଥୀଙ୍କୁ ଖୁବ୍ ବଡ଼ ସଙ୍କଟ ମଧ୍ୟରେ ପଡ଼ିଥିବାର ସେ ଦେଖିବ, ସେତେବେଳେ କଳେ ବଳେ କୌଶଳେ ନିଜର ପ୍ରଭୁଙ୍କୁ ରକ୍ଷା କରିବାକୁ ଚେଷ୍ଟା କରିବ । ରଥୀଙ୍କର ସେହିପରି ଏହା କର୍ତ୍ତବ୍ୟ ଯେ, ନିଜ ସାରଥୀଙ୍କୁ ସମସ୍ତ ପ୍ରକାରରେ ସେ ରକ୍ଷା କରିବେ । ଏହି ଧର୍ମକୁ ଜାଣିଥିବାରୁ ହିଁ ମୁଁ ଏପରି ମୋର କର୍ତ୍ତବ୍ୟ ପାଳନ କରିଛି । ଯେତେବେଳେ ଆପଣ ଶତ୍ରୁର ଗଦା ପ୍ରହାରରେ ଅଚେତ ହୋଇଗଲେ, ସେତେବେଳେ ମୋ ପାଇଁ ଏହା ବ୍ୟତୀତ ଅନ୍ୟ କୌଣସି ଉପାୟ ନଥିଲା । ଏହା ଅତ୍ୟନ୍ତ ସୌଭାଗ୍ୟର ବିଷୟ ଯେ, ଆପଣ ପୁନଶ୍ଚ ଚେତା ଫେରି ପାଇଲେ । ଏବେ ଆପଣ ଯାହା ଆଜ୍ଞା ଦେବେ, ତାହା ମୁଁ ପାଳନ କରିବି ।"

ଏହା ଶୁଣି ପ୍ରଦ୍ୟୁମ୍ନ ସାନ୍ତ୍ୱନା ପାଇଲେ । ତାଙ୍କର କବଚ ବଜ୍ର ପ୍ରହାରରେ ଛିନ୍ନ ଭିନ୍ନ ହୋଇଯାଇଥିଲା । ତେଣୁ ସେ ଅନ୍ୟ ଏକ କବଚ ଧାରଣ କଲେ । ମୁହଁ ହାତ ଧୋଇ ଆଚମନ କଲେ ଓ ପୁନଶ୍ଚ ସାରଥୀଙ୍କୁ କହିଲେ—"ତୁ ଏବେ ସଙ୍ଗେ ସଙ୍ଗେ ମୋତେ ଶାଲ୍ୱର ସଚୀବ ବୀରବର ଦ୍ୟୁମାନ ସମ୍ମୁଖକୁ ନେଇ ଚାଲ । ମୁଁ ତାହାର ଏହିର ଫଳ ଚଖାଇବି ।

ସାରଥୀ କହିଲା—"ମୁଁ ସଙ୍ଗେ ସଙ୍ଗେ ଆପଣଙ୍କୁ ନେଇ ଯଥା ସ୍ଥାନରେ ପହଞ୍ଚାଇ ଦେଉଛି ।"

ସୂତ କହିଲେ—"ମୁନିଗଣ ! ସାରଥୀ ସଙ୍ଗେ ସଙ୍ଗେ ପ୍ରଦ୍ୟୁମ୍ନଙ୍କୁ ନେଇ ପୁନଶ୍ଚ ଦ୍ୟୁମାନ୍ ସମ୍ମୁଖରେ ପହଞ୍ଚାଇଦେଲା । ସେତେବେଳେ ସେ ନିର୍ଭୟ ହୋଇ ଯାଦବଙ୍କ ସହିତ ଯୁଦ୍ଧ କରୁଥିଲା । ଏହାପରେ ସେ ଦୁଇଜଣଙ୍କ ମଧ୍ୟରେ ଯେପରି ଯୁଦ୍ଧ ହେଲା, ତାହା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।"

## ଛପ୍ପୟ

ଲେ ରଥ ରନ ତେଁ ଭଗେଯା ତେତ ହରସୁତ କୁଁ ଆୟୋ ।
ଯୁଦ୍ଧ ପଲାୟନ କରଖି ସାରଥୀ ଅତ ଧମକାୟୋ ॥
କରକେଂ ପୁନ ପଯୁମାନ କବଚ ବଦଲେଯା ରନ ଆୟେ ।
ଗରଜନ ଭୀଷନ କରୀ ଶତ୍ରୁ ସୈନକ ଘବରାୟେ ॥
ମନ୍ତ୍ରୀ ଶାଲ୍ୱ ଦ୍ୟୁମାନ୍ ବଧ, କରେଯା ଫେର ଆଗେ ବଢ଼େ ।
କରହିଁ ବାନ ବରସା ଅସୁର, ବାୟୁଯାନ ପେ ସବ ଚଢ଼େ ॥

# ଶାଲ୍ୱ ସହିତ ଯାଦବଙ୍କର ଭୟଙ୍କର ଯୁଦ୍ଧ

ଏବଂ ଯଦୁନାଂ ଶାଲ୍ୱାନାଂ ନିଘ୍ନତାମିତରେତରମ୍ ।
ଯୁଦ୍ଧଂ ତ୍ରିଣବରାତ୍ରଂ ତଦଭୂତ୍ତୁମୁଲମୁଲ୍ବଣମ୍ ॥ *

(ଶ୍ରୀ ଭା. ୧୦ ସ୍କ. ୭୭ ଅ. + ଶ୍ଳୋକ)

## ଛପ୍ପୟ

ସତାଇସ ଦିନ ଭୟୋ ଯୁଦ୍ଧ ନାହିଁ ଯାଦବ ହାରେ ।
ହୟ, ଗଜ, ପୈଦଲ ରଥୀ ସୌଭପତି କେ ବହୁ ମାରେ ॥
ଭଗେ ନ ଖଲ ଛଲ କରେ ଶସ୍ତ୍ର ନଭ ତେଂ ବରସାବେ ।
ବନ, ଉପବନ, ଆସମ, ସବ ଘର ତୋର ଗିରାବେ ॥
ପୁରୀ ସକଲ ଉଜର କରୀ, ପୁରବାସିନ ଅତି ଦୁଃଖ ଦୟୋ ।
ଇନ୍ଦ୍ରପ୍ରସ୍ଥ ତେଂ ଆଇ ଇତ, ଶ୍ୟାମ ପରମ ବିସ୍ମୟ କୟୋ ॥

ଯିଏ ଯେତେ ବଳହୀନ ହୋଇଥାଉ ପଛେ, ଯଦି ତାହାର ମୃତ୍ୟୁ ନାହିଁ, ତାହାହେଲେ ଅତି ବଳବାନ୍ ମଧ୍ୟ ତାକୁ ମାରିପାରିବ ନାହିଁ । ଏହାର ବିପରୀତରେ ଯଦି କୌଣସି ବଳବାନ୍‌ର ମୃତ୍ୟୁ ଜଣେ ସାଧାରଣ ମନୁଷ୍ୟ ହାତରେ ଥାଏ, ତେବେ ସେ ତାକୁ ମାରିପାରେ । ଅସୁରଙ୍କ ବଳଦାତା ହେଉଛନ୍ତି ସ୍ୱୟଂ ବାସୁଦେବ ଓ ସେ ସ୍ୱୟଂ ସୁରଙ୍କୁ ମଧ୍ୟ ବଳହୀନ କରିପାରନ୍ତି । ଯେତେବେଳେ ଯେପରି ପରିସ୍ଥିତି ହୁଏ, ସେ ସେତେବେଳେ ଲୋକଙ୍କୁ ବଳବାନ ଅଥବା ବଳହୀନ କରି ଦିଅନ୍ତି ।

ସୂତ କହିଲେ—"ମୁନିଗଣ ! ପ୍ରଦ୍ୟୁମ୍ନ ନିଜର ସାରଥୀକୁ ଯୁଦ୍ଧରୁ ଘେନି ଆସିଥିବାରୁ ବହୁତ ଗାଳି ଦେଇଥିଲେ । ସେ ପୁନଶ୍ଚ ସୁସ୍ଥ ହୋଇ ସାରଥୀକୁ ଯୁଦ୍ଧ ଭୂମିକୁ ତାଙ୍କୁ ନେବା ପାଇଁ ଆଦେଶ ଦେଲେ । ତାଙ୍କ ଆଦେଶରେ ସାରଥୀ ପୁନଶ୍ଚ ଯୁଦ୍ଧ

---

* ଏମନ୍ତେ ଶାଲ୍ୱ ଯଦୁଙ୍କରେ । ରଣ ବଳିଲା ଏକ ଆରେ ॥
ଯୁଦ୍ଧ କରନ୍ତେ କୃଷ୍ଣ ବଳ । ତ୍ରିନବରାତ୍ର ହେଲେ ଗଲା ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ମ ସ୍କ , ୮୨ ଅ)

କ୍ଷେତ୍ରକୁ ତାଙ୍କୁ ନେଲା । ସେ ଏତେ ବେଗରେ ରଥ ପରିଚାଳନା କରି ନେଲା ଯେ, ଯିଏ ଦେଖିଲା ସେ ସାରଥୀର ଅଶ୍ୱ ପରିଚାଳନା କଳା ଦେଖି ବିସ୍ମିତ ହେଲା । ଯୁଦ୍ଧ କ୍ଷେତ୍ରରେ ମଧ୍ୟ ସେ ଅତି ଅଦ୍ଭୁତ ପ୍ରକାର ରଥ ଚଳାଇଲା । ସେ ରଥକୁ ସଙ୍ଗେ ସଙ୍ଗେ ନେଇ ଦ୍ୟୁମାନ ସମୀପରେ ପହଞ୍ଚିଗଲା । ତା ରଥ ସମୀପକୁ ଯାଇ ସେ ପ୍ରଦ୍ୟୁମ୍ନଙ୍କ ରଥକୁ ଠିଆ କରାଇଲା । ସେହି ସମୟରେ ଦ୍ୟୁମାନ ଯାଦବ ସେନାମାନଙ୍କୁ ନିର୍ଦ୍ଦୟ ଭାବରେ ସଂହାର କରୁଥିଲା । ନିଜର ସୈନ୍ୟମାନେ ମୃତ୍ୟୁ ବରଣ କରୁଥିବାର ଦେଖି ପ୍ରଦ୍ୟୁମ୍ନ ଭୀଷଣ ରାଗିଗଲେ । ସେ ହସି ହସି ଦ୍ୟୁମାନକୁ କହିଲେ—"ଆରେ ନୀଚ ! ତୁ ଏ ସାଧାରଣ ସୈନ୍ୟଙ୍କ ଉପରକୁ କାହିଁକି ବାଣ ମାରୁଛୁ ? ତୋର ଯଦି ସାମର୍ଥ୍ୟ ଅଛି, ତାହାହେଲେ ଆସି ମୋ ସହିତ ଯୁଦ୍ଧ କର ।"

ଏହା ଶୁଣିବାମାତ୍ରେ ଦ୍ୟୁମାନର କ୍ରୋଧ ବଢ଼ିଗଲା । ସେ ଅନ୍ୟ ଯାଦବଙ୍କ ସହିତ ଯୁଦ୍ଧ କରିବା ବନ୍ଦ କରିଦେଇ ପ୍ରଦ୍ୟୁମ୍ନଙ୍କ ସମ୍ମୁଖକୁ ଆସିଲା । ପ୍ରଦ୍ୟୁମ୍ନ ଶତ୍ରୁକୁ ସମ୍ମୁଖରେ ପାଇ ସଙ୍ଗେ ସଙ୍ଗେ ଧନୁରେ ବାଣ ଚଢ଼ାଇ ଦ୍ୟୁମାନ ଉପରକୁ ଅସ୍ତ୍ରବାଣ ନିକ୍ଷେପ କଲେ । ଅତି ଲାଘବ ସହକାରେ ଚାରି ଅଶ୍ୱଙ୍କ ଉପରକୁ ଚାରୋଟି ବାଣ ଛାଡ଼ିଲେ ଓ ଗୋଟିଏ ବାଣରେ ତା ସାରଥୀକୁ ମାରି ଦେଲେ । ପୁନଶ୍ଚ ଆଉ ଏକ ବାଣରେ ତାହାର ରଥର ବିଶାଳ ଧ୍ୱଜାକୁ କାଟି ପକାଇଲେ ଏବଂ ଅନ୍ୟ ବାଣରେ ତାହାର ଧନୁକୁ ଖଣ୍ଡ ଖଣ୍ଡ କରି ଦେଲେ । ଏହାପରେ ସେ ଏକ ଅର୍ଦ୍ଧଚନ୍ଦ୍ରାକାର ବାଣଦ୍ୱାରା ତାହାର ଗଣ୍ଡିରୁ ମୁଣ୍ଡକୁ ଅଲଗା କରିଦେଲେ । ଦ୍ୟୁମାନ୍ ମରି ଯିବାରୁ ଶତ୍ରୁ ସୈନ୍ୟମାନେ ହତାଶ ହୋଇ ପଡ଼ିଲେ । ଅନେକ ସୈନ୍ୟ ଭୟରେ ମରିଗଲେ । ଏହିପରି ଶତ୍ରୁ ସେନାଙ୍କ ମଧ୍ୟରେ ହାହାକାର ପଡ଼ିଗଲା ଓ ଯାଦବ ସୈନ୍ୟମାନଙ୍କ ମଧ୍ୟରେ ଆନନ୍ଦ ଖେଳିଗଲା ।

ଏଣେ ପ୍ରଦ୍ୟୁମ୍ନ ତ ଦ୍ୟୁମାନ ସହିତ ଯୁଦ୍ଧ କରୁଥିଲେ, ତେଣେ ଗଦ, ସାତ୍ୟକି ଓ ଶାମ୍ବ ଆଦି ଯାଦବ ବୀରଗଣ ଶାଲ୍ୱ ସେନାମାନଙ୍କୁ ସଂହାର କରୁଥିଲେ । ସେମାନେ ଶାଲ୍ୱର ସୌଭବିମାନ ଉପରେ ବାଣ ବର୍ଷା କରୁଥିଲେ । ସେମାନଙ୍କର ଅମୋଘ ବାଣରେ ଶାଲ୍ୱପକ୍ଷୀୟ ଅସୁର ସେନାଙ୍କର ଶିର କଟିଯାଇ ଇତସ୍ତତଃ ପଡ଼ୁଥିଲା । ଉଭୟ ପକ୍ଷର ସୈନ୍ୟଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ଚାଲିଥିଲା । ଦ୍ୟୁମାନକୁ ମାରିସାରି ପ୍ରଦ୍ୟୁମ୍ନ ମଧ୍ୟ ଶାଲ୍ୱ ସହିତ ଲଢ଼ିବାକୁ ଲାଗିଲେ । ସେ ଏପରି ଏକ ଅମୋଘ ବାଣ ଧନୁରେ ଚଢ଼ାଇଲେ, ଯାହାକି କେବେହେଲେ ବ୍ୟର୍ଥ ହେବାର ନୁହେଁ । ସେହି ସମୟରେ ତାଙ୍କୁ ଆକାଶବାଣୀ ହେଲା—"ହେ ବାସୁଦେବ ନନ୍ଦନ ! ତୁମେ ଏ ଅମୋଘ ବାଣକୁ ଚଳାଅ ନାହିଁ । ଏ ବାଣ ଯାହା ଉଦ୍ଦେଶ୍ୟରେ ଛଡ଼ାଯାଏ, ତାହା ତାକୁ ନମାରି ଫେରିଆସେ ନାହିଁ ! କିନ୍ତୁ ଏହାର ମୃତ୍ୟୁ ତୁମ ହାତରେ ନାହିଁ । ଏ ଦୁଷ୍ଟ ଭଗବାନ

ଶ୍ରୀକୃଷ୍ଣଙ୍କ ହାତରେ ହିଁ ମରିବ । ତେଣୁ ତୁମେ ଏପରି ସାହସ କର ନା । ଏହା ଶୁଣି ପ୍ରଦ୍ୟୁମ୍ନ ସେ ବାଣକୁ ଆଉ ଛାଡ଼ିଲେ ନାହିଁ । ଶାଲ୍ୱ ସଙ୍ଗେ ସଙ୍ଗେ ନିଜ ସୌଭ ବିମାନରେ ବସି ସମୁଦ୍ର ସେପାଖକୁ ଚାଲିଗଲା ।

ଏଣେ ଇନ୍ଦ୍ରପ୍ରସ୍ଥରୁ ବିଦାୟ ନେଇ ଆସି ବଳଦେବଙ୍କ ସହିତ ଭଗବାନ ଶ୍ରୀକୃଷ୍ଣ ଦ୍ୱାରକାପୁରୀରେ ପହଞ୍ଚିଗଲେ ସେ ଆସି ଯାହା ଦେଖିଲେ, ସେଥିରେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ପୁରୀର ସମସ୍ତ ଶୋଭା ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ବନ ଉପବନ ସବୁ ଛାରଖାର ହୋଇଯାଇଥିଲା । ଘର, ଗୋପୁର, ଦ୍ୱାର ଆଦି ଭାଙ୍ଗିରୁଜି ଯାଇଥିଲା । ସ୍ଥାନେ ସ୍ଥାନେ ମୃତ ସୈନ୍ୟଙ୍କ ଶବ ସଢ଼ିପଚି ପଡ଼ିଥିଲା । ବେତେକ ସୈନ୍ୟ ପ୍ରହରୀ ଦେଉଥିଲେ । ନଗରବାସୀ ଭୟଭୀତ ହୋଇ ରହିଥିବାର ସେ ଦେଖିବାକୁ ପାଇଲେ । ସେ କୃତବର୍ମାଙ୍କୁ ପଚାରିଲେ—"ଘଟଣା କ'ଣ ? ଇଏ ଆମ ଦ୍ୱାରକାପୁରୀ ନା ଆମେ ଭୁଲ୍‌ରେ ଅନ୍ୟ କୌଣସି ପୁରୀରେ ପହଞ୍ଚିଲେ ? ଏହା ଏତେ ଶ୍ରୀହୀନ କାହିଁକି ହୋଇ-ପଡ଼ିଛି ? କେଉଁ ଶତ୍ରୁ ଏ ପୁରୀ ଉପରେ ଆକ୍ରମଣ କରିଛି ?"

ସର୍ବଜ୍ଞ ଭଗବାନଙ୍କର ଏହି ପ୍ରଶ୍ନକୁ ଶୁଣି କୃତବର୍ମା ଆମୂଳଚୂଳ ଶାଲ୍ୱର ଆକ୍ରମଣ ବୃତ୍ତାନ୍ତ କହିସାରି ଶେଷରେ କହିଲେ ଯେ, ସେ ଏ ପର୍ଯ୍ୟନ୍ତ ଯାଇ ନାହିଁ, ଏଠାରେ ସେନାଛାଉଣି ପକାଇ ରହିଛି ।

ଏହା ଶୁଣି ଭଗବାନ ଶାଲ୍ୱ ଉପରେ ଭୀଷଣ ରାଗିଗଲେ । ସେ ଶାଲ୍ୱକୁ ମାରିବା ପାଇଁ ସେତେବେଳେ ନିଷ୍ପତ୍ତି କଲେ । ସେ ବଳରାମଙ୍କୁ କହିଲେ—"ଆର୍ଯ୍ୟ ! ଶାଲ୍ୱ ଏଠାକୁ ଆସି ଆମ୍ଭମାନଙ୍କୁ ବଡ଼ ଅପମାନିତ କଲାଣି । ଏବେ ମୁଁ ତାକୁ ଜୀବିତ ଛାଡ଼ିବି ନାହିଁ । ତାକୁ ମାରିବି ଓ ତାହାର ମୟନିର୍ମିତ ବିମାନକୁ ଭାଙ୍ଗି ଚୂରମାର୍ କରିଦେବି । ଆପଣ ଯାଇ ପ୍ରଥମେ ନଗର ରକ୍ଷା କରନ୍ତୁ । ଭୟଭୀତ ନଗରବାସୀଙ୍କୁ ଧୈର୍ଯ୍ୟ ଧରିବାକୁ କହନ୍ତୁ । ମୁଁ ଯେ ପର୍ଯ୍ୟନ୍ତ ଶାଲ୍ୱକୁ ନ ମାରିଛି, ସେ ପର୍ଯ୍ୟନ୍ତ ନଗରୀ ମଧ୍ୟକୁ ପ୍ରବେଶ କରିବି ନାହିଁ ।"

ବଳରାମ କହିଲେ—"ଠିକ୍ ଅଛି, ତୁମେ ଆଗ ଯାଇ ସେହି ଦୁଷ୍ଟ ଶାଲ୍ୱକୁ ମାର, ମୁଁ ଯାଇ ନଗରବାସୀଙ୍କୁ ରକ୍ଷା କରୁଛି ।" ଏହା କହି ବଳରାମ ନଗରକୁ ଚାଲିଗଲେ । ତାଙ୍କୁ ଦର୍ଶନ କରି ନଗରବାସୀଗଣ ସନ୍ତୋଷ ଲାଭ କଲେ ।"

ଏଣେ ଶ୍ୟାମସୁନ୍ଦର ନିଜର ସାରଥୀ ଦାରୁକକୁ କହିଲେ—"ଦାରୁକ ! ଦେଖ, ସମୁଦ୍ର ସେପାରିରେ ସେହି ଦୁଷ୍ଟ ଶାଲ୍ୱର ସୌଭ ବିମାନ ଦେଖାଯାଉଛି । ତୁମେ ମୋ

ରଥକୁ ତା ସମ୍ମୁଖକୁ ନେଇ ଚାଲ । ସେ ସୌଭରାଜ ବଡ଼ ମାୟାବୀ ଓ ଖଳ ପ୍ରକୃତିର । ରୁକ୍ମିଣୀ ବିବାହ ସମୟରେ ସେ ମଧ୍ୟ କୁଣ୍ଡିନପୁର ଯାଇଥିଲା ଓ ସବୁ ରାଜାଙ୍କ ଭଳି ସେ ମଧ୍ୟ ମୁହଁ ଲୁଚାଇ ସେଠାରୁ ପଳାଇ ଆସିଥିଲା । ସେହି ଦିନଠାରୁ ସେ ଆମ୍ଭ ସଙ୍ଗେ ଦ୍ୱେଷ କରୁଛି । ମୁଁ ତା ନିକଟରେ ଏହାର ମିତ୍ର ଜରାସନ୍ଧ ଓ ଶିଶୁପାଳଙ୍କୁ ବଧ କରିଛି । ତେଣୁ ସେ କ୍ରୋଧରେ ମୋର ପରୋକ୍ଷରେ ଦ୍ୱାରକାପୁରୀ ଉପରେ ଆକ୍ରମଣ କରିଛି । ସେ ତା ସୌଭବିମାନ ସକାଶେ ବର୍ତ୍ତମାନ ଗର୍ବିତ । ଆଜି ମୁଁ ତାହାର ଦର୍ପ ଚୂର୍ଣ୍ଣ କରିଦେବି । ତାହାର ବିମାନକୁ ଭାଙ୍ଗି ଚୂରମାର କରିଦେବି ଓ ତାକୁ ମଧ୍ୟ ପରଲୋକ ପଠାଇ ଦେବି ।

ଭଗବାନଙ୍କ ଆଜ୍ଞା ପାଇ ଦାରୁକ ସଙ୍ଗେ ସଙ୍ଗେ ବିଶାଳ ଗରୁଡ଼ଧ୍ୱଜାଯୁକ୍ତ ରଥକୁ ସୌଭପତିର ସେନାଶ୍ରେଣୀ ଆଡ଼କୁ ଚଳାଇଲେ । ଯାଦବ ବୀରମାନେ ଦୂରରୁ ଭଗବାନଙ୍କ ରଥର ଗରୁଡ଼ଧ୍ୱଜା ଦେଖି ଆନନ୍ଦରେ କୋଳାହଳ କରିବାକୁ ଲାଗିଲେ । ଶାଲ୍ୱର ସୈନ୍ୟମାନେ ମଧ୍ୟ ପୀତାମ୍ବରଧାରୀ ଶ୍ୟାମସୁନ୍ଦରଙ୍କୁ ଚାରିଟି ଶ୍ୱେତଅଶ୍ୱ ଟାଣୁଥିବା ବିଶାଳ ରଥରେ ବସି ତାଙ୍କ ଆଡ଼କୁ ଆସୁଥିବାର ଦେଖିଲେ । ରଥଶବ୍ଦ ଶୁଣି ସମସ୍ତେ ସାବଧାନ ହୋଇଗଲେ । ଶାଲ୍ୱ ମଧ୍ୟ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଗଲା । ଯଦିଚ ତାହାର ପ୍ରାୟ ସମସ୍ତ ସେନାନାୟକ ମରି ଯାଇଥିଲେ, ତଥାପି ତାହାର ଯୁଦ୍ଧ କରିବାର ସାହସ ତୁଟି ନଥିଲା । ଭଗବାନଙ୍କ ରଥକୁ ଦେଖି ସେ ଦ୍ୱାରକାକୁ ଲକ୍ଷ୍ୟକରି ଗୋଟିଏ ଭୟଙ୍କର ଜାଜ୍ୱଲ୍ୟମାନ ଶକ୍ତି ଛାଡ଼ିଲା । ଭଗବାନ ଦେଖିଲେ ଏହି ଶକ୍ତି ତ ଆକାଶ ମଣ୍ଡଳରେ ବିଦ୍ୟୁତ୍ ଭଳି ଝଲସି ଉଠୁଛି, ଯଦି ତାହା ତାହାର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସ୍ଥଳରେ ଆଘାତ କରେ, ତାହାହେଲେ ସାରଥୀର ଅନ୍ତ ରହିବ ନାହିଁ । ଏହା ଚିନ୍ତାକରି ଭଗବାନ ସଙ୍ଗେ ସଙ୍ଗେ ବାଣ ନିକ୍ଷେପ କରି ତାହାକୁ ସହସ୍ର ଖଣ୍ଡ କରିଦେଲେ । ତାହା ଦେଖି ଶାଲ୍ୱ ଭୀଷଣ ରାଗିଗଲା । ଭଗବାନ ତାହାର ଶକ୍ତି ବାଣକୁ ବ୍ୟର୍ଥ କଲାପରେ ଶାନ୍ତ ନ ହୋଇ ଷୋହଳ ବାଣରେ ଶାଲ୍ୱକୁ କ୍ଷତବିକ୍ଷତ କରିଦେଲେ । ଆକାଶରେ ବିମାନରେ ବସି ଯୁଦ୍ଧ କରୁଥିବା ଶାଲ୍ୱ ୧୬ ବାଣବିଦ୍ଧ ହୋଇ ଏପରି ପ୍ରତୀତ ହେଉଥିଲା ଯେ, ସତେ ଯେପରି ଷୋହଳ କିରଣଯୁକ୍ତ ସୂର୍ଯ୍ୟନାରାୟଣ ନିଜ ରଥରେ ବସିଛନ୍ତି । ଶାଲ୍ୱକୁ ଶରବିଦ୍ଧ କରିସାରି ଭଗବାନ ଗର୍ଜ୍ଜନକରି ଅନେକ ବାଣରେ ତାହାର ସୌଭ ବିମାନକୁ ଜଖମ କରିଦେଲେ । ଏହା ଦେଖି ଶତ୍ରୁପକ୍ଷର ସୈନ୍ୟମାନେ ଭୟଭୀତ ହେଲେ ।

ଶାଲ୍ୱ ମନେ ଭାବିପାରିଲା, ବର୍ତ୍ତମାନ ମୋର ମୃତ୍ୟୁକାଳ ନିକଟ ହୋଇ ଆସିଲା । ତେଣୁ ସେ ସମସ୍ତ ଶକ୍ତି ଖଟାଇ ଭଗବାନଙ୍କ ଉପରେ ବାଣବର୍ଷା କଲା । ଗୋଟିଏ ଶକ୍ତିଶାଳୀ ବାଣ ଭଗବାନଙ୍କ ବାମ ହସ୍ତରେ ଏପରି ବିଦ୍ଧ ହେଲା ଯେ ତାଙ୍କ

ହସ୍ତରୁ ଶାର୍ଙ୍ଗଧନୁ ଖସି ପଡ଼ିଲା । ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା, ପୂର୍ବରୁ ଏପରି ଘଟଣା କେବେ ଘଟି ନ ଥିଲା । ଆକାଶରେ ସ୍ଥିତ ଦେବଗଣ ଓ ରଣାଙ୍ଗନରେ ଥିବା ସମସ୍ତ ଯାଦବ ସୈନ୍ୟ ଏହା ଦେଖି ହାହାକାର କଲେ । ସେମାନେ ବୁଝି ପାରିଲେ ନାହିଁ ଯେ ଭଗବାନଙ୍କର ଏହା ଏକ ଲୀଳା । ସେମାନେ ବିସ୍ମିତ ହୋଇ ଶାଲ୍ୱ ଆଡ଼କୁ ଚାହିଁ ରହିଥାଆନ୍ତି ।

ସେତେବେଳେ ଶାଲ୍ୱ ଗର୍ବକରି କହିଲା—"କୃଷ୍ଣ ! ତୁ ବଡ଼ କପଟୀ । କୁଣ୍ଡିନ ପୁରରେ ଆମ୍ଭମାନଙ୍କ ଆଖି ଆଗରେ ତୁ ଆମର ବନ୍ଧୁ ଶିଶୁପାଳର ଭାବୀପତ୍ନୀ ରୁକ୍ମିଣୀକୁ ଛଳରେ ହରଣକରି ନେଇଥିଲୁ ।"

ଭଗବାନ୍ କହିଲେ—"ଆରେ ବାଳକ ! ମୁଁ ଛଳରେ ହରଣ କରି ନଥିଲି, ବଳରେ କରିଥିଲି । ତୁମେ ସବୁ ତ ସେଠାରେ ସଦଳବଳେ ସମୁପସ୍ଥିତ ଥିଲ । ତୁମ୍ଭେମାନେ ମୋତେ ଧରିନେଲ ନାହିଁ କାହିଁକି ?"

ଶାଲ୍ୱ କହିଲା—"ଚୋରକୁ କ'ଣ ସବୁବେଳେ କେହି ଧରିପାରେ ଥରେ ଦୁଇଥର ଯେତେବେଳେ ଚୋର ନିଜ କାର୍ଯ୍ୟରେ ସଫଳ ହୁଏ, ସେତେବେଳେ ତାହାର ଅଭିମାନ ହୋଇଯାଏ ଯେ ମୁଁ ବଡ଼ ବୁଦ୍ଧିମାନ । ମୋତେ କେହି ଧରି ପାରିବେ ନାହିଁ । ତୁ ସେହିପରି ଅଭିମାନ କରୁଛୁ ଯେ ତୁ ଅଜେୟ । ଏଥିପାଇଁ ତୁ ମୋର ସଖା ଶିଶୁପାଳକୁ ଏତେବଡ଼ ସଭାରେ ଛଳରେ ତାହାର ଅସାବଧାନତା ବଶତଃ ତାକୁ ବଧ କଲୁ । ମୁଁ ବର୍ତ୍ତମାନ ତୋର ସେହି ଅଭିମାନକୁ ଚୂର୍ଣ୍ଣକରି ଦେଉଛି । ଯଦି ତୁ ରଣକ୍ଷେତ୍ରରୁ ପଳାଇ ନଯାଇ ବୀର କ୍ଷତ୍ରିୟଙ୍କ ପରି ଆଗରେ ରହୁ, ତାହାହେଲେ ଆଜି ତୋତେ ତାହାର ଫଳ ମୁଁ ଭୋଗାଇ ଦେବି । ମୁଁ ଆଜି ମୋର ଅମୋଘ ଅସ୍ତ୍ରରେ ତୋତେ ସେହି ପୁରରେ ନେଇ ପହଞ୍ଚାଇ ଦେବି, ଯେଉଁଠାକୁ ଗଲେ କେହି ଏ ଶରୀରରେ ଆଉ ଫେରିଆସେ ନାହିଁ ।

ଏହା ଶୁଣି ଭଗବାନ୍ ହସି ହସି କହିଲେ—"ଦେଖ୍, ଯାହାର ମୃତ୍ୟୁକାଳ ନିକଟ ହୁଏ, ସେ ବାତୁଳକାରରେ ଏପରି ଅଯଥା କଥା ଗୁଡ଼ିଏ କହୁଥାଏ । ତୁ ସେହିପରି ପ୍ରଳାପ କରୁଛୁ । ଏଥିରୁ ଜଣାପଡ଼ୁଛି ଯେ, ବର୍ତ୍ତମାନ ତୋର ଶେଷ ସମୟ ଆସି ଉପସ୍ଥିତ ହୋଇଗଲାଣି । ଏଣୁ ବେଶୀ କଥା କହିବା ବୀରର କାର୍ଯ୍ୟ ନୁହେଁ । ଯଦି ତୋର ଶକ୍ତି ଅଛି, ତାହାହେଲେ ମୋ ସହିତ ସମ୍ମୁଖ ଯୁଦ୍ଧ କର । ଆଉ ଅଳ୍ପ ସମୟ ମଧ୍ୟରେ ଦେଖାଯିବ କିଏ ବଳୀ ଓ କିଏ ବଳବାନ ।"

ସୂତ କହିଲେ—"ମୁନିଗଣ ! ଶାଲ୍ୱ ଏହା ଶୁଣି ଭୀଷଣ ରାଗିଗଲା । ଭଗବାନ ତା ଉପରେ ପ୍ରହାର କଲେ ଓ ସେ ମଧ୍ୟ ଭଗବାନଙ୍କ ଉପରକୁ ବାଣ ନିକ୍ଷେପ କଲା ।

ଏହିପରି ଉଭୟ ପକ୍ଷରୁ ଭୟଙ୍କର ବାଣବୃଷ୍ଟି ହେଲା । ଏବେ ଏ ଯୁଦ୍ଧର ଶେଷ ପରିଣାମ କ'ଣ ହେବ ଓ ଶାଲ୍ୱ କିପରି ମରିବ, ତାହା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ ଆପଣମାନଙ୍କୁ କହିବି ।"

## ଛପ୍ପୟ

କ୍ଷତ ବିକ୍ଷତ ନିଜପୁରୀ ନିହାରୀ କହେଁ ମୁରାରୀ ।
ଆଇ ସୌଭପତି ଅଧମ ଦ୍ୱାରକା ସକଲ ଉଜାରୀ ।।
ବଲ ପୁରରକ୍ଷା ହେତୁ ଭେଜି ରିପୁ ସମ୍ମୁଖ ଆୟେ ।
ଉଭୟ ପରସ୍ପର ଭିଡ଼େ କ୍ରୋଧଯୁତ ବଚନ ସୁନାୟେ ।।
ବାନନ କୀ ବରଷା କରୀ, ଶତ୍ରୁ ମାନ ମରଦନ କରେୟା ।
ରିପୁ ମାରେ ଶର ଶ୍ୟାମ କର, ସାରଙ୍ଗ ଧନୁ କରତେଂ ଗିରେୟା ।।



# ଶାଲ୍ୱ ବଧ

ଜହାର ତେନୈବ ଶିରଃ ସକୁଣ୍ଡଳମ୍ ,
କିରୀଟଯୁକ୍ତଂ ପୁରୁମାୟିନୋ ହରିଃ ।
ବଜ୍ରେଣ ବୃତ୍ରସ୍ୟ ଯଥା ପୁରନ୍ଦରୋ-
ବଭୂବ ହାହେତି ବଚସ୍ତଦା ନୃଣାମ୍ ॥ *

( ଶ୍ରୀ ଭା : ୧୦ ସ୍କ. ୭୭ ଅ. ୩୬ ଶ୍ଳୋକ )

## ଛପ୍ପୟ

ସୁର ମୁନି ହାହାକାର କରେଂ ଲଖୁ ଭୟେ ସୁଖାରେ ।
ଶାଲ୍ୱ ବଢ଼୍ୟା ଅଭିମାନ ଗରବଯୁତ ବଚନ ଉଚ୍ଚରେ ॥
କୃଷ୍ଣ ମାରିକେଂ ତୋଇ ମିତ୍ର ରଣ ଆଜୁ ଚୁକାଉଁ ।
ହଁସି ବୋଲେ ଭଗବାନ ତୋଇ ଯମସଦନ ପଠାଉଁ ॥
ମାୟାପତି ସଁଗ ସୌଭପତି, ବିବିଧ ସଁଚ ମାୟା କରତ ।
ମାୟା ତେଂ ବାସୁଦେବ ରଖ, କାଟେ୍ୟା ଜନକୋ ସିର ତୁରତ ॥

ଭଗବାନ ଯେତେବେଳେ ଯେଉଁ ରୂପ ଧାରଣ କରନ୍ତି, ସେତେବେଳେ ସେରୂପର କ୍ରୀଡ଼ା କରନ୍ତି । ସେ ସର୍ବଜ୍ଞ, ସର୍ବସ୍ୱତନ୍ତ୍ର ଓ ସବୁକିଛି କରିବାରେ ସମର୍ଥ । ଏଥିପାଇଁ ସେ ଯେଉଁ ଲୀଳା କରନ୍ତି ତାହା ସୁନ୍ଦର ପ୍ରତୀତ ହୁଏ । ସେଥିରେ ତାଙ୍କର

---

* ପ୍ରଳୟ ରବି ପ୍ରାୟ ତେଜେ । ଶୋଭେ ଶ୍ରୀକୃଷ୍ଣ ଦକ୍ଷଭୁଜେ । ××
ଚକ୍ର ପ୍ରହାରି ଦାମୋଦର । ହୁଙ୍କି ଛେଦିଲେ ତାର ଶିର ।
ଶିର ପଡ଼ିଲା ମହୀତଳେ । ବିରାଜେ କିରୀଟ-କୁଣ୍ଡଳେ ॥
ବାସବ ବଜ୍ରେ ବୃତ୍ର ଯେସନ୍ତେ । ହାହା ଶବଦ କଲେ ଶୂନ୍ୟେ ॥

(ଭାଗବତ : ଜଗନ୍ନାଥ ଦାସ ୧୦ମ ସ୍କ. ୮୩ ଅ.)

ଈଶ୍ୱରତ୍ୱ ପ୍ରକାଶ ପାଏ । ସେ ମୋହରହିତ ହୋଇଥିଲେ ମଧ୍ୟ ମୋହରେ ପଡ଼ିଥିବା ଭଳି ପ୍ରତୀତ ହୁଅନ୍ତି । ମାୟାଧୀଶ ହୋଇଥିଲେ ବି ସେ ମାୟାରେ ମୋହିତ ହେଉଥିବା ଭଳି ଜଣାପଡ଼ନ୍ତି । ତାଙ୍କର ଲୀଳା ବିଚିତ୍ର । ସେ ଯାହା କିଛି କରନ୍ତି, ତାହା ସତ୍ୟ, ଶିବ ଓ ସୁନ୍ଦର ।

ସୂତ କହିଲେ—"ମୁନିଗଣ ! ଭଗବାନ ଶ୍ରୀକୃଷ୍ଣଙ୍କ ସହିତ ସୌଭପତି ଯୁଦ୍ଧ କରୁଥାଏ । ଭଗବାନ ତା ଉପରକୁ ଏକ ଶକ୍ତିଶାଳୀ ବାଣ ନିକ୍ଷେପ କଲେ । ତାହା ତା କାନ୍ଧରେ ବାଜିବା କ୍ଷଣି ତାହାର ଶିରୀ ଛିନ୍ନ ହୋଇଗଲା । ମୁଖରୁ ରକ୍ତ ବାହାରିବାକୁ ଲାଗିଲା ଓ ସେ ଥରିବାକୁ ଲାଗିଲା । ସେ ବୁଝିପାରିଲା ମୁଁ ସାଧାରଣ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କୁ ଜୟକରି ପାରିବି ନାହିଁ । ତାଙ୍କ ସହିତ ମାୟାଯୁଦ୍ଧ କରିବି ।"

ତା ଗଦା ତ ଭଗବାନଙ୍କୁ ଆହତ କରି ଫେରି ଯାଇଥିଲା ଓ ତାହା ସେଠାରେ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା । ଏବେ ସେ ବିଚିତ୍ର ମାୟା ରଚନା କଲା । ସେ ନିଜ ମାୟାରେ ଏପରି ଏକ ପୁରୁଷ ସୃଷ୍ଟି କଲା, ଯିଏ କି ଭଗବାନ ଶ୍ରୀକୃଷ୍ଣଙ୍କର ଅନ୍ତରଙ୍ଗ ସେବକ ସଦୃଶ ଥିଲା । ସେ ରଣଭୂମିରେ ଠିଆ ହୋଇଥିବା ଭଗବାନଙ୍କୁ ନତ-ମସ୍ତକରେ ପ୍ରଣାମ କରି କାନ୍ଦି କାନ୍ଦି କହିଲା—"ପ୍ରଭୋ ! ମୋତେ ଭଗବତୀ ଦେବକୀ ଏକ ଅତି ଦୁଃଖମୟ ସମାଚାର ନେଇ ଆପଣଙ୍କ ନିକଟକୁ ପଠାଇଛନ୍ତି ।" ଏହା କହି ସେ ଭେଁ ଭେଁ ହୋଇ କାନ୍ଦିବାକୁ ଲାଗିଲା ।

ଭଗବାନ କହିଲେ—"ଭାଇ ! କହ ତ, ବାସ୍ତବ ସମାଚାର କ'ଣ ? ତୁମେ ଏତେ କାନ୍ଦୁଛ କାହିଁକି ? ମା' ମୋ ନିକଟକୁ କି ସମାଚାର ପଠାଇଛନ୍ତି ?"

ସେହି ମାୟା ସୃଷ୍ଟି ମନୁଷ୍ୟଟି କହିଲା—"ହେ ମହାବାହୋ ! କହିବା ଯୋଗ୍ୟ କଥା ହୋଇଥିଲେ ମଧ୍ୟ ତାହା ଅତ୍ୟନ୍ତ ଦୁଃଖପୂର୍ଣ୍ଣ । ଆପଣଙ୍କ ପୂଜନୀୟ ପିତାଙ୍କୁ ଏହି ଦୁଷ୍ଟ ଶାଲ୍ୱ ଏପରି ନିର୍ଦ୍ଦୟତା ପୂର୍ବକ ଧରି ବାନ୍ଧି ନେଇଗଲା ଯେ, ଯେପରିକି ପଶୁବଧକାରୀ ମଧ୍ୟ ପଶୁକୁ ବାନ୍ଧି ଭିଡ଼ି ଭିଡ଼ି ନେଉଥାଏ ।"

ଏହି କଷ୍ଟଦାୟକ ଦୁଃଖଦ ସମାଚାରକୁ ଶୁଣିବା ମାତ୍ରେ ଭଗବାନ ସାଧାରଣ ପ୍ରାକୃତ ପୁରୁଷଙ୍କ ପରି ଲୀଳା କରିବାକୁ ଲାଗିଲେ । ସେ ଅତ୍ୟନ୍ତ ଶୋକାକୁଳ ହୋଇ ସାଧାରଣ ମନୁଷ୍ୟଙ୍କ ଭଳି ସ୍ନେହପୂର୍ବକ ନିଜେ ନିଜେ କହିବାକୁ ଲାଗିଲେ—"ଦେଖ, ଭବିତବ୍ୟ କେପରି ପ୍ରବଳ । ମୁଁ ଏଥିପାଇଁ ମୋର ବଡ଼ଭାଇଙ୍କୁ ପ୍ରଥମରୁ ଦ୍ୱାରକାପୁରୀ ରକ୍ଷା କରିବାକୁ ପଠାଇଥିଲି । ତାଙ୍କୁ ସୁର, ଅସୁର, ଗନ୍ଧର୍ବ ଓ ଅନ୍ୟାନ୍ୟ ଦେବ ଉପଦେବ କେହି ଜୟ କରି ପାରନ୍ତି ନାହିଁ । ମୋର ଏପରି ଅଜେୟ ଭାଇଙ୍କୁ ଜୟ କରି ଶାଲ୍ୱ

କପଟର ମୋ ପିତାଙ୍କୁ ଧରିନେଲା ? ସେ ଥାଉ ଥାଉ ତ ଏପରି ସାହସ କେହି କରିପାରିବେ ନାହିଁ । ସେ ତ ସର୍ବଦା ସାବଧାନ ରହନ୍ତି, ତାଙ୍କୁ ଏ ହୀନବୀର୍ଯ୍ୟ ଶାଲ୍ୱ କପଟର ଜୟ କଲା ?"

ସୂତ କହିଲେ—"ମୁନିଗଣ ! ଭଗବାନ ଏହିପରି ବିଳାପ କରୁଥିବା ଅବସ୍ଥାରେ ଶାଲ୍ୱ ମାୟାରେ ଏକ ବସୁଦେବ ସଦୃଶ ପୁରୁଷ ସୃଷ୍ଟି କଲା ଓ ତାଙ୍କୁ ବାନ୍ଧି ଆକାଶ-ମାର୍ଗରେ ଶ୍ୟାମସୁନ୍ଦରଙ୍କ ସମ୍ମୁଖରେ ପ୍ରକଟ ହୋଇ କହିବାକୁ ଲାଗିଲା—"ରେ ମୂର୍ଖ ! ତୁ ଏହାଙ୍କୁ ଜାଣୁ କି ? ଏ ତୋର ପିତା ବସୁଦେବନା ? ମୁଁ ଶୁଣିଥିଲି ତୁ ବଡ଼ ପିତୃବତ୍ସଳ । ପିତା ହିଁ ତୋର ଜୀବନର କାରଣ । ମୁଁ ଏହାଙ୍କୁ ତୋ ପୁରୀରୁ ବଳପୂର୍ବକ ଧରି ଆଣିଛି । ଏହାଙ୍କୁ ମୁଁ ଆଜି ତୋ ସମ୍ମୁଖରେ ମାରିବି ତୋର ଯଦି ଶକ୍ତି ସାମର୍ଥ୍ୟ ଅଛି, ତାହାହେଲେ ନିଜ ପିତାଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କର ।"

ଏହା କହି ସେହି ମାୟାବୀ ମାୟାସୃଷ୍ଟ ବସୁଦେବର ଶିରକୁ ନିଜ ଖଡ୍ଗରେ ସଙ୍ଗେ ସଙ୍ଗେ ଶରୀରରୁ ପୃଥକ କରିଦେଲା । କଟା ଶିରକୁ ହାତରେ ଧରି ସେ ବିମାନରେ ଲୁଚି ଲୁଚି ବସିପଡ଼ିଲା ।

ସର୍ବଜ୍ଞ ମାୟାଧୀଶ ଭଗବାନ ନରଲୀଳା ପ୍ରଦର୍ଶନ କରିବାକୁ ଲାଗିଲେ । ନିଜ ପିତାଙ୍କର ବଧ ଦେଖି ସେ ଦୁଇଘଡ଼ି ପାଇଁ ଶୋକ ସାଗରରେ ମଗ୍ନ ହୋଇଗଲେ । ସେ ସାଧାରଣ ମନୁଷ୍ୟଙ୍କ ଭଳି ବିଳାପ କରି ସାରି ପ୍ରକୃତିସ୍ଥ ହୋଇ ଦିବ୍ୟ ଦୃଷ୍ଟିରେ ଦେଖି ପାରୁ ଥାଆନ୍ତି, ସେଠାରେ ଦୂତ ନାହିଁ କିମ୍ବା ପିତାଙ୍କର କଟା ଶରୀର ଆଦି ନାହିଁ । ଏହା ଶାଲ୍ୱର ମାୟା ଭେଳିକି ମାତ୍ର । ଏହା ଜାଣିବା କ୍ଷଣି ଶାଲ୍ୱ ଉପରେ ସେ ଭୀଷଣ ରାଗିଗଲେ ଓ ତାଙ୍କୁ ମାରିବା ପାଇଁ ପ୍ରସ୍ତୁତ ହୋଇଗଲେ ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଶୋକ, ମୋହ, ସ୍ନେହ ଓ ଭୟ ଆଦି ତ ମାୟାବଧ ଜୀବଙ୍କର ହୁଏ । ଶ୍ରୀକୃଷ୍ଣଙ୍କଠାରେ ଏ ସମସ୍ତ କପରି ପରିଲକ୍ଷିତ ହେଲା ? ଯେଉଁ ଭଗବାନଙ୍କ ଚରଣ ସେବା ଦ୍ୱାରା ଆତ୍ମବିଦ୍ୟା ଲାଭ ହୁଏ, ମୁନିଗଣ ଯଦ୍ଦ୍ୱାରା ଅନାଦି ଅବିଦ୍ୟା ଜନିତ ଉପସ୍ଥିତ ଜ୍ଞାନର ସର୍ବଦା ନାଶ କରନ୍ତି, ଅଖଣ୍ଡ ଐଶ୍ୱର୍ଯ୍ୟ ଓ ଅନନ୍ତ ଆତ୍ମବୈଭବ ପ୍ରାପ୍ତ ହୁଅନ୍ତି, ସେହି ଶରଣାଗତ ପ୍ରତିପାଳକ ଭକ୍ତବତ୍ସଳ, ସଜ୍ଜନ ପୁରୁଷଙ୍କର ଏକମାତ୍ର ଗତି, ପରଂବ୍ରହ୍ମ, ପରମାତ୍ମା ଶ୍ରୀହରି କ'ଣ କେବେ ମୋହବଶ ହୋଇ ପାରନ୍ତି ? ଏହାତ ଅତି ଅସମ୍ଭବ କଥା ? ଅଜ୍ଞାନ ତ ମାୟାରୁ ସୃଷ୍ଟି । ଭଗବାନ ତ ସ୍ୱୟଂ ମାୟାପତି । ସେ ଶାଲ୍ୱ ସୃଷ୍ଟ ମାୟା ବସୁଦେବଙ୍କୁ ପ୍ରଥମରୁ କପରି ଜାଣି ପାରିଲେ ନାହିଁ ?"

ସୂତ କହିଲେ—“ମହାରାଜ ! କେତେକ ମୁନି ଋଷିଙ୍କର ମତ ଯେ, ସେତେବେଳେ ଭଗବାନ ମୋହଗ୍ରସ୍ତ ହୋଇ ଯାଇଥିଲେ; କିନ୍ତୁ ଏହା ବିଶ୍ୱାସଯୋଗ୍ୟ ନୁହେଁ । ଭଗବାନ ତ ମାୟାମୋହ ରହିତ ! ତଥାପି ମାୟାରେ ସବୁକିଛି ସମ୍ଭବ । ଭଗବାନ ସବୁ ଜାଣି ମଧ୍ୟ ନରଲୀଳା ପ୍ରଦର୍ଶନ କରି ଥାଆନ୍ତି । କିଏସିନା ତାଙ୍କର ଅବାଧ ଜ୍ଞାନକୁ ଖଣ୍ଡନ କରି ପାରି ଥାଆନ୍ତା ? କିନ୍ତୁ ନରଲୀଳା ଦେଖାଇବା ପାଇଁ ସେ ନିଜର ପୈତୃକ ରାଜଧାନୀ ତ୍ୟାଗକରି ସମୁଦ୍ର ମଧ୍ୟରେ ନିବାସ କରି 'ରଣଛୋଡ଼' ନାମରେ ନାମିତ ହେଲେ । ଏଥିପାଇଁ ଆପଣମାନେ କୌଣସି ପ୍ରକାରେ ଶଙ୍କା ନ କରନ୍ତୁ ।”

ଶୌନକ କହିଲେ—“ହଁ, ସୂତ ! ଆପଣ ଯାହା କହିଲେ ତାହା ସତ୍ୟ । ଭଗବାନ ଯାହା କରନ୍ତି ତାହା ସତ୍ୟ, ତାହା ହିଁ କମନୀୟ କ୍ରୀଡ଼ା । ଏହା ପରେ ଯାହା ଘଟିଲା କୃପା କରି କହନ୍ତୁ ।”

ସୂତ କହିଲେ—“ମହାରାଜ ! ଶାଲ୍ୱ ଭଗବାନଙ୍କୁ ସମ୍ମୁଖରେ ଦେଖି କାଳ ବିଳମ୍ବ ନ କରି ତାଙ୍କୁ ଆକ୍ରମଣ କରିଦେଲା । ସେ ନିରନ୍ତର ଅସ୍ତ୍ର ଶସ୍ତ୍ର ବର୍ଷା କରିବାକୁ ଲାଗିଲା । ଭଗବାନ ତାଙ୍କର କୌମୋଦକୀ ଗଦାରେ ତାକୁ ପ୍ରହାର କଲେ । ଭଗବାନଙ୍କ ଗଦାପ୍ରହାରରେ ତାହାର ଦୃଢ଼ କବଚ ଖଣ୍ଡ ଚୂନା ହୋଇଗଲା । ଭଗବାନ ଏହାପରେ ତା ବିମାନ ଉପରେ ପ୍ରହାର କଲେ । ତାଙ୍କର ଗଦା ପ୍ରହାରରେ ତାହାର ମାୟାସୁର ନିର୍ମିତ ବିମାନ ଖଣ୍ଡ ହୋଇଗଲା ।

ବିମାନ ଖଣ୍ଡ ସମୁଦ୍ର ମଧ୍ୟରେ ପଡ଼ିଯିବା ସମୟରେ ଶାଲ୍ୱ ସେଥିରୁ ସଙ୍ଗେ ସଙ୍ଗେ ଆକାଶ ମାର୍ଗରୁ ଡେଇଁପଡ଼ିଲା । ସେ ଅତ୍ୟନ୍ତ ରାଗିଯାଇ ଗଦାଧର ଭଗବାନଙ୍କ ଆଡ଼କୁ ଧାଇଁଲା । ଭଗବାନ ତ ପୂର୍ବରୁ ସାବଧାନ ଥିଲେ, ଶାଲ୍ୱ ତାଙ୍କ ଆଡ଼କୁ ଆସୁଥିବାର ଦେଖି ସେ ଏକ ଅର୍ଦ୍ଧଚନ୍ଦ୍ରାକାର ବାଣ ତା ଉପରକୁ ନିକ୍ଷେପ କଲେ । ସେଥିରେ ତାହାର ଗଦାଧରିଥିବା ବାହୁ କଟିଗଲା । ହାତ କଟିଯିବାରୁ ସେ ଟିକିଏ ହେଲେ ବିଚଳିତ ନ ହୋଇ ଅଧିକ କ୍ରୋଧରେ ଭଗବାନଙ୍କ ଆଡ଼କୁ ଆଗେଇ ଆସିଲା । ସେତେବେଳେ ଭଗବାନ ତାଙ୍କ ସୁଦର୍ଶନ ଚକ୍ରକୁ ତା ଆଡ଼କୁ ଛାଡ଼ିଲେ । ତାହା ପ୍ରଳୟ କାଳୀନ ସୂର୍ଯ୍ୟସମ ଦେଖା ଯାଉଥିଲା । ତାହାର ସହସ୍ର କିରଣ ଝଲସି ଉଠୁଥିଲା । ସଙ୍ଗେ ସଙ୍ଗେ ତାହା ଶାଲ୍ୱର କିରୀଟ କୁଣ୍ଡଳମଣ୍ଡିତ ମସ୍ତକକୁ ଶରୀରରୁ ଅଲଗା କରିଦେଲା । ତାହାର ମୁଣ୍ଡ କଟିଯିବା ମାତ୍ରେ ଶତ୍ରୁସେନାଙ୍କ ମଧ୍ୟରେ ହାହାକାର ପଡ଼ିଗଲା । ସେମାନଙ୍କ ସାହସ ତୁଟିଗଲା ଓ ସେମାନେ ରଣଭୂମି ଛାଡ଼ି ପଳାଇବାକୁ ଲାଗିଲେ ।”

ଏଣେ ଯାଦବ ସେନାଙ୍କ ମଧ୍ୟରେ ଆନନ୍ଦ ଉଲ୍ଲାସ ଭରିଗଲା । ଦେବଗଣ ଆକାଶମାର୍ଗରୁ ପୁଷ୍ପ ବୃଷ୍ଟି କଲେ । ଶାଲ୍ୱର ମୃତ୍ୟୁରେ ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହେଲେ ।

ସୂତ କହିଲେ—"ମୁନିଗଣ । ଏବେ ଶାଲ୍ୱ ମରିଯିବାରୁ ତାହାର ମିତ୍ର ଦନ୍ତବକ୍ର ଯେପରି କୁପିତ ହୋଇ ଦ୍ୱାରକା ଆସିଲା ଓ ଭଗବାନ ଯେପରି ତାଙ୍କୁ ବଧ କଲେ, ତାହା ମୁଁ ଆପଣମାନଙ୍କୁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।

## ଛପ୍ପୟ

ନରଲୀଳା କଛୁ କରୀ ଫେର ମାୟା ସବ ଜାନୀ ।
ସୌଭ କରନ ବିଧ୍ୱଂସ ଗଦା ଶ୍ରୀହରି ନେ ତାନୀ ।।
ମାରି ଗିରୟୋ ବିମାନ ଟୁଟିକେଂ ଚୂର ଭୟୋ ସବ ।
ଲଖି ହରି ସନ୍ମୁଖ ଶାଲ୍ୱ ଚକ୍ରତେଂ ସିର କାଟ୍ୟୋ ଜବ ।।
ହାୟ ହାୟ ଅରି ଦଲ ମଚୀ, ଭୟେ ମୁଦିତ ଯାଦବ ଅମର ।
ଜୟ ଜୟ ସୁର ନର ମୁନି କହହିଁ, ସୁଧର ଶ୍ୟାମ ଜୀତ୍ୟୋ ସମର ।।



## ଦନ୍ତବକ୍ତ୍ର ଓ ବିଦୂରଥ ବଧ

ନୈବୁଦ୍ଧ୍ୟୁଦ୍ଧଭବ୍ୟୋ ରାଜନ୍ ଦିବ ଦେବଗଣେରିତାଃ ।
ସଖୀନାମପଚିତିଂ କୁର୍ବନ୍ ଦନ୍ତବକ୍ରୋ ରୁଷାଭ୍ୟଗାତ୍ । *

( ଶ୍ରୀ: ଭା: ୧୦ ସ୍କ. ୭୭ ଅ. ୩୭ ଶ୍ଳୋକ )

### ଛପ୍ପୟ

ଶାଲ୍ୱ ଔର ଶିଶୁପାଲ ମରନ ସବ ଜଗ ମହଁ ଛାୟୌ ।
ବଦଲୌ ଲୈବେ ଦନ୍ତବକ୍ତ୍ର ଦ୍ୱାରିକା ଆୟୌ ॥
ରନକେ ବାଜେ ବଜେ ଉଭୟ ଦଲ ଚଲେ ହରଷ ପୁନ ।
ମାମା ଫୁଫୀ ବନ୍ଧୁ ଲଡ଼ୈ ଲଖି ବିହଁସତ ଋଷି ମୁନି ॥
ଗଦା ଶ୍ୟାମ ଶିର ମାରି ଖଲ, ହଁସ୍ୟୋ ନ ହରି ବିଚଲିତ ଭୟେ ।
ତାନ ଗଦା କୌମୋଦକୀ, କୃଷ୍ଣ ଅସୁର ଢିଗ ଗୟେ ॥

ଏ ସଂସାର ଆଶା ଉପରେ ହିଁ ତିଷ୍ଠି ରହିଛି । କଥାରେ ଅଛି "ଯାବତ୍ ଶ୍ୱାସ, ତାବତ୍ ଆଶା" ଏହି ବାଣୀର ଲୋକୋକ୍ତି ଅକ୍ଷରେ ଅକ୍ଷରେ ସତ୍ୟ । ଚିକିତ୍ସକ ଜାଣନ୍ତି ଏ ରୋଗ ଦୁରାରୋଗ୍ୟ, ତଥାପି ଆଶାରେ ସେମାନେ ଚିକିତ୍ସା କରନ୍ତି । ସେମାନଙ୍କର ଆଶା ଥାଏ କାଳେ ରୋଗୀ ବଞ୍ଚିଯିବ କି ? ବେପାର ବାଣିଜ୍ୟରେ, ଜୁଆ ଲଟେରୀ ଖେଳରେ ବାରମ୍ବାର ହାରି ଯାଉଥିଲେ ମଧ୍ୟ ଲୋକେ ଜିତିବା ଆଶାରେ ତାହା ଖେଳୁଥାଆନ୍ତି । ସୈନିକ ଶତ୍ରୁକୁ ପରାକ୍ରମୀ ଜାଣି ମଧ୍ୟ ଜିତିବା ଆଶାରେ ତା

---

* ଏମନ୍ତେ ଶାଲ୍ୱ ନାଶ ଗଲା । ଅବନୀ ଉଶ୍ୱାସ ହୋଇଲା ॥
ବାଜଇ ଦୁନ୍ଦୁଭି ଶବଦ । ନାଚନ୍ତି ଅପସରା ବୃନ୍ଦ ॥
ତାହାର ସଖା ଦନ୍ତବକ୍ତ୍ର । କୋପେ ହୋଇ ରକ୍ତନେତ୍ର ॥
ମିଳିଲା ଶ୍ରୀକୃଷ୍ଣ ଅଗ୍ରତ । ହୃଦେ ସୁମରି ଭ୍ରାତୃହତ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୮■ ଅ)

ସହିତ ଲଢ଼େ । ଯଦି ମନୁଷ୍ୟର ଆଶା ନଥାନ୍ତା, ତାହାହେଲେ ସେ କୌଣସି କାର୍ଯ୍ୟ କରି ପାରନ୍ତା ନାହିଁ । ପ୍ରବୃତ୍ତିର ମୂଳ କାରଣ ହିଁ ଆଶା । ଏଥିପାଇଁ ବୈରାଗ୍ୟବାନ ପୁରୁଷ ଆଶାକୁ ପରମ ଦୁଃଖ ଓ ନୈରାଶ୍ୟକୁ ପରମ ସୁଖ ବୋଲି କହନ୍ତି । ମନୁଷ୍ୟ ଜାଣେ ଯେ ବିପକ୍ଷ ଲୋକରେ କେହି ସୁଖୀ ହୋଇପାରେ ନାହିଁ । ତଥାପି ସେ ବିଷୟଭୋଗ ଏହି ଆଶା ରଖି ପ୍ରବୃତ୍ତ ହୁଏ ଯେ, କାହାକୁ ଯଦିଓ ସୁଖ ନ ମିଳୁଥାଏ, ମୋତେ ତ ମିଳିବ । ଆସୁରୀ ପ୍ରକୃତିର ଲୋକମାନେ ଜାଣନ୍ତି ଯେ ଭଗବାନ ହିରଣ୍ୟକଶିପୁ, ହିରଣ୍ୟାକ୍ଷ, ରାବଣ, କୁମ୍ଭକର୍ଣ୍ଣ ଭଳି ବୀରଙ୍କୁ ମାରି ଅଛନ୍ତି । କେହି ହେଲେ ଭଗବାନଙ୍କୁ ଯୁଦ୍ଧରେ ଏପର୍ଯ୍ୟନ୍ତ ଜୟ କରିପାରି ନାହାନ୍ତି । ତଥାପି ସେମାନେ ଏହାକୁ ଭ୍ରୂକ୍ଷେପ ନ କରି ତାଙ୍କ ସହିତ ଯୁଦ୍ଧ କରିବାକୁ ପ୍ରବୃତ୍ତ ହୁଅନ୍ତି ।

ସୂତ କହିଲେ—"ମୁନିଗଣ ! ଯେତେବେଳେ ଶାଲ୍ୱ ମରିଗଲା ଓ ତାହାର ମାୟାନିର୍ମିତ ବିମାନ ନଷ୍ଟ ହୋଇଗଲା, ସେତେବେଳେ ଯାଦବ ଓ ସମସ୍ତ ଦେବ, ମୁନି, ଋଷି ଅତ୍ୟନ୍ତ ଆନନ୍ଦିତ ହେଲେ । ଏହି ସମାରୋହ ସହିତ ପ୍ରସ୍ଥାନ ହୋଇଗଲା ।

ମୁଁ ଆପଣମାନଙ୍କୁ ପ୍ରଥମରୁ କହିଛି ଯେ, ଭଗବାନଙ୍କର ପାଞ୍ଚଟି ପିଉସୀ ଥିଲେ । ସବୁଠାରୁ ବଡ଼ ପିଉସୀ କୁନ୍ତୀଙ୍କର ପୁଅ ହେଉଛନ୍ତି ପାଣ୍ଡବ । ଏହି ପାଣ୍ଡବମାନେ ଭଗବାନଙ୍କୁ ନିଜର ସର୍ବସ୍ୱ ବୋଲି ମନେ କରୁଥିଲେ । ଶ୍ରୁତଶ୍ରବାଙ୍କର ବିବାହ ଚେଦିବଂଶର ରାଜା ଦମଘୋଷଙ୍କ ସହିତ ହୋଇଥିଲା । ତାଙ୍କର ପୁଅ ଥିଲା ଶିଶୁପାଳ । ଭଗବାନ ତାକୁ ଧର୍ମରାଜଙ୍କ ରାଜସୂୟ ଯଜ୍ଞ ସଭାରେ ହତ୍ୟା କରିଥିଲେ । ଆଉ ଜଣେ ପିଉସୀଙ୍କ ନାମ ଶ୍ରୁତଦେବା । ସେ କରୁଷ ଦେଶର ରାଜା ବୃଦ୍ଧଶର୍ମାଙ୍କୁ ବିବାହ କରିଥିଲେ । ତାଙ୍କ ପୁଅର ନାମ ଦନ୍ତବକ୍ତ୍ର । ସନକାଦି ଋଷିଙ୍କ ଶାପରୁ ଜୟ ବିଜୟଙ୍କର ତୃତୀୟ ଜନ୍ମରେ ସେ ଅସୁର ଯୋନିରେ ଜନ୍ମଗ୍ରହଣ କରିଥିଲା । ପ୍ରଥମ ଜନ୍ମରେତ ସେ ଦୁହେଁ ସହୋଦର ଭାଇ ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ ନାମରେ ଜନ୍ମ ନେଇଥିଲେ ଓ ଦ୍ୱିତୀୟ ଜନ୍ମରେ ଦୁଇଭାଇ ରାବଣ ଓ କୁମ୍ଭକର୍ଣ୍ଣ ନାମରେ ଜନ୍ମ ନେଇଥିଲେ । ଏବେ ଏହି ତୃତୀୟ ଜନ୍ମରେ ଏ ଦୁହେଁ ପୃଥକ୍ ପୃଥକ୍ ଯୋନିରେ ଜନ୍ମଗ୍ରହଣ କରିଥିଲେ । ଯଦିଓ ଶିଶୁପାଳ ଓ ଦନ୍ତବକ୍ତ୍ର ସହୋଦର ଭାଇ ନୁହନ୍ତି, ତଥାପି ମାଉସୀପୁଅ ଭାଇ ରୂପେ ଜନ୍ମ ହୋଇଥିଲେ । ତେଣୁ ଭଗବାନଙ୍କର ଏକ ପିଉସୀ ପୁଅ ଭାଇ ଥିଲା । ଶିଶୁପାଳ ଓ ଅନ୍ୟ ପିଉସୀ ପୁଅ ଭାଇ ଥିଲା ଦନ୍ତବକ୍ତ୍ର । ଏବେ ଏହି ତୃତୀୟ ଜନ୍ମରେ ଭଗବାନଙ୍କ ହାତରେ ମୁକ୍ତିବରଣ କରି ସେ ଦୁହେଁ ବୈକୁଣ୍ଠ ପ୍ରାପ୍ତି ହେବାର ଥିଲା । ଜନ୍ମ ଯେଉଁଠାରେ ହୋଇଥାଉ ପଛକେ ପୂର୍ବ ଜନ୍ମର ସଂସ୍କାର ଭୋଗ କରିବାକୁ ହିଁ ପଡ଼ିଥାଏ । ପୂର୍ବ ଜନ୍ମରେ ଯାହା ସହିତ ଶତ୍ରୁତା ମିତ୍ରତା ରହିଥାଏ, ତାହାର ସଂସ୍କାର ପରଜନ୍ମକୁ ବି ଅବଶିଷ୍ଟ ରହିଥାଏ । ଏଥିପାଇଁ ଶିଶୁପାଳ ଓ ଦନ୍ତବକ୍ତ୍ରଙ୍କ ମଧ୍ୟରେ ଖୁବ୍ ସ୍ନେହ ମମତା ଥିଲା । ଶିଶୁପାଳର

ମିତ୍ର ଶାଲ୍ୱ ଥିଲା । ମିତ୍ରର ମିତ୍ର ହୋଇଥିବାରୁ ଦନ୍ତବକ୍ର ମଧ ତାକୁ ଖୁବ୍ ଭଲ ପାଉଥିଲା ।

ଭଗବାନ ଯେତେବେଳେ ଶିଶୁପାଳକୁ ବଧ କଲେ, ସେତେବେଳେ ଦନ୍ତବକ୍ର ସେଠାରେ ଉପସ୍ଥିତ ନଥିଲା । ସେ ଯେତେବେଳେ ଶୁଣିଲା ଯେ, ଶ୍ରୀକୃଷ୍ଣ କପଟ ରାଜସୂୟ ଯଜ୍ଞ ସଭା ମଧରେ ତାକୁ ମାରିଛନ୍ତି, ସେତେବେଳେ ସେ ଭୀଷଣ ରାଗିଯାଇଥିଲା । ଏବେ ସେ ଶୁଣିବାକୁ ପାଇଲା ଶ୍ରୀକୃଷ୍ଣ ଇନ୍ଦ୍ରପ୍ରସ୍ଥରୁ ଦ୍ୱାରକାକୁ ଫେରିଆସିଛନ୍ତି ଓ ଶାଲ୍ୱଙ୍କୁ ମାରିଛନ୍ତି । ତେଣୁ ସେ ନିଜର ମିତ୍ର ତଥା ଭାଇର ହତ୍ୟାକାରୀ ଉପରେ ପ୍ରତିଶୋଧ ନେବା ପାଇଁ ଦ୍ୱାରକାରେ ଆସି ପହଞ୍ଚିଗଲା । ସେ ଚିନ୍ତାକଲା, ଶ୍ରୀକୃଷ୍ଣ ବଡ଼ ଛଳୀ, ବଳୀ ଓ କୌଶଳୀ । ମୋର ମିତ୍ର ଓ ଭାଇଙ୍କୁ ସେ ଛଳରେ ମାରି ପରଲୋକକୁ ପଠାଇ ଦେଲା । ଏବେ ମୁଁ ତାକୁ ବଧ କରି ସ୍ୱର୍ଗଗତ ମିତ୍ରଙ୍କର ପ୍ରିୟକାର୍ଯ୍ୟ କରିବି ।" ଏହା ଭାବି ସେହି ନିର୍ବୋଧ ଅତ୍ୟନ୍ତ କ୍ରୋଧରେ ଗଦାଧାରଣ କରି ଦ୍ୱାରକାରେ ଆସି ପହଞ୍ଚିଲା । ତାହାର ମନ୍ତ୍ରୀ ଓ ମିତ୍ରମାନେ ତାକୁ ବହୁତ ବୁଝାଇ କହିଲେ—"ଆପଣ ସେନା ସଜାଇ ଦ୍ୱାରକା ଉପରେ ଆକ୍ରମଣ କରନ୍ତୁ । କିନ୍ତୁ ତାହାର ତ ନିଜ ବଳପାଇଁ ଖୁବ୍ ଅଭିମାନ ଥିଲା, ତେଣୁ ସେ କହିଲା—"ସେନା ସଜାଇ ବଳହୀନମାନେ ଯୁଦ୍ଧକୁ ଯାଆନ୍ତି । ମୁଁ ଏକା ଯାଇ କୃଷ୍ଣକୁ ମାରିଆସିବି ।" ଏହା କହି ସେ ପାଦରେ ଚାଲି ଚାଲି ଏକା ଦ୍ୱାରକା ଯାଇଥିଲା । ସେ ସେହି ସମୟରେ ଭଗବାନଙ୍କୁ ଦେଖିଥିଲା, ଯେତେବେଳେ ଶାଲ୍ୱକୁ ମାରି ଭଗବାନ ରଥରେ ବସି ଦ୍ୱାରକାପୁରୀକୁ ଫେରୁଥିଲେ । ଦୂରରୁ ହିଁ ସେ ଭଗବାନଙ୍କ ରଥର ବିଶାଳ ଗରୁଡ଼ ଚିହ୍ନଥିବା ଧ୍ୱଜାକୁ ଦେଖି ପାରିଥିଲା । ତେଣୁ ସେ ସେହିଠାରୁ ଗର୍ଜିକରି କହିଥିଲା—"ରେ କପଟୀ କୃଷ୍ଣ ! ତୁ କେଉଁଆଡ଼େ ପଳାଇ ଯାଉଛୁ ? ସେହିଠାରେ ରହ ।"

ଭଗବାନ୍ ଦେଖିଲେ, ହାତରେ ଗଦାଧରି ଦୁମ୍ ଦୁମ୍ ପାଦରେ ବସୁଧା ଦୋହଲାଇ ଯୁଦ୍ଧ କରିବା ପାଇଁ ଦନ୍ତବକ୍ର ତାଙ୍କ ଆଡ଼କୁ ଧାଇଁ ଆସୁଛି । ସେ ଚିନ୍ତାକଲେ— "ଯଦି ଶତ୍ରୁ ପାଦରେ ଚାଲି ଚାଲି ଆସୁଛି, ମୁଁ ରଥରେ ବସି ତା ସହିତ ଯୁଦ୍ଧ କରିବା ଉଚିତ ନୁହେଁ । ମୁଁ ମଧ ପାଦରେ ଚାଲି ଚାଲି ଯାଇ ତା ସହିତ ଯୁଦ୍ଧ କରିବି । ଏହା ରଣନୀତି ।" ଏହା ଚିନ୍ତା କରି ସେ ସଙ୍ଗେ ସଙ୍ଗେ ରଥରୁ ଡେଇଁ ପଡ଼ିଲେ । ତାଙ୍କ ହସ୍ତରେ କୌମୋଦକୀ ଗଦା ଥିଲା । ସେ ସଙ୍ଗେ ସଙ୍ଗେ ଦନ୍ତବକ୍ରକୁ ଅଟକାଇ ତାକୁ କହିଲେ—"ଭାଇ ! କେଉଁଆଡ଼େ ଯାଉଛ ?"

ଏହା ଶୁଣି ଦନ୍ତବକ୍ର କ୍ରୋଧରେ ଗଦା ଉଠାଇ କହିଲା—"କୃଷ୍ଣ ! ତୁ ମୋର ମାମୁଁ ପୁଅ ଭାଇ । ମାତୃପକ୍ଷର ସମ୍ବନ୍ଧ ହେଉ ତୁ ମୋ ପାଇଁ ଅବଧ୍ୟ, ମୁଁ କ'ଣ କରିବି,

ତୋର ଅଭିମାନ ଏବେ ବହୁତ ବଢ଼ି ଗଲାଣି । ତୋ'ର ଅପରାଧର ସୀମା ଟପି ଗଲାଣି । ତୁ ମୋର ଭାଇ ଶିଶୁପାଳର ସ୍ତ୍ରୀକୁ ବଳାତ୍କାରରେ ଅପହରଣ କରି ନେଲୁ । ମୋର ମିତ୍ର ଜରାସନ୍ଧକୁ ତୁ ଛଳରେ ମାରିଲୁ । ଶିଶୁପାଳକୁ ତୁ ରାଜସଭାରେ ବଧକଲୁ । ତାହାର ପରମ ମିତ୍ର ମୋର ସ୍ନେହୀ ଶାଲ୍ୱକୁ ତୁ ଏବେ ମାରିଛୁ । ଯାଉଁକୁ ତୁ ଆଜ ମୋ ହାତୁଡ଼ରେ ପଡ଼ିଯାଇଛୁ । କାଳ ବିଳମ୍ବ ନକରି ତୁ ତୋର ଇଷ୍ଟ ଚିନ୍ତା କର । ମୁଁ ଆଜ ତୋତେ ଛାଡ଼ିବି ନାହିଁ । ମୋର ବଜ୍ର ସଦୃଶ ଗଦାରେ ତୋତେ ମାରିଦେବି । ତୁ ଆମ ମାତୃକୁଳର କଳଙ୍କ ସ୍ୱରୂପ । ରେ ମନ୍ଦମତି ! ଏବେ ମରିବା ପାଇଁ ପ୍ରସ୍ତୁତ ହୋଇଯା । ମୁଁ ଯଦି ତୋତେ ନ ମାରୁଛି, ତାହାହେଲେ ମୁଁ ମିତ୍ରଦ୍ରୋହୀ ହେବି । ତେଣୁ ମୁଁ ଆଜ ତୋତେ ମାରି ମିତ୍ରଋଣରୁ ମୁକ୍ତ ହେବି ।''

ସୂତ କହିଲେ—''ମୁନିଗଣ ! ଏହା କହି ସେହି ମହାବଳଶାଳୀ ଦନ୍ତବକ୍ତ୍ର ଗଦା ଘୂରାଇ ଭଗବାନଙ୍କ ମସ୍ତକ ଉପରେ ଗଦା ପ୍ରହାର କଲା ଏବଂ ଗର୍ଜ୍ଜନ କରିବାକୁ ଲାଗିଲା । ଯଦି ଚ ସେ ଭଗବାନଙ୍କ ମସ୍ତକରେ ଜୋରରେ ଗଦା ପ୍ରହାର କଲା, ତଥାପି ଭଗବାନ୍ ସେଥିରେ ବିଚଳିତ ହୋଇ ନଥିଲେ । ସେ ଗଦା ପ୍ରହାରକୁ ସହ୍ୟ କରି କହିଲେ—''ଭାଇ ! ତୁମେ ତ ମୋତେ ପ୍ରହାର କଲ, ଏବେ ମୋ ପ୍ରହାର ତୁମେ ସହ ।'' ଏହା କହି ଭଗବାନ୍ ତାହାର ବକ୍ଷସ୍ଥଳରେ କୌମୋଦକୀ ଗଦା ପ୍ରହାର କଲେ । ସଙ୍ଗେ ସଙ୍ଗେ ସେ ରକ୍ତବାନ୍ତି କରିପକାଇଲା, କେଶ ବାଳ ଧରି ସିଧା ହୋଇ ଭଗବାନଙ୍କ ଆଡ଼କୁ ଚିଟମିଟ କରି ଚାହିଁ ଶେଷ ନିଶ୍ୱାସ ଛାଡ଼ିଲା । ଶିଶୁପାଳ ମରିବା ସମୟରେ ଯେପରି ତା ଶରୀରରୁ ଜ୍ୟୋତି ଯାଇ ଭଗବାନ୍ ବାସୁଦେବଙ୍କ ଶରୀରରେ ମିଶିଯାଇଥିଲା, ସେହିପରି ଦନ୍ତବକ୍ତ୍ରର ମୁଣ୍ଡମଣ୍ଡଳରୁ ଏକ ସୂକ୍ଷ୍ମ ଜ୍ୟୋତି ଯାଇ ସମସ୍ତେ ଦେଖୁ ଦେଖୁ ବିଚିତ୍ର ଭାବରେ ଭଗବାନଙ୍କ ଶ୍ରୀ ଅଙ୍ଗରେ ମିଶିଗଲା । ସମସ୍ତେ ଭଗବାନଙ୍କର ଜୟଗାନ କଲେ । ତିନିଲୋକରେ ଆନନ୍ଦ ଉଲ୍ଲାସ ଭରିଗଲା ।

ଦନ୍ତବକ୍ତ୍ର ଯେଉଁ ସମୟରେ ଏକା ହୋଇ ହସ୍ତରେ ଗଦା ଧାରଣ କରି ଦ୍ୱାରକା ଅଭିମୁଖେ ଯାଉଥିଲା, ସେହି ସମୟରେ ଭ୍ରାତୃସ୍ନେହ ପରାଭୂତ ତାହାର ଭାଇ ବିଦୂରଥ ମଧ୍ୟ ତା ପଛେ ପଛେ ଯାଇଥିଲା । ଦନ୍ତବକ୍ତ୍ର ପ୍ରଥମେ ପହଞ୍ଚିଥିଲା । ସେ ଯେତେବେଳେ ମୃତ୍ୟୁବରଣ କଲା ଠିକ୍ ସେତିକବେଳେ ବିଦୂରଥ ସେଠାରେ ଯାଇ ପହଞ୍ଚିଲା । ଭାଇର ମୃତ୍ୟୁ ଖବର ଶୁଣି ସେ ଭ୍ରାତୃ-ଶୋକରେ ବିହ୍ୱଳ ହୋଇ ଭଗବାନଙ୍କୁ ମାରିବା ପାଇଁ ଧାଇଁଲା । ଭଗବାନ୍ ଚିନ୍ତା କଲେ ବର୍ତ୍ତମାନ ଗଦା ପ୍ରହାର ନକରି ସୁଦର୍ଶନକୁ ଆଦେଶ ଦେବି । ତେଣୁ ସେ ସୁଦର୍ଶନକୁ ଆଜ୍ଞା ଦେବାମାତ୍ରେ ସୁଦର୍ଶନ ତାହାର କିରୀଟ-କୁଣ୍ଡଳ ମଣ୍ଡିତ ମସ୍ତକକୁ ଶରୀରରୁ ପୃଥକ୍ କରିଦେଲା ! ଏବେ ଯାଦବଗଣଙ୍କର ଆନନ୍ଦର ସୀମା ରହିଲା ନାହିଁ । ନିଜ ପକ୍ଷର ବିଜୟରେ ସମସ୍ତେ ଆନନ୍ଦରେ ବିଭୋର ହୋଇ ପଡ଼ିଲେ ।

ଏବେ ଆଉ କୌଣସି ଶତ୍ରୁ ଆକ୍ରମଣର ଆଶଙ୍କା ରହିଲା ନାହିଁ । ସମସ୍ତ ଶତ୍ରୁଙ୍କୁ ବିନାଶ କରି ଭଗବାନ ଶଙ୍ଖ ବଜାଇ ଦ୍ୱାରିକାପୁରୀରେ ଯାଇ ପହଞ୍ଚିଲେ । ବିଶ୍ୱବାସୀ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ । ଦେବଗଣ ଆକାଶରୁ ପୁଷ୍ପବୃଷ୍ଟି କଲେ । ସୂତ, ମାଗଧ, ବନ୍ଦୀ, ମୁନି, ଋଷି, ଦ୍ୱିଜ, ଗନ୍ଧର୍ବ, ବିଦ୍ୟାଧର, ଚାରଣ, ପିତୃଗଣ, ଅପ୍ସରା, ଯକ୍ଷ, କିନ୍ନର ଓ ସୁରଗଣାଦି ତାଙ୍କର ଯଶୋଗାନ କଲେ । ଭଗବାନ୍ ମନ୍ଦ ମନ୍ଦ ହସି ବିଜୟ ଗାନକୁ ଶ୍ରବଣ କରି ସମସ୍ତଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଚାଲିଲେ । ଯାଦବଗଣ ଦ୍ୱାରାବତୀକୁ ଭଲ ଭାବରେ ସଜାସଜ କଲେ । ସେହି ସୁସଜ୍ଜିତ ପୁରୀରେ ପ୍ରଭୁ ପ୍ରସନ୍ନତା ପୂର୍ବକ ପ୍ରବେଶ କଲେ । ବିଜୟୀ ଭଗବାନଙ୍କୁ ଦର୍ଶନ କରି ନଗରର ନରନାରୀ ଅତ୍ୟଧିକ ପ୍ରମୁଦିତ ହେଲେ । ସ୍ତ୍ରୀଲୋକମାନେ ତାଙ୍କ ଉପରେ ପୁଷ୍ପବର୍ଷା କଲେ । କନ୍ୟାମାନେ ତାଙ୍କୁ ମାଳା ପିନ୍ଧାଇଲେ ଓ ତାଙ୍କ ମସ୍ତକରେ ଦଧି-କୁଙ୍କୁମର ଟୀକା ଲଗାଇଲେ । ସମସ୍ତେ ଅକ୍ଷତ ସିଞ୍ଚନ କଲେ । ଭଗବାନ ସମସ୍ତଙ୍କୁ ଯଥୋଚିତ ସ୍ୱାଗତ ସମ୍ମାନ କରି ମହଲ ମଧ୍ୟକୁ ଗଲେ ।

ସୂତ କହିଲେ—"ମୁନିଗଣ ! ଏହିପରି ଭାବରେ ଯୋଗେଶ୍ୱରଙ୍କର ଈଶ୍ୱର ଜଗତ୍ପତି ବାସୁଦେବ ଅନେକ ଦିବ୍ୟାତିଦିବ୍ୟ ଲୀଳା କରୁଥିଲେ । ଅଜ୍ଞାନୀମାନେ ତାଙ୍କୁ କେଉଁଠି ହାରିଯିବାର ଓ କେଉଁଠି ଜୟ କରିବାର ଦେଖନ୍ତି । ବାସ୍ତବରେ ସେ କାହାଠାରୁ କେବେହେଲେ ହାରିଯାଆନ୍ତି ନାହିଁ କିମ୍ବା କାହାରିକୁ ଜୟ କରନ୍ତି ନାହିଁ । ସିଏ ତ ସମସ୍ତଙ୍କର ସ୍ୱାମୀ । କ୍ରୀଡ଼ା କରିବା ପାଇଁ ସେ ବିଭିନ୍ନ ରୂପ ଧାରଣ କରନ୍ତି । ଏବେ କୌଣସି କାରଣରୁ ବଳଦେବ ଯେପରି ଉଦ୍ବେଜିତ ହୋଇ ତୀର୍ଥଯାତ୍ରା କରିବାକୁ ଗଲେ, ସେହି ପ୍ରସଙ୍ଗରେ ମୁଁ ଆପଣମାନଙ୍କୁ ପରବର୍ତ୍ତୀ ଅଧ୍ୟାୟରେ କହିବି ।"

## ଛପ୍ପୟ

ମାରି ହିୟ ମହଁ ଗଦା ଗିରୟୋ ମର ଅତ ଅଭିମାନୀ ।
ତନୁତେଂ ନିକସୀ ଜ୍ୟୋତ ଶ୍ୟାମ ତନୁ ମାହିଁ ସମାନୀ ।।
ତୀନ ଜନମ ଜୟ ବିଜୟ ଭୟେ ଖଲ ହରିତନ ମାରେ ।
ଶାପ ମୁକ୍ତ ଅବ ଭୟେ ତୁରତ ବୈକୁଣ୍ଠ ସିଧାରେ ।।
ଦନ୍ତବକ୍ରକୋ ବନ୍ଧୁ ଲଘୁ, ଆଇ ବିଦୂରଥ ରନ କରେୟା ।
ସୋଉ ହରିକେ ହାଥ ତେଂ, ସମର ମାହିଁ ସନ୍ମୁଖ ମରେୟା ।।

●

# ବଳଦେବ ତଟସ୍ଥତା

ଶ୍ରୁତ୍ୱା ଯୁଦ୍ଧୋଦ୍ୟମଂ ରାମଃ କୁରୂଣାଂ ସହ ପାଣ୍ଡବୈଃ ।
ତୀର୍ଥାଭିଷେକବ୍ୟାଜେନ ମଧ୍ୟସ୍ଥଃ ପ୍ରଯଯୌ କିଲ ॥ *

(ଶ୍ରୀ ଭାଃ ୧୦ ସ୍କଃ ୭୮ : ଅ ୧୭ ଶ୍ଳୋକ)

## ଛପ୍ପୟ

ବ୍ରଜମ୍ହି ବଳ ଘନଶ୍ୟାମ ପୁରୀ ଅପନୀ ମହଁ ଆୟେ ।
ସୁଯୋଧନ ଦ୍ୟୁତ ମହଁ ଧରମରାଜ କୌରବନ ହରାୟେ ॥
ରାଜପାଟ ସବ ହାର ବନେ ପାଣ୍ଡବ ବନବାସୀ ।
ପହୁଁଚେ ବନ ମହଁ ତୁରତ ସୁନତ ଅଚ୍ୟୁତ ଅବିନାଶୀ ॥
ଦଇ ସାନ୍ତ୍ୱନା ସବନ କୁଁ, ବନକୋ ପ୍ରନ ପୂରନ ଭୟୋ ।
ଦୁରଯୋଧନନେ ତଊ ନହୀଁ, ରାଜ ପାଣ୍ଡବନ ଫିର ଦୟୋ ॥

ମନୁଷ୍ୟଙ୍କୁ ଯେଉଁ ସମୟରେ ବଡ଼ ଧର୍ମସଙ୍କଟ ପଡ଼ିଯାଏ, ଯେଉଁ ସମୟରେ ଲଢ଼ୁଥିବା ଉଭୟ ପକ୍ଷର ଲୋକ ନିଜର ଆତ୍ମୀୟ ହୋଇଥାଆନ୍ତି ! ଇଏ ମୋ ନିଜର ସିଏ ମୋ ନିଜର ନୁହେଁ ଏପରି ଭାବ ଆତ୍ମୀୟଙ୍କ ମଧ୍ୟରେ କୌଣସି ପକ୍ଷପାତ ଜଗୃତ କେହୁ କରେ ନାହିଁ । ଏହା ସ୍ୱାଭାବିକ ନିୟମ । ଯେଉଁ କ୍ଷେତ୍ରରେ ଉଭୟ ପକ୍ଷର ଲୋକ ନିଜର ଅନାତ୍ମୀୟ ହୋଇଥାଆନ୍ତି, ସେ କ୍ଷେତ୍ରରେ ମନୁଷ୍ୟ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଏ । ଏପରି ପରିସ୍ଥିତିରେ କେତେକ ଲୋକ ଏପରି କାର୍ଯ୍ୟ କରନ୍ତି, ଯଦ୍ଦ୍ୱାରା ଅଧିକ ସ୍ନେହ ମମତା ଥିବା ପକ୍ଷର ଲୋକଙ୍କୁ ସାହାଯ୍ୟ କରିବାକୁ ଅବସର ହୁଅନ୍ତି ଓ ଅନ୍ୟ ପକ୍ଷ ସହିତ ଶତ୍ରୁତା ଆଚରଣ କରନ୍ତି । ପୁନଶ୍ଚ ଆଉ କେତେକ ଲୋକ ଆତ୍ମୀୟ ହୋଇଥିବାରୁ

---

* ଏବେ ହେ ଶୁଣ ନୃପମଣି । ଦ୍ୱାରକାପୁରେ ହଳପାଣି ॥
କୁରୁ ପାଣ୍ଡବ ଘୋରରଣ । ଶୁଣିଲେ ଯୁଦ୍ଧର ଉଦ୍ୟମ ॥
ମଧ୍ୟସ୍ଥ ପଣେ ହଳପତି । ତୀର୍ଥ ଗମନେ ବ୍ୟାଜମତି ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ : ୮୪ ଅ :)

କୌଣସି ପକ୍ଷ ନ ନେଇ ମୌନ ରହିଯାଆନ୍ତି । ଆଉ କେତେକ ଲୋକ ଅଛନ୍ତି ଦୁଇ ପକ୍ଷ ମଧ୍ୟରୁ କୌଣସି ଗୋଟିଏ ପକ୍ଷକୁ ସାହାଯ୍ୟ କରନ୍ତି । ଅନ୍ୟ ଏକ ପ୍ରକାର ଚରିତ୍ରର ଲୋକ ଅଛନ୍ତି, ଯେଉଁମାନେ କି ଅନ୍ୟାୟ କରୁଥିବା ପକ୍ଷକୁ ଜାଣି ଜାଣି ସାହାଯ୍ୟ କରନ୍ତି । ମନରେ ବମର୍ଷସୂଙ୍କ କଲ୍ୟାଣ କରିବାକୁ ଚେଷ୍ଟା ରହିଥାଏ, କିନ୍ତୁ କାର୍ଯ୍ୟତଃ ଅପର ପକ୍ଷକୁ ସାହାଯ୍ୟ କରନ୍ତି । ଏପରି ଅନେକ ନ୍ୟାୟପ୍ରିୟ ନିର୍ଭୀକ ପୁରୁଷ ଅଛନ୍ତି, ଯେଉଁମାନେ କି କୌଣସି ସମ୍ପର୍କସୂତ୍ର, ସ୍ନେହ-ମମତା, ଲୋଭ-ମୋହ ଅଥବା ଶୀଳ ସଂକୋଚ କୌଣସିଟିକୁ ଅପେକ୍ଷା ନ କରି ନିରପେକ୍ଷ ଭାବରେ ଯେଉଁ ପାଖରେ ଧର୍ମ ଥିବାର ଦେଖନ୍ତି, ସେହି ପକ୍ଷକୁ ସାହାଯ୍ୟ କରନ୍ତି । ସେହିମାନେ ହିଁ ନ୍ୟାୟ ପାଇଁ, ଧର୍ମ ପାଇଁ ସବୁକିଛି କରିପାରନ୍ତି ।

ସୂତ କହିଲେ--"ମୁନିଗଣ ! ଭଗବାନ୍ ଶାଲ୍ୱ ଓ ବିଦୂରଥ ଆଦିଙ୍କୁ ମାରି ଦ୍ୱାରକାପୁରୀକୁ ଆସିଲେ । ଏଠାକୁ ଆସି ସେ ଶୁଣିଲେ ପାଣ୍ଡବ ଦ୍ୟୂତକ୍ରୀଡ଼ାରେ ସମସ୍ତ ହାରି ବନକୁ ଯାଇଛନ୍ତି ଓ ସେଠାରେ ବନବାସୀଙ୍କ ଭଳି ଜୀବନଯାପନ କରୁଛନ୍ତି । ଏହି ସମାଚାର ଶୁଣିବା ମାତ୍ରେ ସେ ସଙ୍ଗେ ସଙ୍ଗେ ରଥରେ ବସି ପାଣ୍ଡବଙ୍କ ସହିତ ମିଳିତ ହେବା ପାଇଁ କାମ୍ୟକ ବନକୁ ଗଲେ । ସେଠାରେ ପାଣ୍ଡବମାନେ ରହୁଥିଲେ । ଭଗବାନ ପାଣ୍ଡବଙ୍କ ଏପରି ଦଶାରେ ଦୁଃଖ ପ୍ରକାଶ କଲେ ଓ ସେମାନଙ୍କୁ ବାରବର୍ଷ ଧର୍ମପୂର୍ବକ ବନବାସ ଓ ଏକବର୍ଷ ଅଜ୍ଞାତବାସ କରିବା ପାଇଁ ସମ୍ମତି ପ୍ରଦାନ କଲେ । ପାଣ୍ଡବଗଣ ବାରବର୍ଷ ବନବାସ କଲେ ଓ ଏକବର୍ଷ ବିରାଟରାଜାଙ୍କ ରାଜ ଭବନରେ ଅଜ୍ଞାତବାସ କଲେ । ଅଜ୍ଞାତବାସ ସମୟରେ କୌରବଗଣ ସେମାନଙ୍କୁ ବଡ଼ ତତ୍ପରତାର ସହିତ ଚାରିଆଡ଼େ ବୁଲି ଖୋଜୁଥିଲେ । କାରଣ ସେମାନେ ଜ୍ଞାତ ହେଲେ ପୁନଶ୍ଚ ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ କରିବେ । କିନ୍ତୁ ପାଣ୍ଡବ ଏପରି ବେଶ ବଦଳାଇ ରହୁଥିଲେ ଯେ, ସେମାନଙ୍କୁ କେହି ଚିହ୍ନି ପାରୁ ନଥିଲେ । ଯେତେବେଳେ କୌରବମାନେ ଯାଇ ବିରାଟ ରାଜାଙ୍କର ଗୋ ହରଣ କଲେ, ସେତେବେଳେ ବୃହନ୍ନଳା ନାମଧାରୀ ଅର୍ଜୁନ ବିରାଟଙ୍କ ପୁତ୍ର 'ଉତ୍ତରଙ୍କର' ସାରଥି କାର୍ଯ୍ୟ କରୁଥିଲେ । କୁମାର ଉତ୍ତର କୌରବଙ୍କର ବିରାଟ ସେନାବାହିନୀକୁ ଦେଖି ଡରିଗଲେ । ସେତେବେଳେ ଅର୍ଜୁନ ସମସ୍ତ କୌରବ ସୈନ୍ୟଙ୍କୁ ମୂର୍ଚ୍ଛିତ କରି ଗୋରୁ ଗାଈଙ୍କୁ ଛଡ଼ାଇ ଆଣିଥିଲେ । ସେତେବେଳେ ସମସ୍ତେ ଜାଣିଲେ ଯେ ବୃହନ୍ନଳା ହେଉଛନ୍ତି ସବ୍ୟସାଚୀ ଅର୍ଜୁନ । କୌରବପକ୍ଷ ମିଛରେ କହିଲେ—"ଏକବର୍ଷ ଅଜ୍ଞାତବାସ ଆରମ୍ଭରେ ହିଁ ଆମ୍ଭେ ଏମାନଙ୍କୁ ଚିହ୍ନି ପାରିଲୁ, ତେଣୁ ପାଣ୍ଡବମାନେ ପୁନଶ୍ଚ ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ କରିବା ଉଚିତ୍ ।" ପାଣ୍ଡବମାନେ କହିଲେ—ଆମ୍ଭେମାନେ ଏକବର୍ଷ ଅଜ୍ଞାତବାସ ରହିବାର କିଛିଦିନ ପରେ ଏମାନେ ଆମ୍ଭଙ୍କୁ ଚିହ୍ନିଲେ । ଏହା ଉପରେ

ତର୍କ ବଢ଼ିବାକୁ ଲାଗିଲା । ଦୁର୍ଯ୍ୟୋଧନ ସ୍ପଷ୍ଟରୂପେ କହିଦେଲା—"ବିନା ଯୁଦ୍ଧରେ ମୁଁ ସୂଚ୍ୟଗ୍ର ପରିମିତ ଭୂମି ଏମାନଙ୍କୁ ଦେବି ନାହିଁ ।" ମଝିରେ ଭଗବାନ୍ ଆସି ପହଞ୍ଚି ଉପରୁ ଲୋକ ଦେଖାଣିଆ ଭାବେ ଚାହିଁଲେ ଯେ, କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଯୁଦ୍ଧ ନ ହେବା ପାଇଁ ଅନେକ ଲୋକ ଚାହୁଁଛନ୍ତି । ସେ ନିଜେ ଧର୍ମରାଜଙ୍କର ଦୂତ ହୋଇ ଶେଷକୁ ହସ୍ତିନାପୁର ଗଲେ । ସେଠାରେ ଦୁର୍ଯ୍ୟୋଧନଙ୍କୁ ବହୁତ ବୁଝାଇଲେ; କିନ୍ତୁ ସେ ତାଙ୍କର କୌଣସି କଥାରେ ରାଜି ହେଲେ ନାହିଁ । ତାଙ୍କର ଦୃଢ଼ ଧାରଣା ଯେ, ଏହି ଶ୍ରୀକୃଷ୍ଣ ହେଉଛନ୍ତି ସବୁ ଅନର୍ଥର ମୂଳ । କାରଣ ଏହାଙ୍କ ବଳରେ ପାଣ୍ଡବ ଆଜି ବଳୀୟାନ୍ । ମୁଁ ଏହାଙ୍କୁ ଧରି କାରାଗାରରେ ବନ୍ଦୀକରି ରଖିଦେଲେ, ପାଣ୍ଡବମାନେ ଠିକ୍ ହୋଇଯାଆନ୍ତେ । ସେମାନେ ଆଉ ଯୁଦ୍ଧ କରିବାକୁ କହନ୍ତେ ନାହିଁ ।" କିନ୍ତୁ ସେ ଏପରି କରିପାରିଲେ ନାହିଁ ।

ଶ୍ରୀକୃଷ୍ଣ କେବଳ ବାହାରକୁ ଲୋକ ଦେଖାଣିଆ ଭାବେ ଏ ପାଖ ସେ ପାଖ ଧାଁ । ଧପଡ଼ କରୁଥିଲେ । ଲୋକ ଜାଣିବା ପାଇଁ ସନ୍ଧିର ପ୍ରସ୍ତାବ ବାଢ଼ୁଥିଲେ । ତାଙ୍କର ଆନ୍ତରିକ ଇଚ୍ଛା ଥିଲା ଯେ, ଯୁଦ୍ଧ ହେଉ, ଏହା ଦ୍ୱାରା ପୃଥ୍ୱୀର ପାପଭାର ଲାଘବ ହେବ । ଯଦି ତାଙ୍କର ଯୁଦ୍ଧ ହେବାପାଇଁ ଆନ୍ତରିକ ଇଚ୍ଛା ନ ଥାନ୍ତା, ତାହା ହେଲେ ଯୁଦ୍ଧ କଦାପି ହୋଇପାରି ନଥାନ୍ତା । ତାଙ୍କର ବିନା ଇଚ୍ଛାରେ ଗଛର ପତ୍ରଟିଏ ସୁଦ୍ଧା ହଲେ ନାହିଁ । ଯେତେବେଳେ ଦୁର୍ଯ୍ୟୋଧନ ସନ୍ଧି ପ୍ରସ୍ତାବକୁ ଟାଳିଦେଲା, ସେତେବେଳେ ପାଣ୍ଡବ ପକ୍ଷରୁ ଏହି ନିଷ୍ପତ୍ତି ହେଲା ଯେ, କ୍ଷତ୍ରିୟ ଧର୍ମର ଶରଣ ନିଆଯିବା ଉଚିତ୍ । ଯୁଦ୍ଧରେ ଶତ୍ରୁମାନଙ୍କୁ ମାରି ନିଜର ହୃତ ରାଜ୍ୟ ଫେରି ପାଇବା ଉଚିତ୍ । ଏଥିପାଇଁ ପାଣ୍ଡବ ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ନିଜ ପକ୍ଷର ରାଜାମାନଙ୍କୁ ନିମନ୍ତ୍ରଣ ପଠାଇଲେ । ଏଣେ ଦୁର୍ଯ୍ୟୋଧନ ପ୍ରଥମରୁ ହିଁ ସାବଧାନ ହୋଇ ଯାଇଥିଲା । ସେ ସମସ୍ତ ରାଜାଙ୍କୁ ତା ପକ୍ଷରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କରିଥିଲା । ଭଗବାନ ଦେଖିଲେ ଯେ ଯୁଦ୍ଧ କୌଣସି ପ୍ରକାରେ ବନ୍ଦ କରି ହେବ ନାହିଁ । ତେଣୁ ସେ ଦ୍ୱାରକା ଫେରି ଆସିଲେ । ନିୟମାନୁସାରେ ଅର୍ଜୁନ ଭଗବାନ ଶ୍ରୀକୃଷ୍ଣଙ୍କୁ ଯୁଦ୍ଧପାଇଁ ନିମନ୍ତ୍ରଣ କରିବାକୁ ଦ୍ୱାରକା ଗଲେ । ଏ କଥା ଯେତେବେଳେ ଶୁଣିଲା, ସେ ମଧ୍ୟ ଅତ୍ୟନ୍ତ ଦ୍ରୁତଗାମୀ ଅଶ୍ୱଯୁକ୍ତ ରଥରେ ବସି ଦ୍ୱାରକା ଗଲା ଓ ଅର୍ଜୁନଙ୍କ ପହଞ୍ଚିବା ପୂର୍ବରୁ ଯାଇ ପହଞ୍ଚିଲା । ସେତେବେଳେ ଭଗବାନ ନିଜ ଶୟନ ଗୃହରେ ଶୟନ କରିଥିଲେ । ଦୁର୍ଯ୍ୟୋଧନ ଯାଇ ତାଙ୍କର ମୁଣ୍ଡପଟକୁ ବସିପଡ଼ିଲା ଓ ଭଗବାନଙ୍କ ନିଦ୍ରା ଭଙ୍ଗ ହେବା ପର୍ଯ୍ୟନ୍ତ ଅପେକ୍ଷା କଲା । ସେହି ସମୟରେ ଅର୍ଜୁନ ମଧ୍ୟ ଯାଇ ସେଠାରେ ପହଞ୍ଚିଲେ । ସେ ଭଗବାନଙ୍କୁ ନିଦ୍ରିତ ଦେଖି ତାଙ୍କ ଚରଣ କମଳ ନିକଟରେ ବସିପଡ଼ିଲେ ଓ ଧୀରେ ଧୀରେ ପାଦ ଆଉଁସିବାକୁ ଲାଗିଲେ ।

ଭଗବାନ ବଡ଼ ଲେଉଟାଇ ଆଖି ମଳି ମଳି ଦେଖନ୍ତି ତ ତାଙ୍କ ପାଦ ପାଖରେ ଅର୍ଜୁନ ବସିଛନ୍ତି । ସେ ହସିହସି ଅର୍ଜୁନଙ୍କୁ ପଚାରିଲେ, ପାଣ୍ଡୁନନ୍ଦନ ! ତୁମେ କେତେବେଳେ ଆସିଲ ?''

ସଙ୍ଗେ ସଙ୍ଗେ ଦୁର୍ଯ୍ୟୋଧନ କହିଲା—''ବାସୁଦେବ ! ଦେଖ, ମୁଁ ପ୍ରଥମରୁ ଆସିଛି । ମୋ କଥା ପ୍ରଥମେ ଶୁଣନ୍ତୁ ।''

ଭଗବାନ ସେତେବେଳେ ପଛକୁ ବୁଲି ଦେଖିଲେ—ତାଙ୍କ ମୁଣ୍ଡ ପଟକୁ ଦୁର୍ଯ୍ୟୋଧନ ବସିଛି । ସେ ଶିଷ୍ଟ ସ୍ୱରରେ କହିଲେ—''ଆହା, ମହାରାଜ ଦୁର୍ଯ୍ୟୋଧନ ବି ଆସିଛନ୍ତି । ଧନ୍ୟବାଦ ! ଧନ୍ୟବାଦ ! କହନ୍ତୁ ମୁଁ କି ସେବା କରିବି ? ଆପଣ କେତେବେଳେ ଆସିଲେ, କାହିଁ ମୋତେ ତ କହିଲେ ନାହିଁ ? ଆପଣ ମୋତେ ଉଠାଇଲେ ନାହିଁ କାହିଁକି ?''

ଦୁର୍ଯ୍ୟୋଧନ ଅଭିମାନରେ କହିଲେ—''ଦେଖନ୍ତୁ ବାସୁଦେବ ! ଆପଣ ଧର୍ମ ସ୍ଥାପକ ଅଟନ୍ତି । ସର୍ବସ୍ୱଙ୍କ ସଦାଚାର ସମ୍ବନ୍ଧରେ ଆପଣ ଭଲରୂପେ ଜାଣନ୍ତି । ପାଣ୍ଡବଙ୍କ ଭଳି ଆମ୍ଭମାନଙ୍କର ମଧ୍ୟ ବନ୍ଧୁତା ଆପଣଙ୍କ ସହିତ ରହିଛି । ଆପଣଙ୍କ ଦୃଷ୍ଟିରେ ଆମେ ଦୁଇଜଣ ସମାନ । ଏକଥା ଠିକ୍ ନା ନୁହେଁ ?

ଭଗବାନ ହସି ହସି କହିଲେ—''କେବଳ ସମାନ କାହିଁକି, ଆପଣ ମୋର ଅଧିକ ପ୍ରିୟ । ଏବେ କ'ଣ ଆଜ୍ଞା କରୁଛନ୍ତି କରନ୍ତୁ ।''

ଦୁର୍ଯ୍ୟୋଧନ କହିଲ—''ମୋର ଆଜ୍ଞା କାହିଁକି, ଆପଣଙ୍କୁ ଧର୍ମ ପାଳନ କରିବା ଉଚିତ୍ । ଉଦାସୀନ ରାଜାଙ୍କ ପାଖକୁ ଦୁଇପକ୍ଷ ମଧ୍ୟରୁ ଯାହାର ନିମନ୍ତ୍ରଣ ଆଗ ଆସିଥାଏ, ସେ ସେହି ପକ୍ଷରେ ଯୋଗଦାନ କରି ଯୁଦ୍ଧ କରନ୍ତି । ଏକଥା ସଦାଚାର କି ନୁହେଁ ?''

ଭଗବାନ କହିଲେ—ହଁ, ତାହା ହିଁ ସଦାଚାର । ପ୍ରଥମ ନିମନ୍ତ୍ରଣକୁ ତ ସ୍ୱୀକାର କରିବା ଉଚିତ୍ ।''

ଦୁର୍ଯ୍ୟୋଧନ ହସି ହସି କହିଲା—''ବାସ୍, ମୁଁ ତାହା ହିଁ ଆପଣଙ୍କ ମୁଖରୁ ଶୁଣିବାକୁ ଚାହୁଁଥିଲି । ଦେଖନ୍ତୁ, ଅର୍ଜୁନ ଆସିବା ପୂର୍ବରୁ ମୁଁ ଆପଣଙ୍କ ପାଖକୁ ଆସିଛି; ତେଣୁ ଆପଣଙ୍କୁ ଆମ ପକ୍ଷରେ ରହି ଯୁଦ୍ଧ କରିବାକୁ ପଡ଼ିବ । ଅର୍ଜୁନ ତ ଏଠାରେ ବସିଛି, ଆପଣ ତାକୁ ପଚାରନ୍ତୁ ଯେ ପ୍ରଥମରୁ ମୁଁ ଆସିଛି କି ନାହିଁ ?''

ଭଗବାନ ହସି ହସି କହିଲେ—''ଆପଣଙ୍କୁ ମୁଁ ଯଦି ବିଶ୍ୱାସ ନ କରନ୍ତି ପିନା ମୁଁ ତାଙ୍କୁ ପଚାରନ୍ତି । ଆପଣ ତ କହୁଛନ୍ତି ଯେ ଆପଣ ଆଗ ଆସିଛନ୍ତି, ତାଙ୍କୁ ପୁଣି

ପଣ୍ଡୁରତ କାହିଁକି ? କହୁକୁ ମୁଁ ଉଠିବା ମାତ୍ରେ ସର୍ବପ୍ରଥମେ ତାଙ୍କୁ ଦେଖିଛି । ତେଣୁ ମୋ ଦୃଷ୍ଟିରେ ତ ଅର୍ଜୁନ ହିଁ ପ୍ରଥମରୁ ଆସିଛନ୍ତି ବୋଲି ବୁଝିବାକୁ ହେବ । ପୁନଶ୍ଚ ଆପଣଙ୍କର ସତ୍କାର କରିବା ତ ମୋର କର୍ତ୍ତବ୍ୟ ।"

ଦୁର୍ଯ୍ୟୋଧନ କହିଲେ—"ଆପଣ ତ ପକ୍ଷପାତ କରି କଥା କହୁଛନ୍ତି ।"

ଭଗବାନ ହସି ହସି କହିଲେ—"ଏଥିରେ ପକ୍ଷପାତ କରିବା କଥା କଣ ରହିଲା ? ନିଶ୍ଚୟମାନଙ୍କରେ ଆପଣ ପ୍ରଥମେ ଆସିଛନ୍ତି ଓ ଉଠିବା ମାତ୍ରେ ମୁଁ ସର୍ବପ୍ରଥମେ ଅର୍ଜୁନଙ୍କୁ ଦେଖିଛି ! ଏଥିପାଇଁ ମୁଁ ଉଭୟଙ୍କୁ ସାହାଯ୍ୟ କରିବା କର୍ତ୍ତବ୍ୟ । ମୋ ନିକଟରେ ବିଶାଳ ନାରାୟଣୀ ସେନା ଅଛନ୍ତି ଓ ଅନ୍ୟ ପକ୍ଷରେ ମୁଁ ଏକା ଅଛି । ମୁଁ ପ୍ରତିଜ୍ଞା କରୁଛି ମହାଭାରତ ଯୁଦ୍ଧରେ ଆଦୌ ଅସ୍ତ୍ରଶସ୍ତ୍ର ଧାରଣ କରିବି ନାହିଁ । କେବଳ ସମ୍ମତି ଦେବି । ଏ ଉଭୟ ମଧ୍ୟରୁ କାହାକୁ ନେବ ଆପତ୍ତି ନାହିଁ । ଅର୍ଜୁନ ସାନ, ସାନର ବସ୍ତୁ ଗ୍ରହଣ କରିବାର ଅଧିକାର ସର୍ବପ୍ରଥମ, ତେଣୁ ପ୍ରଥମେ ସେ କୁହନ୍ତୁ ଏ ଉଭୟଙ୍କ ମଧ୍ୟରୁ ସେ କାହାକୁ ନେବେ ?" ଏହା କହି ଭଗବାନ ଅର୍ଜୁନଙ୍କୁ କହିଲେ—"ଭାଇ ! ତୋର କାହାକୁ ନେବାକୁ ଇଚ୍ଛା ?"

ଅର୍ଜୁନ କହିଲେ—"ବାସୁଦେବ ! ମୁଁ ଆପଣଙ୍କୁ ହିଁ ନେବାକୁ ଚାହେଁ ।"

ଭଗବାନ କହିଲେ—"ଆରେ ! ତୋର କ'ଣ ମୁଣ୍ଡ ଖରାପ ହୋଇଗଲା ନା କ'ଣ ? ମୋଭଳି ନିରସ୍ତ୍ରକୁ ନେଇ ତୁ କ'ଣ କରିବୁ ?"

ଏହା ଶୁଣି ଦୁର୍ଯ୍ୟୋଧନ ପାଟିକରି କହିଲା—"ଦେଖ, ବାସୁଦେବ ! ଏବେ ତୁମେ ଆଉ ଅର୍ଜୁନଙ୍କୁ କିଛି କୁହନା, ସେ ତ ଆପଣଙ୍କୁ ନେବାକୁ କହି ସାରିଲେଣି । ଏବେ ଆପଣଙ୍କ ନାରାୟଣୀ ସେନାଙ୍କୁ ମୁଁ ନେବି । ମୋର ତ ତାହା ହିଁ ଇଚ୍ଛା ଥିଲା । ମୋର ସୈନ୍ୟ ଆବଶ୍ୟକ । ଆପଣଙ୍କୁ ଅର୍ଜୁନ ନେଇ ସାରିଛି ।"

ଅର୍ଜୁନ କହିଲେ—"ହଁ, ମୋର ସୈନ୍ୟ ଦରକାର ନାହିଁ, ମୋର ଶ୍ୟାମସୁନ୍ଦର ଲୋଡ଼ା । ଏକା ଶ୍ୟାମସୁନ୍ଦର ମୋ ପକ୍ଷରେ ରହନ୍ତୁ, ମୁଁ ଆଉ କିଛି ଚାହେଁ ନାହିଁ ।"

ଏହା ଶୁଣି ଦୁର୍ଯ୍ୟୋଧନ ଅତ୍ୟନ୍ତ ଆନନ୍ଦିତ ହେଲା । ତାହାପରେ ସେ ବଳଦେବଙ୍କ ପାଖକୁ ଗଲା । ବଳଦେବ ତାକୁ ଗଦାଚାଳନା ଶିଖାଇଥିଲେ । ତାଙ୍କପ୍ରତି ତାହାର ଅନୁରାଗ ବି ଥିଲା । ଏଥିପାଇଁ ସେ ତାଙ୍କଠାରୁ ମଧ୍ୟ ସାହାଯ୍ୟ ଚାହିଁଲା । ଏହା ଶୁଣି ବଳଦେବ କହିଲେ—"ଭାଇ ଦୁର୍ଯ୍ୟୋଧନ ! ମୋ ପାଇଁ ତୁମେ ଯେପରି, ପାଣ୍ଡବମାନେ ମଧ୍ୟ ସେହିପରି । ମୁଁ କାହାର ପକ୍ଷ ନେବାକୁ ଚାହୁଁନାହିଁ । ମୁଁ କୃଷ୍ଣକୁ ମଧ୍ୟ କହିଛି, ତୁ ପାଣ୍ଡବଙ୍କୁ କାହିଁକି ଏତେ ପକ୍ଷପାତ କରୁଛୁ ? ଯଦି ଚାହୁଁ, ଉଭୟ ପକ୍ଷର ସନ୍ଧି ସ୍ଥାପନା

କରପାରୁ । ଯଦି ନ ଯାଅ ତେବେ ନିରପେକ୍ଷ ରହ ଯା । କିନ୍ତୁ ସେ ମୋ କଥା ଶୁଣିଲା ନାହିଁ । ସେ ଯେତେବେଳେ ପାଣ୍ଡବଙ୍କ ପକ୍ଷକୁ ଗଲା, ସେତେବେଳେ ମୁଁ ତୁମ ପକ୍ଷରେ ରହି ଯୁଦ୍ଧ କରିବା ଶୋଭା ପାଇବ ନାହିଁ । ତେଣୁ ମୁଁ ପାଣ୍ଡବ ପକ୍ଷ ନେବି ନାହିଁ କି, ତୁମ ପକ୍ଷ ବି ନେବି ନାହିଁ । ନିରପେକ୍ଷ ରହିବି । ଦ୍ୱାରକାରେ ରହି ମୁଁ ସବୁ ଖବର ଶୁଣିବାକୁ ପାଇବି । ଏହା ଦ୍ୱାରା ମୋର କ୍ରୋଧ ଜାତ ହେବ । ତେଣୁ ମୁଁ ଦ୍ୱାରକାରେ ମଧ୍ୟ ରହିବି ନାହିଁ । ଯେ ପର୍ଯ୍ୟନ୍ତ ତୁମର ଯୁଦ୍ଧ ଚାଲିଥିବ, ସେ ପର୍ଯ୍ୟନ୍ତ ମୁଁ ତୀର୍ଥଯାତ୍ରା କରିବି ।

ସୂତ କହିଲେ—"ମୁନିଗଣ ! ଦୁର୍ଯ୍ୟୋଧନ ଏହା ଶୁଣି ପ୍ରସନ୍ନ ହେଲା । ସେ ବଳଦେବଙ୍କଠାରୁ ବିଦାୟନେଇ ଚାଲି ଆସିଲା । ଏଣେ ବଳଦେବ ମଧ୍ୟ ଶ୍ରୀକୃଷ୍ଣଙ୍କୁ କହି ଅନ୍ୟାନ୍ୟ ଯାଦବଙ୍କଠାରୁ ଅନୁମତି ନେଇ ତୀର୍ଥଯାତ୍ରା କଲେ । ଏହି ତୀର୍ଥଯାତ୍ରାରେ ସେ ଏହି ନୈମିଷାରଣ୍ୟରେ ମୋର ପିତାଙ୍କୁ ବଧକଲେ ମୋତେ ତାଙ୍କର ଆସନ ପ୍ରଦାନ କରିଥିଲେ ଓ ସେହି ସାହାଦ୍ରର ଆପଣମାନଙ୍କ ଆଜ୍ଞାରେ ସେ ବଲ୍ୱଲଙ୍କୁ ବଧ କରିଥିଲେ । ଏହି ପ୍ରସଙ୍ଗରେ ମୁଁ ପୂର୍ବରୁ କହିଛି । ଏବେ କଥା ପ୍ରସଙ୍ଗରେ ପୁନଃ ସଂକ୍ଷେପରେ ତାହା କହିବି । ଆପଣମାନଙ୍କ ସମ୍ମୁଖରେ ଏସବୁ ଘଟଣାତ ଘଟିଥିଲା । ତେଣୁ ଆପଣମାନେ ମଧ୍ୟ ତାହା ଜାଣିଛନ୍ତି ।

## ଛପ୍‌ପୟ୍

ଉଠ୍ୟୋ ଯୁଦ୍ଧ ଉଦ୍ୟୋଗ ପକ୍ଷ ପାଣ୍ଡବ ପ୍ରଭୁ ଲୀନ୍ୟୋ ।<br>
ଉଦାସୀନ ବନ ରହିଁ ଯହୀ ବଲ ନିଶ୍ଚୟ କୀନ୍ୟୋ ॥<br>
ତୀରଥ ବ୍ରତ କେ ବ୍ୟାଜ ଦ୍ୱାରକା ତେଁ ଚଲ ଦୀନ୍ୟେ ।<br>
ପହୁଁଚେ କ୍ଷେତ୍ର ପ୍ରଭାସ ତୃପ୍ତ ସୁର, ନର, ଋଷି କୀନ୍ୟେ ॥<br>
କରତ ପୁଣ୍ୟ ତୀରଥ ସକଲ, ନୈମିଷାର ଆୟେ ମୁଦିତ ।<br>
ସ୍ୱାଗତ ହିତ ଋଷି ଆପ ସବ, ଉଠେ ଅର୍ଘ୍ୟ ଦୀନ୍ୟୋ ଉଚିତ ॥

●

# ବଳଦେବଙ୍କର ତୀର୍ଥ ଯାତ୍ରା

ସ୍ନାତ୍ୱା ପ୍ରଭାସେ ସନ୍ତର୍ପ୍ୟ ଦେବର୍ଷିପିତୃମାନବାନ୍ ।
ସରସ୍ୱତୀଂ ପ୍ରତିସ୍ରୋତଂ ଯଯୌ ବ୍ରାହ୍ମଣସଂବୃତଃ ॥

(ଶ୍ରୀ ଭା: ୧୦ ସ୍କ. ୭୮ ଅ; ୧୮ ଶ୍ଳୋକ)

## ଛପ୍‌ପୟ

ପତାନ ମେଭରେ ଉଚେ ରହେ ବୈଠେ ଉଚାସନ ।
ବଲ ସୋଚେଂ ୟହ ଧୃଷ୍ଟ କରୁଁ ହୌଂ ଜାକୋ ଶାସନ ॥
ଚଢ୍ୟୋ ଅସ୍ତ୍ର ତେଂ ତୁରତ ଫିଟା କେ କଟେ୍‌ୟ ସିର କୁଁ ।
ଋଷି ବୋଲେ ହମ ଦୟୋ ବ୍ରହ୍ମ ଆସନ ବର ଇନକୁଁ ॥
ବଲ ବୋଲେ ୟହ ଅଘ ଭୟୋ, ଭବୀ ଅତ ବଲବାନ୍ ହୈ ।
ଉଗ୍ରଶ୍ରବା ବକ୍ତା ବନୈ, ଆତ୍ମା ପୁତ୍ର ସମାନ ହୈ ॥

ସମୟ ସମୟରେ ଏପରି ଅଘଟଣ ଘଟଣା ଘଟେ, ଯାହାକୁ ଆମେ ସ୍ୱପ୍ନରେ ସୁଦ୍ଧା ଭାବି ନଥାଉ । ସହସା ଦୈବକ୍ରମେ ପରିସ୍ଥିତିରେ ଏପରି ଯୋଗ ଆସି ପଡ଼େ ଯେ ନହେବା କଥା ହୋଇଯାଏ । ସାଧାରଣ ଲୋକଙ୍କ କଥାତ ଅଲଗା, ବଡ଼ ବଡ଼ ଅବତାରୀ ପୁରୁଷମାନଙ୍କ ଦ୍ୱାରା ଏପରି କାର୍ଯ୍ୟ ହୋଇଯାଏ ଯେ, ଯାହାକି ଲୌକିକ ଦୃଷ୍ଟିରେ ଅଶୁଭ ଘଟଣା । କିନ୍ତୁ ପରିସ୍ଥିତିରେ ପଡ଼ି ଏହା କରି ଯାଇଥାଏ । ଏହିସବୁ କଥାରୁ

---

* ସାଧୁଜନଙ୍କ ସଙ୍ଗ କରି । ବିଜୟ କଲେ ହଳଧାରୀ ।
ଯାଇ ମିଳିଲେ କୁରୁକ୍ଷେତ୍ରେ । ପର୍ଶୁରାମର କୀର୍ତ୍ତି ଯେତେ ॥
ସ୍ନାହାନ ସାନ୍ଧି ରାମ ହ୍ରଦେ । ଦେବତା-ପିତୃଙ୍କ ଆନନ୍ଦେ ॥
ଜଳତର୍ପଣ ତୋଷି ମନ । ବ୍ରାହ୍ମଣେ ଦେଇ ମହାଦାନ ।
ଗମନ୍ତ ସରସ୍ୱତୀ ତୀରେ । ସଙ୍ଗେ ସକଳ ଋଷିବରେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୮୪ ଅ.)

ଏହି ନିଷ୍କର୍ଷ ବାହାରେ ଯେ, ଭବିତବ୍ୟ ଅତ୍ୟନ୍ତ ବଳବାନ୍ । ତାହାକୁ କୌଣସି ପ୍ରକାରେ ନିବାରଣ କରାଯାଇ ନ ପାରେ ।

ସୂତ କହିଲେ—"ମୁନିଗଣ ! ବଳଦେବ ଦ୍ୱାରିକାଙ୍କୁ ବ୍ରାହ୍ମଣମାନଙ୍କ ସଙ୍ଗରେ ନେଇ ତୀର୍ଥଯାତ୍ରା କରିବାକୁ ବାହାରିଲେ । ସେ ସର୍ବପ୍ରଥମେ ପ୍ରଭାସ ତୀର୍ଥକୁ ଗଲେ । ସେଠାରେ ସେ ବିଧିବତ୍ ଦେବତା, ପିତୃପୁରୁଷ ଓ ଋଷିମାନଙ୍କର ତର୍ପଣ କଲେ । ତୀର୍ଥ ଶ୍ରାଦ୍ଧ କଲେ । ବ୍ରାହ୍ମଣ ଭୋଜନ କରାଇଲେ । ଯାଚକମାନଙ୍କୁ ଦାନ ଦକ୍ଷିଣା ଦେଲେ । ସେଠାରୁ ସେ ମାତୃତୀର୍ଥ, ଚନ୍ଦ୍ରସାର, ବିଦୁକୂପ, ସୁଦର୍ଶନତୀର୍ଥ, ବଦରୀନାରାୟଣର ବିଶାଳାପୁରୀ, ବ୍ରହ୍ମତୀର୍ଥ, ଚକ୍ରତୀର୍ଥ ସ୍ୱର୍ଗାରୋହଣ ତୀର୍ଥ, ବେଦବ୍ୟାସ, ସମ୍ୟାପ୍ରାସ ତୀର୍ଥ ଆଦି ଯାତ୍ରାକରି ସରସ୍ୱତୀ ଓ ଅଳକା ନନ୍ଦା ସଙ୍ଗମ କେଶବ ତୀର୍ଥକୁ ଆସି ସ୍ନାନ କଲେ । ତାହାପରେ ଗଙ୍ଗୋତ୍ରୀ ଯାତ୍ରା କଲେ । ଗଙ୍ଗା କୂଳେ କୂଳେ ବ୍ରହ୍ମାବର୍ତ୍ତ କ୍ଷେତ୍ର (ବିଠୁର୍)କୁ ଆସିଲେ । ମୁନିଗଣ ! ସେହି ସମୟରେ ସେଠାରେ ସହସ୍ର ବର୍ଷବ୍ୟାପୀ ଦୀର୍ଘସତ୍ର ଚାଲିଥିଲା । ସେହିଦିନ ମୋର ପୂଜନୀୟ ପିତା ଶ୍ରୀ ରୋମହର୍ଷଣ ଆପଣମାନଙ୍କୁ କଥା ଶୁଣାଉଥିଲେ । ଆପଣମାନଙ୍କୁ ଦର୍ଶନ କରିବା ନିମିତ୍ତ ଭଗବାନ୍ ସଙ୍କର୍ଷଣ ବ୍ରହ୍ମାବର୍ତ୍ତରୁ ଚାଲି ଚାଲି ଆସି ଏହି ନୈମିଷାରଣ୍ୟରେ ପଦାର୍ପଣ କଲେ । ଆପଣମାନେ ଯେତେବେଳେ ଶେଷାବତାର ବଳଦେବଙ୍କର ଶୁଭାଗମନ ବୃତ୍ତାନ୍ତ ଶୁଣିଲେ, ସେତେବେଳେ ଆପଣମାନେ ପରମ ପ୍ରମୁଦିତ ହେଲେ । ସେହି ସମୟରେ ବଳଦେବ ଯଜ୍ଞମଣ୍ଡପରେ ପ୍ରବେଶ କଲେ । ମୋର ପିତା ବ୍ୟାସାସନ ଉପରେ ଆପଣମାନଙ୍କ ଅପେକ୍ଷା ଉଚ୍ଚ ସ୍ଥାନରେ ବସି ପୁରାଣ କଥା ଶୁଣାଉଥିଲେ । ଆପଣମାନେ ତ ତାଙ୍କ ସମ୍ମାନ ନିମିତ୍ତ ଛିଡ଼ା ହୋଇ ପଡ଼ିଲେ, କିନ୍ତୁ ମୋର ପିତା ନିୟମାନୁସାରେ ଆସନରୁ ଉଠିଲେ ନାହିଁ । ଋଷିଗଣ ସଙ୍କର୍ଷଣଙ୍କର ଅଭ୍ୟର୍ଥନା କଲେ ଓ ବିଧିବତ୍ ତାଙ୍କର ପୂଜା କଲେ । ମୋର ପିତାଙ୍କୁ ଉଚ୍ଚ ବ୍ୟାସାସନ ଉପରେ ବସିଥିବାର ଦେଖି ବଳଦେବ ଭୀଷଣ ରାଗିଗଲେ । ସେ ଚିନ୍ତାକଲେ—"ଦେଖ ! ଏତେ ବଡ଼ ବଡ଼ ତପସ୍ୱୀ ମୋତେ ଦେଖି ସ୍ୱାଗତ କରିବା ପାଇଁ ନିଜର ସୌଜନ୍ୟତା ବଶତଃ ଉଠି ଠିଆ ହୋଇଗଲେ; କିନ୍ତୁ ଏହି ଲୋମହର୍ଷଣ ସୂତ ହୋଇ ମଧ୍ୟ ଚୁପ୍‌ଚାପ୍ ନିଜ ଆସନ ଉପରେ ବସି ରହିଲେ । ସେ ନିଜ ଆସନରେ ଠିଆ ହେଲେ ନାହିଁ କିମ୍ବା ମୋତେ ପ୍ରଣାମ ବି କଲେନାହିଁ । ନିଜର ବିଦ୍ୱତ୍ତା ଯୋଗୁଁ ନିଶ୍ଚିତ ଭାବରେ ଏହାର ଅଭିମାନ ହୋଇଯାଇଛି । ଏ ଭଗବାନ୍ ବେଦବ୍ୟାସଙ୍କର ଶିଷ୍ୟ ହୋଇ ମଧ୍ୟ ଏପରି ଅଶିଷ୍ଟ ଆଚରଣ କରୁଛି ଓ ଏହାଠାରେ ବିନୟ ଭାବ ବି ନାହିଁ । ଏହାକୁ ଦଣ୍ଡଦେବା ଉଚିତ ।"

ଏହା ଚିନ୍ତାକରି ସେ ଭୀଷଣ ରାଗିଗଲେ । ତୀର୍ଥଯାତ୍ରା ନିୟମରେ ଥିବାରୁ ସେ ଅସ୍ତ୍ର ଛାଡ଼ି ଦେଇଥିଲେ । ତଥାପି ଯୋଗ ଥିବାରୁ ସେ ପିତାଙ୍କୁ ବଧ କରିବାକୁ

ଉଦ୍ୟତ ହୋଇଗଲେ । ସେ ହାତରେ କୁଶଗୁଡ଼ିକୁ ମୁଠାକରି ଧରିଥିଲେ । ତନ୍ମଧ୍ୟରୁ ଏକ କୁଶରେ ବ୍ରହ୍ମାସ୍ତ୍ର ପ୍ରୟୋଗ କରି ସେ ପିତାଙ୍କ ଉପରକୁ ନିକ୍ଷେପ କଲେ । ଅମୋଘ ବ୍ରହ୍ମାସ୍ତ୍ରରେ ମୋର ପିତାଙ୍କ ଶରୀର ନିର୍ଜୀବ ହୋଇ ଆସନରୁ ତଳକୁ ଗଡ଼ିପଡ଼ିଲା । ସମସ୍ତ ମୁନି ଋଷି ଏହା ଦେଖି ହାହାକାର କରିବାକୁ ଲାଗିଲେ । ଋଷିଗଣ ବଳଦେବଙ୍କୁ କହିଲେ—"ପ୍ରଭୋ ! ଆପଣ ନିଜର ଅଜ୍ଞତା ଦୋଷତଃ ଏପରି ଅଧର୍ମ କାର୍ଯ୍ୟ କରି ପକାଇଲେ । ଆମେ ସମସ୍ତେ ଶ୍ରେଷ୍ଠ ହୋଇ ମଧ୍ୟ ଏହାଙ୍କୁ ବ୍ରହ୍ମାସନ ପ୍ରଦାନ କରିଥିଲୁ । ଯେଉଁପର୍ଯ୍ୟନ୍ତ ଆମର ଯଜ୍ଞ ସମାପ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ତାଙ୍କୁ ଆୟୁ ଓ ନିରୋଗତା ପ୍ରଦାନ କରିଥିଲୁ । ଏବେ ଆପଣ ଯଜ୍ଞ କରିବାରୁ ଅଧାରେ ଏହାଙ୍କୁ ମାରି ଆମ୍ଭମାନଙ୍କର ଯଜ୍ଞରେ ବିଘ୍ନ ପହଞ୍ଚାଇଲେ ।"

ବଳଦେବ କହିଲେ—"ମୁନିଗଣ ! ମୋର ଭୁଲ ହୋଇଥିଲା । ଏବେ ଆପଣମାନେ ଯେପରି ଆଜ୍ଞା ଦେବେ, ମୁଁ ସେହିପରି ପ୍ରାୟଶ୍ଚିତ୍ତ କରିବି । ଯଦି କହିବେ ଏହାଙ୍କୁ ବଞ୍ଚାଇ ଦେବି ।"

ଋଷିଗଣ କହିଲେ—"ମହାଭାଗ ! ବଞ୍ଚାଇ ଦେଲେ ଆପଣଙ୍କ ଅସ୍ତ୍ର ନିଷ୍ଫଳ ହୋଇଯିବ । ଆମ୍ଭେମାନେ ତାହା ଚାହୁଁନାହୁଁ । ଏପରି କାର୍ଯ୍ୟ ଆପଣ କରନ୍ତୁ ଯେପରି କି ଆପଣଙ୍କ ଅସ୍ତ୍ର ପ୍ରୟୋଗ ନିଷ୍ଫଳ ନହେବ ଓ ଆମ୍ଭମାନଙ୍କ ଯଜ୍ଞରେ ବିଘ୍ନ ନହେବ ।"

ବଳଦେବ ଏହାଶୁଣି କହିଲେ—"ମୁନିଗଣ ! ବେଦରେ କୁହାଯାଇଛି, ପିତାଙ୍କର ଆତ୍ମା ହିଁ ପୁତ୍ରରୂପେ ଉତ୍ପନ୍ନ ହୋଇଥାଏ । ତେଣୁ ଏହାଙ୍କ ପୁତ୍ର ଉଗ୍ରଶ୍ରବା ଏହାଙ୍କ ସ୍ଥାନରେ ବକ୍ତା ହୁଅନ୍ତୁ ଓ ସେ ଦୀର୍ଘାୟୁ, ଇନ୍ଦ୍ରିୟବଳ ତଥା ସମସ୍ତ ପ୍ରକାର ବଳରେ ବଳୀୟାନ୍ ହୁଅନ୍ତୁ । ଏହାଛଡ଼ା ଆପଣମାନେ ଆଉ ଯେଉଁ ପ୍ରାୟଶ୍ଚିତ୍ତ କରିବାକୁ ମୋତେ ଆଜ୍ଞା ଦେବେ, ତାହା ମୁଁ କରିବାକୁ ପ୍ରସ୍ତୁତ ଅଛି ।"

ଋଷିଗଣ କହିଲେ—"ଇଲ୍ୱଲ ନାମକ ଏକ ଦାନବର ପୁତ୍ର ବଲ୍ୱଲ ପ୍ରତି ପର୍ବରେ ଆସି ଆମ୍ଭମାନଙ୍କର ଯଜ୍ଞକୁ ଦୂଷିତ କରୁଅଛି । ଯଜ୍ଞ ସମୟରେ ଆକାଶରୁ ପୂଜ, ରକ୍ତ, ବିଷ୍ଠା, ମୂତ୍ର, ମଦ୍ୟ ଓ ମାଂସ ଆଦି ଅମେଧ୍ୟ ପଦାର୍ଥ ବର୍ଷା କରୁଛି । ଆପଣ ସେହି ପାପୀକୁ ଯଦି କୌଣସି ପ୍ରକାରେ ମାରି ଦିଅନ୍ତେ, ତାହାହେଲେ ତାହା ଆପଣଙ୍କର ଖୁବ୍ ବଡ଼ ସେବା ହୁଅନ୍ତା । ତାହାପରେ ଆପଣ ବାରମାସ ତୀର୍ଥ କରୁ ଆଅନ୍ତୁ । ଏହାଦ୍ୱାରା ଆପଣ ଦୋଷମୁକ୍ତ ହେବେ । ଆପଣ ତ ସହଜେ ଦୋଷମୁକ୍ତ । ଦୋଷ ଆପଣଙ୍କୁ ତ ସହଜରେ ସ୍ପର୍ଶକରି ପାରିବ ନାହିଁ । ଆପଣ ନିଷ୍ପାପ । ତଥାପି ଲୋକ ଶିକ୍ଷା ପାଇଁ ଆପଣ ଏହି ପ୍ରାୟଶ୍ଚିତ୍ତବ୍ରତ ଅନୁଷ୍ଠାନ କରନ୍ତୁ ।"

ବଳଦେବ କହିଲେ—"ତାହା ହେଲେ ଠିକ୍ ଅଛି, ଆପଣମାନେ ମୋତେ ଯେଉଁ ପ୍ରାୟଶ୍ଚିତ କରିବାକୁ କହିବେ, ମୁଁ ତାହା କରିବି ଏବଂ ଆପଣମାନଙ୍କର ପ୍ରିୟ କାର୍ଯ୍ୟ କରିବା ନିମିତ୍ତ ମୁଁ ଏହି ଯଜ୍ଞରେ ବିଘ୍ନ ଘଟାଉଥିବା ବଲ୍ୱଳକୁ ଅଧ ବଧ କରିବି ! ଏବେ ଏହି ମୃତ ଲୋମହର୍ଷଣଙ୍କୁ ବିଧିବିଧାନ ପୂର୍ବକ ସଂସ୍କାର କରନ୍ତୁ ଓ ଏହାଙ୍କ ପୁତ୍ର ମହାବୁଦ୍ଧିମାନ୍ ଉଗ୍ରଶ୍ରବଣମାନଙ୍କୁ ଆପଣମାନଙ୍କର ପୌରାଣିକ ବକ୍ତା (ବ୍ୟାସ) କରନ୍ତୁ ।"

ମୁନିଗଣ କହିଲେ—"ଦେବ ! ଆମ୍ଭେମାନେ ତାହା ହିଁ କରୁଛୁ । ଆପଣ ପର୍ବ ଆସିବା ପର୍ଯ୍ୟନ୍ତ ଏଠାରେ ରହନ୍ତୁ । ପର୍ବ ସମୟରେ ଯେତେବେଳେ ବଲ୍ୱଳ ଅସୁର ଆସିବ, ସେତେବେଳେ ଆପଣ ତାକୁ ବଧ କରି ତୀର୍ଥଯାତ୍ରା କରିବେ । ଏବେ ଆମ୍ଭେମାନେ ଏହି ମୃତ ଲୋମହର୍ଷଣଙ୍କର ସତ୍କାର ବିଧି-ପୂର୍ବକ କରାଇ ତାଙ୍କ ପୁତ୍ରକୁ ପୁରାଣବକ୍ତା କରୁଛୁ ।"

ସୂତ କହିଲେ—"ମୁନିଗଣ ! ପିତାଙ୍କ ସଂସ୍କାର ହେବାପରେ ଆପଣମାନେ ସମସ୍ତେ ମୋତେ ବକ୍ତାରୂପେ ବ୍ୟାସାସନ ପ୍ରଦାନ କଲେ । ସେହିଦିନଠାରୁ ମୁଁ ଯଥାସାଧ୍ୟ ଆପଣମାନଙ୍କର ସେବାକରି ଆସୁଛି । ଏହିପ୍ରକାର ତୀର୍ଥଯାତ୍ରା ପ୍ରସଙ୍ଗରେ ମୋର ପିତାଙ୍କର ବଳଦେବଙ୍କ ହାତରେ ମୃତ୍ୟୁ ହୋଇଥିବା କଥା ଆପଣମାନଙ୍କୁ ମୁଁ କହିଲି । ଏବେ ସେ ଯେପରି ବଲ୍ୱଳ ଅସୁରକୁ ବଧ କଲେ ଓ ତୀର୍ଥ ଯାତ୍ରା କଲେ, ତାହା ମୁଁ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନ କରିବ ଆପଣମାନେ ମନଯୋଗ ସହକାରେ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

ଶିର କଟେହୁଁ ସୋ କରୁଁ କତାଏବଂ ଅପର ପ୍ରାଇଶ୍ଚତ ।
ରଷି ବୋଲେ-ନିଜ ବଚନ କରେ ବଲ୍ୱଳ ପାପା ଇତ ॥
ତାକୁଁ ମାରେଂ ଅବହୁଁ ବରଷ ଭର ପୁନ ତୀରଥ କର ।
ଯଦ୍ୟପି ଆପ ବଶୁଦ୍ଧ ଶୁଦ୍ଧ ହୋବେଂ ଦ୍ୱିଜ ସୁଖ ହର ॥
ବଲ ବୋଲେ ହେ ବିପ୍ରଗନ, ବଲ୍ୱଳ କୋ ବଧ କରୁଙ୍ଗୋ ।
ଦ୍ୱିଜ ଦ୍ରୋହୀ କୁଁ ନଷ୍ଟ କର, ସବ ସଙ୍କଟ ଦୁଖ ହରୁଙ୍ଗୋ ॥



# ବଲ୍ୱଳ ବଧ ଓ ବଳଦେବଙ୍କର ପ୍ରାୟଶ୍ଚିତ

ତମାକୃଷ୍ୟ ହଳାଗ୍ରେଣ ବଲ୍ୱଳଂ ଗଗନେଚରମ୍ ।
ମୁଷଲେନାହନତ୍ କ୍ରୁଦ୍ଧୋ ମୂର୍ଦ୍ଧ୍ନି ବ୍ରହ୍ମଦ୍ରୁହଂ ବଲଃ ॥
ସୋଽପତଦ୍ ଭୁବି ନିର୍ଭିନ୍ନଲଲାଟୋଽସୃକ୍ ସମୁତ୍ସୃଜନ୍ ।
ମୁଞ୍ଚନ୍ନାର୍ତ୍ତସ୍ୱରଂ ଶୈଲୋ ଯଥା ବଜ୍ରହତୋଽରୁଣଃ ॥ *

(ଶ୍ରୀ ଭା : ୧୦ ସ୍କ : ୭୯ ଅ. ୫-୬ ଶ୍ଳୋକ)

ଛପ୍‌ପୟ

ବଳ୍ଲା ମୋତେ କରେଥା ରହେ କରୁ ଧନ ଯଦୁନନ୍ଦନ ।
କରେଥା ଉପଦ୍ରବ ଆଇ ପରବ ପେ ବଲ୍ୱଳ ଭୀଷନ ॥
ହଳ ତେଂ ଖେଂଚେଥା ଅସୁର ତାନ ମୂସର ସିର ମାରେଥା ।
କରତ ଭୟଂକର ଶବ୍ଦ ଗିରେଥା ପରଲୋକ ସିଧାରେଥା ॥
ଯୈାଂ ବଲ୍ୱଳକୁ ମାରକେଂ, ତୀରଥ କ୍ଷୁତ ବଲ ଚଲ ଦୟେ ।
ତବ ତକ କୌରବ ଖଲ ନୃପତ, ଭରତ ରନ ମହଁ ମର ଗୟେ ॥

ସବ ସମର୍ଥ ଈଶ୍ୱରକୋଟିର ପୁରୁଷଙ୍କର ଯେତେ କାର୍ଯ୍ୟ ହୁଏ, ସେ ସମସ୍ତ ଲୋକକଲ୍ୟାଣ ନିମିତ୍ତ ହିଁ ହୋଇଥାଏ । ସେ ସ୍ୱୟଂ ତ ପାପପୁଣ୍ୟରହିତ, ତଥାପି ଏହା

---

* ବଲ୍ୱଳଙ୍କର ମହାବେଗେ । ଆଚ୍ଛାଦି ଅମେଧ ବରଷେ ॥ × ×
ଗଗନେ ଦେଖି ତା ଶରୀର । ଲଙ୍ଗଳ ଅଗ୍ରେ ନିଳାମ୍ବର ॥
ଆକର୍ଷି ଆଣି ଯଜ୍ଞ ଦାଣ୍ଡେ । ମୁଷଳ ପ୍ରହାରଲେ ମୁଣ୍ଡେ ॥
ତକ୍ଷଣେ ହୋଇ ଖଣ୍ଡ ଖଣ୍ଡ । ତଳେ ପଡ଼ିଲା ମୃତପିଣ୍ଡ ॥
ରୁଧିର ଗଳେ ତା ବଦନେ । ପ୍ରାଣ ଛାଡ଼ିଲା ଘୋରସ୍ୱନେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ : ୮୫ ଅ.)

ଧର୍ମ, ଏହା ଅଧର୍ମ, ଏହାଙ୍କୁ ଜଣାଇବା ପାଇଁ ଏବଂ ଧର୍ମ ଆଚରଣ କରିବା ଆବଶ୍ୟକ ଓ ଯେଉଁଠି ଲୌକିକ ଦୃଷ୍ଟିରେ ଅଧର୍ମର ମାତ୍ରା ବଢ଼ିଗଲା, ସେଥିପାଇଁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ତାଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ ହୁଏ । ବାସ୍ତବରେ ତାଙ୍କୁ ଧର୍ମାଧର୍ମ ସ୍ପର୍ଶ କରେ ନାହିଁ । ତଥାପି ଲୋକାଗ୍ରହ ପାଇଁ ସେ ସେହିପରି ଆଚରଣ କରି ଥାଆନ୍ତି ।

ସୂତ କହିଲେ—"ମୁନିଗଣ ! ଭୁଲରେ ଯଦି କୌଣସି ପାପ ହୋଇଯାଏ, ତାହାହେଲେ ତୀର୍ଥ, ବ୍ରତ, ଉପବାସ ଓ ଦେବ,ଦ୍ୱିଜ, ଗୁରୁ ଓ ପୂଜ୍ୟ ବ୍ୟକ୍ତିଙ୍କର ସେବା ଦ୍ୱାରା ତଥା ଅନ୍ୟାନ୍ୟ ଶାସ୍ତ୍ରୀୟ ପ୍ରାୟଶ୍ଚିତ୍ତ ଦ୍ୱାରା ତାହାର ପରିମାର୍ଜନ କରାଯାଏ । ଭଗବାନ ସଙ୍କର୍ଷଣଙ୍କ ଦ୍ୱାରା ଯେତେବେଳେ ମୋର ପିତା ମୃତ୍ୟୁବରଣ କଲେ, ସେତେବେଳେ ଆପଣମାନେ ତାଙ୍କୁ ଦୁଇଟି କାର୍ଯ୍ୟ କରିବାକୁ କହିଥିଲେ । ଗୋଟିଏ ବଲ୍ୱଲ ବଧ ଓ ଅନ୍ୟଟି ତୀର୍ଥ ଭ୍ରମଣ କରି ବିଶୁଦ୍ଧ ହେବା । ସବୁଙ୍କ ବଳଦେବ ଏ ଦୁଇଟି ପରାମର୍ଶକୁ ସ୍ୱୀକାର କଲେ । ଏହା ପରେ ସେ ବଲ୍ୱଲକୁ ବଧ କରିବା ପାଇଁ କିଛି ଦିନ ନୈମିଷାରଣ୍ୟରେ ଅବସ୍ଥାନ କଲେ । ପର୍ବ ସମୟ ହେବାରୁ ଆକାଶରୁ ଧୂଳି ଉଡ଼ାଇ ବଲ୍ୱଲ ଆସିଗଲା । ସେ ଆସିବାମାତ୍ରେ ପ୍ରଚଣ୍ଡ ବେଗରେ ବାୟୁ ପ୍ରବାହିତ ହେବାକୁ ଲାଗିଲା । ସବୁଆଡ଼େ ଦୁର୍ଗନ୍ଧ ବ୍ୟାପିଗଲା । ସେ ଅମେଧ୍ୟ ବୃଷ୍ଟି କରିବାକୁ ଲାଗିଲା । ଆପଣମାନେ ଭଗବାନ ସଙ୍କର୍ଷଣଙ୍କୁ ତାକୁ ଦେଖାଇ ଦେଲେ । ପ୍ରଥମେ ଧୂଳି ଝଡ଼ରେ ତ ସେ ଦୃଶ୍ୟ ହେଉ ନ ଥିଲା । କିଛି ସମୟ ପରେ ହାତରେ ତ୍ରିଶୂଳ ଧରିଥିବାର ସେ ଭୟଙ୍କର ରାକ୍ଷସ ଦୃଶ୍ୟ ହେଲା । ବଳଦେବ ଚିନ୍ତା କଲେ—"ବିନା ହଳ ମୂଷଳରେ ଏହାକୁ ମାରି ହେବ ନାହିଁ ।" ତେଣୁ ସେ ନିଜର ହଳ ମୂଷଳକୁ ସ୍ମରଣ କଲେ । ସ୍ମରଣ କରିବାମାତ୍ରେ ସେହି ଦିବ୍ୟାସ୍ତ୍ର ଦୁଇଟି ଆସି ପହଞ୍ଚିଗଲା ।

ଏବେ ବଳଦେବ ସିଂହ ସମାନ ଗର୍ଜନ କରି ସେହି ଦ୍ୱିଜଦ୍ରୋହୀ ଅସୁର ଆଡ଼କୁ ନିଜର ହଳ ବଢ଼ାଇଲେ । ହଳର ଲୁହାକୁ ତାହାର ବେକରେ ପକାଇ ଯେତେବେଳେ ତାକୁ ଭିଡ଼ି ଅଣିଲେ, ସେ ଚିତ୍କାର କରି ବିବଶ ହୋଇ ତାକୁ ଟାଣିବାକୁ ଲାଗିଲା ! ସେ ଯେତେବେଳେ ନିକଟକୁ ଆସିଗଲା, ସେତେବେଳେ ବଳଦେବ କ୍ରୋଧରେ ତା ଶିରଉପରେ ମୂଷଳରେ ଏକ ପ୍ରହାର କଲେ । ମୂଷଳ ଆଘାତରେ ତାହାର ଖପୁରି ଉଡ଼ିଗଲା । ମୁଣ୍ଡରୁ ରକ୍ତ ବହିବାକୁ ଲାଗିଲା । ସେ ସଙ୍ଗେ ସଙ୍ଗେ ଭୂମିରେ ଢଳି ପଡ଼ିଲା । ଏହା ଦେଖି ଆପଣମାନେ ସନ୍ତୁଷ୍ଟ ହେଲେ ଓ ବଳଦେବଙ୍କୁ ସ୍ତୁତି କରିବାକୁ ଲାଗିଲେ । ବ୍ରାହ୍ମଣ ହୋଇ ଥିବାରୁ ଆପଣମାନେ ବଳଦେବଙ୍କୁ ଆଶୀର୍ବାଦ ଦେଲେ ଓ ବୃତ୍ରାସୁରକୁ ମାରି ଇନ୍ଦ୍ର ଯେପରି ଅଭିଷିକ୍ତ ହୋଇଥିଲେ, ସେହିପରି ଆପଣମାନେ ତାଙ୍କର ଅଭିଷେକ କଲେ । ପୁଷ୍ପମାଲ୍ୟାଦି ଅର୍ପଣ କରି ଆପଣମାନେ ବଳଦେବଙ୍କୁ ବହୁ ସମ୍ମାନିତ କଲେ ।

ଏହି ପ୍ରକାର ପୂଜିତ ଓ ସତ୍କୃତ ହୋଇ ବଳଦେବ ଆପଣମାନଙ୍କୁ ବି ପୂଜା କରିଥିଲେ ଓ ଉତ୍ତରାଖଣ୍ଡର ଶେଷ ତୀର୍ଥ ଅଭିମୁଖେ ଯାତ୍ରା କରିଥିଲେ । ସେ କୌଶକୀ ନଦୀ ପାର ହୋଇ କୂର୍ମାଚଳ ପର୍ବତଶ୍ରେଣୀରେ ଯାଇ ପହଞ୍ଚିଲେ । ସେଠାରେ କୌଶକୀ ସରଯୂ ନଦୀ ସହିତ ମିଳିତ ହୋଇଛି । ସେଠାରୁ ସେ ସରଯୂ ନଦୀ କୂଳେ କୂଳେ ମାନସରୋବର ଯାତ୍ରା ପର୍ଯ୍ୟନ୍ତ ଗଲେ । ସେହିଠାରୁ ହିଁ ଭୁବନପାବନୀ ସରଯୂ ନଦୀ ବାହାରି ଅଛି । ପୁନଶ୍ଚ ସେ ସରଯୂ କୂଳେ କୂଳେ ଯାଇ ଅଯୋଧ୍ୟା ହୋଇ ତୀର୍ଥରାଜ ପ୍ରୟାଗରେ ପହଞ୍ଚିଲେ । ଏଠାରେ ଗଙ୍ଗା ଯମୁନା ଓ ସରସ୍ୱତୀଙ୍କର ସଙ୍ଗମ ସ୍ଥଳ । ଏହି ତୀର୍ଥ ସମସ୍ତ ତୀର୍ଥମାନଙ୍କର ଚକ୍ରବର୍ତ୍ତୀ, ଏକଛତ୍ର ରାଜା ସ୍ୱରୂପ । ଏହାର ମାହାତ୍ମ୍ୟ ସବୁଠାରୁ ଅଧିକ । ବଳଦେବ ଏଠାରେ ସ୍ନାନ, ପୂଜନ, ତଥା ଦେବତା, ଋଷି ଓ ପିତୃପୁରୁଷଙ୍କର ଶ୍ରାଦ୍ଧ ତର୍ପଣ କରି ଅନ୍ୟକୁ ଗଲେ । ସେ କାଶୀତୀର୍ଥ ହୋଇ ଗୋମତୀ ନଦୀ ସମୀପସ୍ଥ ଗୋମତୀ ସ୍ନାନ କଲେ । ଏଠାରେ ଭଗବତୀ ଗୋମତୀ ଗଙ୍ଗାଙ୍କ ଗର୍ଭରେ ପ୍ରବେଶ କରି ଅଛନ୍ତି । ପୁନଶ୍ଚ ବିପାଶା, ଶୋଣଭଦ୍ର ଆଦି ପବିତ୍ର ନଦୀରେ ସେ ସ୍ନାନ ଦାନ କରି ପୁଲହାଶ୍ରମ—ହରିହର କ୍ଷେତ୍ରରେ ଯାଇ ପହଞ୍ଚିଲେ । ଏଠାରେ ଭଗବତୀ ଗଣ୍ଡକୀ ଗଙ୍ଗାଙ୍କ ସହିତ ମିଳିତ ହୋଇଛନ୍ତି । ଗଣ୍ଡକୀ ଓ ଗଙ୍ଗା ଜଳରେ ସ୍ନାନ କରି ସେ ଗୟା ଯାତ୍ରା କଲେ । ସେଠାକୁ ଯାଇ ପିତୃପୁରୁଷ ଆଦିଙ୍କର ତର୍ପଣ ପିଣ୍ଡଦାନ ଆଦି କଲେ । ଏହାପରେ ସେ ଗଙ୍ଗା କୂଳେ କୂଳେ ଗଙ୍ଗାସାଗର ଯାତ୍ରା କଲେ । ଏଠାରେ କପିଳ ମୁନିଙ୍କ ଆଶ୍ରମ । ଗଙ୍ଗା ସାଗରରେ ସ୍ନାନ କରି ସେ ଭଗବାନ କପିଳଙ୍କୁ ଦର୍ଶନ କଲେ । ଏହାପରେ ସମୁଦ୍ର କୂଳେ କୂଳେ ଜଗନ୍ନାଥ ପୁରୀରେ ଆସି ପହଞ୍ଚିଲେ । ସେ ଏହିପରି ଉତ୍ତରାଖଣ୍ଡ ଓ ପୂର୍ବାଞ୍ଚଳର ତୀର୍ଥ ଯାତ୍ରା କରି ଦକ୍ଷିଣର ତୀର୍ଥ ଦର୍ଶନ କରିବାକୁ ଯାତ୍ରା କଲେ । ଦକ୍ଷିଣର ମହେନ୍ଦ୍ର ଗିରି ଉପରକୁ ଯାଇ ସେ ଭଗବାନ ପରଶୁରାମଙ୍କର ଦର୍ଶନ କଲେ । ପୁନଶ୍ଚ ସମୁଦ୍ରର ସେହି ସ୍ଥାନକୁ ଗଲେ, ଯେଉଁଠାରେ ଗୋଦାବରୀ ଗଙ୍ଗାଙ୍କ ସହିତ ସାତଧାର ହୋଇ ଦକ୍ଷିଣ ସମୁଦ୍ରରେ ମିଶିଛନ୍ତି । ସେଠାରୁ ସେ ପମ୍ପା ସରୋବର ଯାତ୍ରା କଲେ । ତାହାପରେ ବେଣା, ଭୀମରଥୀ ଆଦି ପୁଣ୍ୟ ତୀର୍ଥରେ ସ୍ନାନକରି ସ୍ୱାମୀ କାର୍ତ୍ତିକେୟଙ୍କ ଦର୍ଶନ ନିମନ୍ତେ ଯାତ୍ରା କଲେ । ତାହାପରେ ଶ୍ରୀ ପର୍ବତ ଉପରକୁ ଯାଇ ଭଗବାନ ବୃଷଭ ଧ୍ୱଜଙ୍କୁ ଦର୍ଶନ କଲେ । ତାହାପରେ ଦ୍ରାବିଡ଼ ଦେଶକୁ ଯାଇ ପରମ ପବିତ୍ର ବେଙ୍କଟ ପର୍ବତର ତିରୁପତି ବାଲାଜୀଙ୍କୁ ଦର୍ଶନ କରି ଅନ୍ୟାନ୍ୟ ସୁପ୍ରସିଦ୍ଧ ଦିବ୍ୟ ଦେଶ ଦର୍ଶନରେ ଗଲେ । ସେ ଅଗ୍ରସର ହୋଇ ଶ୍ରୀରଙ୍ଗମ୍ କ୍ଷେତ୍ରରେ ଆସି ପହଞ୍ଚିଲେ । ଏଠାରେ ପରମ ପବିତ୍ର କାବେରୀ ନଦୀ ଓ ଏହା କୂଳରେ ଭଗବାନ ଶ୍ରୀରଙ୍ଗଙ୍କ ମନ୍ଦିର ଦର୍ଶନ କଲେ । ସେଠାରୁ ଯାଇ ଋଷଭ ପର୍ବତ ଉପରେ ହରିକ୍ଷେତ୍ର ଦର୍ଶନ କରି ମଦୁରାରେ ଯାଇ ପହଞ୍ଚିଲେ । ଏଠାରେ କାମାକ୍ଷୀ ଦେବୀଙ୍କର ଅତ୍ୟନ୍ତ ଭବ୍ୟ ମନ୍ଦିର

ଦର୍ଶନ କରି ସେଠାରେ କିଛି ଦିନ ଅବସ୍ଥାନ କଲେ ଓ କୃତମାଳା ନଦୀରେ ସ୍ନାନାଦି କଲେ । ତାହାପରେ ସେ କାମକୋଷ୍ଠି ତୀର୍ଥ କୁମ୍ଭକୋଣରେ ଯାଇ ପହଞ୍ଚି ଦର୍ଶନ କରି ଶ୍ରୀରାମେଶ୍ୱର ଯାତ୍ରା କଲେ । ସେଠାରେ ସେ ଦଶ ହଜାର ଗାଭୀ ବ୍ରାହ୍ମଣଙ୍କୁ ଦାନ କଲେ । ଧନୁକୋଟିରେ ଦୁଇ ସମୁଦ୍ରର ସଙ୍ଗମ ସ୍ଥଳରେ ସ୍ନାନ କରି ସେ ପୁନଶ୍ଚ ମଦୁରା ଫେରି ଆସିଲେ । ସେଠାରୁ କୃତମାଳା ଓ ତାମ୍ରପର୍ଣ୍ଣୀ ଯାଇ କୁଳାଚଳ ମଳୟ ପର୍ବତ ଯାତ୍ରା କଲେ । ମଳୟାଚଳରେ ଭଗବାନ ଅଗସ୍ତ୍ୟଙ୍କର ପାଦପଦ୍ମରେ ପ୍ରଣାମ କରି ଦକ୍ଷିଣ ସମୁଦ୍ରକୂଳସ୍ଥ କନ୍ୟାକୁମାରୀରେ ପହଞ୍ଚିଲେ । ଏହି ର ଆଗକୁ କେବଳ ସମୁଦ୍ର । ସେଠାରୁ ଫେରି ସେ ଅନନ୍ତଶୟନ ଭଗବାନଙ୍କୁ ଦର୍ଶନ କରିବାକୁ ଗଲେ । ସେଠାରୁ ପଦ୍ମନାଭ ଓ ଜନାର୍ଦ୍ଦନଙ୍କ ଦର୍ଶନ କରି "ପଞ୍ଚାପ୍ସରସ୍" ନାମକ ସରୋବରରେ ସ୍ନାନକରି ଅତ୍ୟନ୍ତ ପ୍ରସନ୍ନ ହେଲେ । ଅନନ୍ତଶୟନ ପଦ୍ମନାଭ କ୍ଷେତ୍ରରେ ସେ ବ୍ରାହ୍ମଣମାନଙ୍କୁ ଦଶହଜାର ଗାଭୀ ଦାନ କଲେ । ସେଠାରୁ ଯାଇ ସେ ଦକ୍ଷିଣର କେରଳ, ତ୍ରିଗର୍ତ୍ତ ଆଦି ଦେଶର ପବିତ୍ର ସ୍ଥାନମାନ ଦର୍ଶନ କରି ପୁଣ୍ୟ ନଦୀମାନଙ୍କରେ ସ୍ନାନକରି ଗୋକର୍ଣ୍ଣ ନାମକ ଶିବକ୍ଷେତ୍ରରେ ପହଞ୍ଚିଲେ । ଏଠାରେ ସଦାଶିବଙ୍କୁ ସାକ୍ଷାତ ଦର୍ଶନ କରି ଦ୍ୱୀପସ୍ଥ ଆର୍ଯ୍ୟାଦେବୀଙ୍କ ଦର୍ଶନ ପାଇଁ ଗଲେ । ସେଠାରୁ ଶୂର୍ପାରକ କ୍ଷେତ୍ରକୁ ଯାତ୍ରା କଲେ । ସେଠାରୁ ଯାଇ ତାପୀପୟୋଷ୍ଣୀ ଓ ନିର୍ବିନ୍ଧ୍ୟା ଆଦି ନଦୀରେ ସ୍ନାନକରି ଦଣ୍ଡକାରଣ୍ୟରେ ଯାଇ ପହଞ୍ଚିଲେ । ସେଠାରୁ ମହିଷ୍ମତୀ ପୁରୀ ମାହେଶ୍ୱର ଯାତ୍ରା କଲେ । ନର୍ମଦାରେ ସ୍ନାନକରି ସେ ପୁନଶ୍ଚ ଗୁର୍ଜର ପ୍ରାନ୍ତସ୍ଥ ପ୍ରଭାସପତ୍ତନ କ୍ଷେତ୍ରରେ ପହଞ୍ଚିଲେ । ଏହି ତୀର୍ଥଯାତ୍ରା ସମୟରେ ସେ ଶୁଣିଲେ ଯେ ମହାଭାରତ ଯୁଦ୍ଧ ଶେଷ ହୋଇ ଆସିଲାଣି । ଏବେ ଭୀମ ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ଗଦା ଯୁଦ୍ଧ ହେବ । ଏହାଶୁଣି ସେ ବାୟୁବେଗରେ କୁରୁକ୍ଷେତ୍ର ଯାତ୍ରା କଲେ । ସେ ସେଠାରେ ପହଞ୍ଚି ଉଭୟଙ୍କୁ ନିବୃତ୍ତ କରିବାକୁ ଚେଷ୍ଟା କଲେ କିନ୍ତୁ ଅଟକାଇ ପାରିଲେ ନାହିଁ । ଶେଷରେ ଭୀମସେନ ଯୁଦ୍ଧର ନିୟମଭଙ୍ଗ କରି ଦୁର୍ଯ୍ୟୋଧନର ଜଙ୍ଘ ଫାଡ଼ିଦେଲେ । ଏଥିରେ ବଳଦେବ ଅତ୍ୟନ୍ତ କୁପିତ ହେଲେ । ପରେ ଶ୍ରୀକୃଷ୍ଣ ତାଙ୍କୁ ବୁଝାଇ ଦେବାରୁ ଏହା ଦୈବର ବିଧାନ ବୁଝିପାରି ସେ ଦ୍ୱାରକାପୁରୀ ଫେରି ଆସିଲେ । ଏହିପରି ସେ ତୀର୍ଥଯାତ୍ରା ସମାପ୍ତ କରି ନିଜର ବନ୍ଧୁବାନ୍ଧବ ତଥା ପତ୍ନୀଙ୍କ ସହିତ ପୁନଶ୍ଚ ନୈମିଷାରଣ୍ୟ ଯାତ୍ରା କଲେ । ସେଠାକୁ ଯାଇ ସେ ଆପଣମାନଙ୍କୁ ନିବେଦନ କଲେ ଯେ, ମୁଁ ଆପଣମାନଙ୍କ ଆଜ୍ଞାନୁସାରେ ସମସ୍ତ ତୀର୍ଥଯାତ୍ରା କରି ଫେରି ଆସିଲି । ଏବେ ମୋପାଇଁ ଆପଣମାନେ ଯାହା ଆଜ୍ଞା କରିବେ କରନ୍ତୁ ।"

ଏହା ଶୁଣି ଆମ୍ଭେମାନେ ତାଙ୍କର ପ୍ରାୟଶ୍ଚିତାଦି କରାଇ ସମସ୍ତ ପ୍ରକାର ଯଜ୍ଞ କରାଇଲେ । ଯଜ୍ଞ ଶେଷରେ ବଳଦେବ କହିଲେ—"ଋଷିଗଣ ! ଆପଣମାନେ ମୋଦ୍ୱାରା

ଯଜ୍ଞ କରାଇଲେ; ଏବେ ମୁଁ ଏହି ଯଜ୍ଞର ଦକ୍ଷିଣାସ୍ୱରୂପ ଆପଣମାନଙ୍କୁ କ'ଣ ଦେବ ? ଆପଣମାନେ ଯାହା ଗ୍ରହଣ କରନ୍ତି ମୋଠାରୁ ଦକ୍ଷିଣା ମାଗି ନିଅନ୍ତୁ ।"

ଋଷିଗଣ କହିଲେ—"ଭଗବନ୍ ! ଆମ୍ଭେମାନେ ସୁନା ରୂପା ଆଦି ନାଶବାନ ଦକ୍ଷିଣା ନେଇ କ'ଣ କରିବୁ ? ଆମ୍ଭେମାନଙ୍କୁ ଆପଣ ବିଶୁଦ୍ଧ ବିଜ୍ଞାନର ଉପଦେଶ ଦିଅନ୍ତୁ । ଯେଉଁଥିରେ ଆମ୍ଭେମାନେ ଏହି ସଂସାର ସାଗରରୁ ସହଜରେ ପାର ହୋଇ ପାରିବୁ ।"

ଏହା ଶୁଣି ସଙ୍କର୍ଷଣାବତାର ଭଗବାନ ବଳଦେବ ଆପଣମାନଙ୍କୁ ବିଶୁଦ୍ଧ ବିଜ୍ଞାନମୟ ଉପଦେଶ ଦେଲେ । ଯେଥିରୁ ଆପଣମାନେ ନିଶ୍ଚିତ ହୋଇଗଲେ ଯେ, ଆତ୍ମାରେ ହିଁ ଏହି ସମସ୍ତ ଚରାଚର ଜଗତ ବ୍ୟାପ୍ତ । ଏହି ଜଗତର ଅଣୁପରମାଣୁରେ ସର୍ବଦା ଅନ୍ତର୍ଯାମୀ ରୂପରେ ଆତ୍ମା ବ୍ୟାପୀ ରହିଛନ୍ତି ।

ଏହି ପ୍ରକାର ବିଜ୍ଞାନମୟ ଦକ୍ଷିଣା ଦେଇ ବଳଦେବ ନିଜର ପତ୍ନୀ ରେବତୀଙ୍କ ସହିତ ଯଜ୍ଞାନ୍ତ ଅବଭୃଥ ସ୍ନାନ କଲେ । ଏହାପରେ ସେ ସୂତଙ୍କ ହତ୍ୟାର ପ୍ରାୟଶ୍ଚିତ କରି ସୁନ୍ଦର ବସ୍ତ୍ରାଭୂଷଣରେ ଅଳଂକୃତ ହୋଇ ନିଜର ବନ୍ଧୁବାନ୍ଧବଙ୍କ ଗହଣରେ ପତ୍ନୀଙ୍କ ସହିତ ଏପରି ସୁଶୋଭିତ ହୋଇଥିଲେ ଯେ, ସତେ ଯେପରି ତାରକାମାନଙ୍କ ମଧ୍ୟରେ ଚନ୍ଦ୍ରିକା ସହିତ ଚନ୍ଦ୍ରଦେବ ବିରାଜମାନ କରିଛନ୍ତି । ଯଜ୍ଞାଦି ଉଦ୍‌ଯାପନ କରି ଆପଣମାନଙ୍କଠାରୁ ଅନୁମତି ନେଇ ସେ ଦ୍ୱାରକାପୁରୀ ଫେରି ଆସିଲେ ଓ ସେଠାରେ ସୁଖରେ ରହିବାକୁ ଲାଗିଲେ । ମୁନିଗଣ ! ସେ ଈଶ୍ୱର ହୋଇ ମଧ୍ୟ ଏହିପରି ଲୋକଶିକ୍ଷା ନିମିତ୍ତ ପିତାଙ୍କ ବଧର ପ୍ରାୟଶ୍ଚିତ ଆପଣମାନଙ୍କ ଆଗରେ କରିଥିଲେ ।"

ଶୌନକ ପଚାରିଲେ—"ସୂତ ! ଆପଣ ବଳଦେବଙ୍କ ଚରିତ ଉପରେ ଆଉ କିଛି ଆମ୍ଭମାନଙ୍କୁ ଶୁଣାନ୍ତୁ ।"

ସୂତ କହିଲେ—"ମହାରାଜ ! ଯଦି ଗୋଟିଏ ଦୁଇଟି କମ୍ବା ଦଶ କୋଡ଼ିଏଟି ଚରିତ ହୋଇଥାଆନ୍ତା, ତାହାହେଲେ ମୁଁ ଶୁଣାନ୍ତି । ମହାବଳଶାଳୀ, ଅନନ୍ତ ଅପ୍ରମେୟ ଓ ମାୟାରେ ମନୁଷ୍ୟ ଶରୀର ଧାରଣ କରିଥିବା ଭଗବାନ ସଙ୍କର୍ଷଣଙ୍କର ଅଗଣିତ ଚରିତ । ଯାହାର କି ଶେଷ ନାହିଁ । ଚତୁର୍ବ୍ୟୁହରେ ଅହଂକାର ଅଧିଷ୍ଠାତ୍ରୀ ଦେବ ଏହି ସଙ୍କର୍ଷଣ ହିଁ ସମସ୍ତଙ୍କର ଆତ୍ମା । ଯେଉଁମାନେ ଏହାଙ୍କ ଚରିତକୁ ଶ୍ରଦ୍ଧାର ସହିତ ଶୁଣନ୍ତି, ସେମାନଙ୍କ ଉପରେ ଏହାଙ୍କ ସାନ ଭାଇ ଭଗବାନ ବାସୁଦେବ ପ୍ରସନ୍ନ ହୁଅନ୍ତି । ଯେଉଁମାନେ ସାୟଂ ପ୍ରାତଃ ଏହାଙ୍କର ନାମ ଓ ଗୁଣ ଗାନ କରନ୍ତି ସେମାନଙ୍କୁ ପରମପଦ ମିଳେ । ମୁଁ ଏହିପରି ସଂକ୍ଷେପରେ ଭଗବାନ ଶ୍ରୀକୃଷ୍ଣ ଓ ବଳଦେବଙ୍କ କଥା ଆପଣମାନଙ୍କୁ କହିଲି ।

ମୋର ଗୁରୁଦେବ ଭଗବାନ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ ଏହିପରି ଭାଗବତ ଶୁଣାଇ ଚୁପ୍ ହୋଇଗଲେ । ପରୀକ୍ଷିତ ସେ ଭାଗବତ କଥା ଶୁଣାଇ ଶୁଣାଇ ଛଅଦିନ ଶେଷ ହେବାକୁ କିଛି ସମୟ ବାକି ଥାଏ । ପରୀକ୍ଷିତ ବ୍ୟତିବ୍ୟସ୍ତ ହୋଇ ପଡ଼ୁଥାଆନ୍ତି ଯେ, ଭଗବାନ ଶୁକଦେବ କ'ଣ ଏତେ ଶୀଘ୍ର ଭାଗବତ କଥା ସମାପ୍ତ କରିଦେବେ ? ମୋର ତ ସଙ୍କଳ୍ପ ଅଛି ଭଗବାନଙ୍କ ଚରିତ ଶୁଣି ଶୁଣି ଏହି ନଶ୍ୱର ଶରୀରକୁ ଅନ୍ତ କରିଦେବି । ଭଗବାନଙ୍କ ନାମ ଓ ଗୁଣ ଶ୍ରବଣଠାରୁ ବଳି ମୃତ୍ୟୁ କାଳରେ ଅନ୍ୟ କୌଣସି ସରଳ, ସୁଗମ ଓ ସର୍ବୋପଯୋଗୀ ସାଧନ ନାହିଁ । ଏହିସବୁ କଥା ଚିନ୍ତାକରି ସେ କହିବାକୁ ଲାଗିଲେ—

ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ କହୁଛନ୍ତି—"ଭଗବନ୍ ! ଆପଣ କାହିଁକି ଚୁପ୍ ହୋଇଗଲେ ? ଏହା ତ ହେବାର କଥା ନୁହେଁ । ଭଗବାନଙ୍କର କୌଣସି ଚରିତ କ'ଣ ଆଉ ଶୁଣିବାକୁ ବାକିନାହିଁ ? ସମସ୍ତ କ'ଣ ସମାପ୍ତ ହୋଇ ଯାଇଛି ? ଭଗବାନଙ୍କ ଚରିତ ତ କେବେହେଲେ ସମାପ୍ତ ହେବାର ନୁହେଁ ? କାରଣ ତାହା ଅଗଣିତ, ତାହା ଶେଷ ହେବ କିପରି ? ମୋର ମୃତ୍ୟୁ ସମୟ ତ ନିକଟ ହୋଇ ଆସିଲାଣି, ତେଣୁ ସେହି ଅନନ୍ତଶାୟୀ ଅଚ୍ୟୁତ ଅବିନାଶୀ ଶ୍ରୀହରିଙ୍କର ଅନ୍ୟ କୌଣସି ପବିତ୍ର ଚରିତ ମୋତେ ଶୁଣାନ୍ତୁ ।"

ଏହା ଶୁଣି ଶ୍ରୀ ଶୁକଦେବ ହସି ହସି କହିଲେ—"ରାଜନ୍ ! ଆପଣ ବାରମ୍ବାର ସେହି ଗୋଟିଏ ପ୍ରଶ୍ନ କାହିଁକି ପଚାରୁଛନ୍ତି ? ଆପଣ ଭଗବାନଙ୍କ ଚରିତ ଶୁଣିବା ପାଇଁ କାହିଁକି ଏତେ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି ?"

ଏହା ଶୁଣି ଛଳ ଛଳ ନୟନ ହୋଇ ମହାରାଜ ପରୀକ୍ଷିତ କହିଲେ—"ବ୍ରହ୍ମନ୍ ! ଏ ଜୀବ ସୁଖ ବାଞ୍ଛା କରେ, ସୁଖର ଅନୁସନ୍ଧାନରେ ହିଁ ସେ ଭ୍ରମି ବୁଲେ । ସେ କାହାକୁ ଭଲ ପାଇବାକୁ ଚାହେଁ । ପ୍ରେମପାଇଁ ବ୍ୟାକୁଳ ହୁଏ । କୌଣସି ଅତି ପ୍ରିୟ ଲୋକକୁ ଆଲିଙ୍ଗନ କରିବାକୁ ଚାହେଁ, ବ୍ୟସ୍ତ ହୁଏ, କିନ୍ତୁ ସଂସାରରେ ସର୍ବତ୍ର ସ୍ୱାର୍ଥର ଲୀଳା । ଯିଏ ମିଳିବାପାଇଁ ଚାହେଁ, ସେ ତା ସ୍ୱାର୍ଥ ପାଇଁ । ଯିଏ ବସ୍ତୁ ପ୍ରତି ଅତି ଆକୃଷ୍ଟ, ଯାହା ମନରେ କାମନା ବାସନା ଭରି ରହିଛି, ସେ କଦାପି ଶୁଦ୍ଧ ପ୍ରେମ କରି ନପାରେ । ପ୍ରିୟଲୋକର ମଧୁର ବାଣୀ ଶୁଣିଲେ ଏ କର୍ଣ୍ଣ ତୃପ୍ତ ହୁଏ । କିନ୍ତୁ ନିତ୍ୟ ସୁଖ ସମ୍ବନ୍ଧୀୟ କଥା ସହଜରେ ଶୁଣିବାକୁ ମିଳେ ନାହିଁ । ସର୍ବଦା ପରଚର୍ଚ୍ଚା ଓ ପର ନିନ୍ଦା ଶୁଣିବାକୁ ମିଳେ । ଯେଉଁଠି ଦୁଇଜଣ ବସି କଥାବାର୍ତ୍ତା ହେଉଥାଆନ୍ତି, ତାହା କେବଳ ଏଣୁ ତେଣୁ ଆ, ଜା, ଚର୍ଚ୍ଚା । ସେ ବ୍ୟକ୍ତି ଏପରି କଲା ଏ ବ୍ୟକ୍ତି ସେପରି କଲା ଏହିପରି ଅନ୍ୟର ଦୋଷାଦୋଷ ଚର୍ଚ୍ଚାରେ ସମୟ କଟେ । ଏଥିରେ ବିଶୁଦ୍ଧ ପ୍ରେମର କ୍ଷୁଧା ମେଣ୍ଟେ ନାହିଁ । ବ୍ୟକ୍ତିର ମନରେ କ୍ଷୋଭ ଜାତ ହୁଏ । ତାକୁ ସଂସାର ଶୂନ୍ୟ ଜଣାପଡ଼େ ।

ଯେତେବେଳେ ଜୀବ ନାନା ପ୍ରକାରର ବିଷୟରୁ ସୁଖକୁ ଖୋଜି ଖୋଜି ଥକି ପଡ଼େ ଓ ଯେତେବେଳେ ସାରବସ୍ତୁ ଶ୍ରବଣ କରିବାର ଇଚ୍ଛା ହୁଏ, ସେତେବେଳେ ସେହି ବ୍ୟକ୍ତି ଆଗରେ ଭଗବାନଙ୍କର କିମ୍ବା ଭକ୍ତଙ୍କର ଚରିତ୍ର ଶୁଣାଇବାକୁ ହୁଏ । ସେ ଏହି ଚରିତ୍ର ଯେତେ ଶୁଣେ, ସେଥିରେ ତୃପ୍ତ ନ ହୋଇ ଅଧିକ ଶୁଣିବାକୁ ଇଚ୍ଛା କରେ । ବାରମ୍ବାର ଶୁଣୁଥିଲେ ମଧ୍ୟ ସେ ସେଥିରୁ ନିବୃତ୍ତ ହୋଇପାରେ ନାହିଁ । ପ୍ରଭୋ ! ଗୋବିନ୍ଦଙ୍କର ଗୁଣଗାନରେ ହିଁ ବାଣୀର ସଫଳତା ହୁଏ । ହସ୍ତର ସଫଳତା ଭଗବାନଙ୍କର ସେବା କରିବାରେ ହୁଏ । ଯେଉଁ ହାତ ଭଗବାନଙ୍କ ସେବା କାର୍ଯ୍ୟ କରେ, ସେହି ହାତ ହିଁ ବାସ୍ତବରେ ଯଥାର୍ଥ । ମନର ସଫଳତା ମନମୋହନଙ୍କର ମାଧୁର୍ଯ୍ୟ ମନନ ଦ୍ୱାରା ହୁଏ । ଯେଉଁ ବ୍ୟକ୍ତି ମାଧବଙ୍କର ମନୋହର ରୂପ ସ୍ମରଣ କରେ, ତାହାର ମନସ୍ୱୀ ହେବା ସଫଳ ହୁଏ । ସେହି ଲୋକର କର୍ଣ୍ଣକୁହର କମନୀୟ ଯିଏ କୃଷ୍ଣ କଥାରସ ଶ୍ରବଣ କରେ । ସେହି ବ୍ୟକ୍ତିର ଶିର ସଫଳ, ଯିଏ ଭଗବାନଙ୍କ ଚଳ ପ୍ରତିମା ସ୍ୱରୂପ ସାଧୁସନ୍ଥ ଓ ଅଚଳ ପ୍ରତିମା ଅର୍ଚ୍ଚା ବିଗ୍ରହ ଆଦିଙ୍କୁ ପ୍ରଣାମ କରେ । ନେତ୍ରର ସଫଳତା ଭଗବାନ୍ ତଥା ଭଗବଦ୍ ଭକ୍ତଙ୍କ ଦର୍ଶନ କରିବାରେ ହୁଏ । ଯାହା ଅଙ୍ଗରେ ଭଗବାନଙ୍କର ଚରଣାମୃତ ଓ ତାଙ୍କ ଭକ୍ତଙ୍କର ଚରଣାମୃତ ପଡ଼ିଯାଏ, ତାହାର ଅଙ୍ଗ, ସଫଳ (ପବିତ୍ର) ହୋଇଯାଏ । ତେଣୁ ପ୍ରଭୋ ! ଆପଣ କୃଷ୍ଣ କଥାରେ ମୋ କର୍ଣ୍ଣକୁ ଭରି ଦିଅନ୍ତୁ । ମୋତେ ଭଗବାନଙ୍କର ଅଦ୍ଭୁତ ସୁଖପ୍ରଦ ଚରିତ୍ର ଶୁଣାନ୍ତୁ ।"

ସୂତ କହିଲେ—"ମୁନିଗଣ ! ମହାରାଜ ପରୀକ୍ଷିତ ଯେତେବେଳେ ଭଗବାନଙ୍କ ଚରିତ୍ର ଶୁଣିବା ପାଇଁ ନିଜର ଅତ୍ୟାଧିକ ଆଗ୍ରହ ଓ ଉତ୍କଣ୍ଠା ପ୍ରକାଶ କଲେ, ସେତେବେଳେ ଶୁକଦେବ ପରମ ପ୍ରମୁଦିତ ହୋଇ ସଙ୍ଗେ ସଙ୍ଗେ ସୁଦାମ ଚରିତ୍ର ପରୀକ୍ଷିତଙ୍କ ଆଗରେ କହିବାକୁ ମନସ୍ଥ କଲେ । ସୁଦାମ ଚରିତ ସ୍ମରଣ ଆସିବା ମାତ୍ରେ ତାଙ୍କ ଶରୀର ରୋମାଞ୍ଚିତ ହୋଇଉଠିଲା । ତାଙ୍କର ହୃଦୟ ଭଗବାନ ଶ୍ରୀକୃଷ୍ଣଙ୍କଠାରେ ତଲ୍ଲୀନ ହୋଇଗଲା । କିଛି ସମୟ ପରେ ବାହ୍ୟ ସ୍ମୃତି ଫେରି ଆସିବାରୁ ସେ ସୁଦାମା ଚରିତ୍ର କହିବାକୁ ଆରମ୍ଭ କଲେ । ଏବେ ମୋର ଗୁରୁଦେବ ଭଗବାନ ଶୁକଦେବ ଯେପରି ମହାରାଜ ପରୀକ୍ଷିତଙ୍କ ଆଗରେ ସୁଦାମା ଚରିତ୍ର କହିଥିଲେ, । ତାହା ମୁଁ ଏବେ ପରବର୍ତ୍ତୀ ଅଧ୍ୟାୟରେ ଆପଣମାନଙ୍କୁ କହିବି । ଆପଣମାନେ ତାହା ମନଧ୍ୟାନ ଦେଇ ଶ୍ରବଣ କରନ୍ତୁ ।"

## ଛପ୍ପୟ

ଭୀମ ସୁୟୋଧନ ଲଡ଼େଂ ନ ବଲ ବଳ ବହୁତ ଲଗାୟୋ ।
କିନ୍ତୁ ଉରୁ ହତ କରୀ ସୁୟୋଧନ ସ୍ୱରଗ ସିଧାୟୋ ।।

ନୈମିଷାର ପୁନ ଆଉ ଯଜ୍ଞ ଚଳଦାଉ କୀନ୍ହେଂ ।
ଯଜ୍ଞ ଦକ୍ଷିଣା ରୂପ ଜ୍ଞାନ ତୁମ ସବକୁଁ ଦୀନ୍ହେଂ ॥
ସୋ ବଧ ବଲ୍ୱଳ କୋ କରେୟା, ସଂକରଷନ ଅବତାର ବଲ ।
ସୁନହୁ ସୁଦାମା ଚରିତ ଅବ, ପରମ ସୁଖଦ ଅତିଶୟ ବିମଲ ॥

—o—

# ସୁଦାମା ଚରିତ

କୃଷ୍ଣସ୍ୟାସୀତ୍ ସଖା କଶ୍ଚିଦ୍ ବ୍ରାହ୍ମଣୋ ବ୍ରହ୍ମବିତ୍ତମଃ ।
ବିରକ୍ତ ଇନ୍ଦ୍ରିୟାର୍ଥେଷୁ ପ୍ରଶାନ୍ତାତ୍ମା ଜିତେନ୍ଦ୍ରିୟଃ ॥
ଯଦୃଚ୍ଛୟୋପପନ୍ନେନ ବର୍ତ୍ତମାନୋ ଗୃହାଶ୍ରମୀ ।
ତସ୍ୟ ଭାର୍ଯ୍ୟା କୁଚୈଲସ୍ୟ କ୍ଷୁତ୍କ୍ଷାମା ଚ ତଥାବିଧା ॥ *

( ଶ୍ରୀ: ଭା: ୧୦ ସ୍କ. ୮୦ ଅ. ୬-୭ ଶ୍ଳୋକ )

---

* ଶୁଣ ହେ ଅଭିମନ୍ୟୁବଳା । ପୂର୍ବେ ଦରିଦ୍ର ବିପ୍ର ଥିଲା ॥
ବିଦ୍ୟାପଠନେ ଗୁରୁଘରେ । ଗୋବିନ୍ଦ ଅବନ୍ତୀ ନଗରେ ॥
ସେ ବିପ୍ର ବେଦବିଦ୍ୟା ମଧ୍ୟେ । ଉତ୍ତମ ଦ୍ୱିଜେନ୍ଦ୍ରଗଣ ସାଧ୍ୟେ ॥
ଗୃହସ୍ଥ ଆଶ୍ରମେ ବସଇ । ସ୍ୱଧର୍ମେ ଯେତେ ଧନ ପାଇ ॥
ସେ ଧନେ ପୋଷଇ ଜୀବନ । ନିରତେ କୃଷ୍ଣପାଦେ ମନ ॥
କୁତ୍ସିତ ବସ୍ତ୍ର ପରିଧାନ । କ୍ଷୁଧାରେ ଶରୀର ତା କ୍ଷୀଣ ॥
ତାର କାମିନୀ ପତିବ୍ରତା । ନିରତେ ସ୍ୱାମୀ ପାଦେ ଚିନ୍ତା ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ମ ସ୍କ. ୮୬ ଅ.)

## ଛପ୍‌ପୟ

ହରି ସହପାଠୀ ସଖା ସୁଦାମା ରହେ ବିପ୍ରବର ।
ମଳିନ ବସନ ତନ କ୍ଷୀନ ଦୀନ ଭିକ୍ଷୁକ ଫୁଟୋ ଘର ।।
ପତନୀ ଜନକୀ ଲଟୀ ଦୁବଳୀ କରୁନା ମୁରତ ।
ହରି-ପାଳୀ ଘର ହାଲୀ କରୀ ଜନକୀ ଅତ ସୁରଗତ ।।
ଭିକ୍ଷାମେଂ ଜୋ କଛୁ ମିଲୈ, ତା ତେ କର ନରବାହ ନିତ ।
ହରି ସୁମିରନ ଦୋଉ କରତ, କହୁଁ ଅଧର୍ମ ମହୁଁ ଦେହୁଁ ଚିତ ।।

ଧନୀ ହେବାରେ ଦୁଃଖ ଛଡ଼ା ସୁଖ ନାହିଁ ଓ ନିର୍ଧନ ହେବାରେ ପ୍ରକୃତ ସୁଖ । କିନ୍ତୁ ନିର୍ଧନତା ଯଦି ଆବଶ୍ୟକତାରୁ ଅଧିକ ହୋଇଯାଏ, ତାହାହେଲେ ପାପୀର ପେଟ ଭରଣାର ଚିନ୍ତା ଆଠ ପ୍ରହର ଲାଗିରହେ । ଏପରି ଦରିଦ୍ରତାରୁ ବଳି ସଂସାରରେ ଅନ୍ୟ କୌଣସି ଦୁଃଖ ନାହିଁ । ମନୁଷ୍ୟ ସବୁକିଛୁ ସହ୍ୟକରିପାରେ, କିନ୍ତୁ ସେ ଅଧିକକାଳ କ୍ଷୁଧା ସହ୍ୟ କରିପାରେ ନାହିଁ । କ୍ଷୁଧାକୁ "କଷ୍ଟାତ୍‌କଷ୍ଟତ୍ର" ବୋଲି କୁହାଯାଇଛି । ନିଜର ପେଟକୁ କୌଣସିମତେ ସମ୍ଭାଳି ନେଇ ହୁଏ; କିନ୍ତୁ ଯଦି ଛୋଟ ଛୋଟ ପିଲା ଭୋକ ଯୋଗୁଁ ଆଉଟୁ ପାଉଟୁ ହେଉଥାଆନ୍ତି, ତାହା ହେଲେ ମନୁଷ୍ୟ ଯେତେ ଧୈର୍ଯ୍ୟବାନ ହୋଇଥିଲେ ହେଁ ତାହାର ଧୈର୍ଯ୍ୟ ତୁଟିଯାଏ । ସେତେବେଳେ ସେ ହତାଶ ହୋଇ କହୁଥାଏ "ହାୟ ! ଭଗବାନଙ୍କର ଟିକିଏ ହେଲେ ଦୟା ନାହିଁ । ଏହି ଅବସ୍ଥାରେ ମନୁଷ୍ୟର ଧର୍ମ କର୍ମ ଅତୁଟ ରଖିବା, ମନକୁ ଅବିଚଳିତ ରଖିବା, ଅଧର୍ମ କାର୍ଯ୍ୟପାଇଁ ପ୍ରବୃତ୍ତ ନ ହେବା ଅତ୍ୟନ୍ତ ପୁଣ୍ୟ କାର୍ଯ୍ୟ । ଯେଉଁ ବ୍ୟକ୍ତି ପୂର୍ବ ଜନ୍ମରେ ଖୁବ୍ ପୁଣ୍ୟକାର୍ଯ୍ୟ ନ କରିଥାଏ, ସେ ଏପରି ଲୋକୋତ୍ତର (ଅଲୌକିକ) ସାହସ କରି ପାରେ ନାହିଁ । ଦାରିଦ୍ର୍ୟର ଶେଷସୀମାରେ ପହଞ୍ଚିଲେ ମନୁଷ୍ୟର ମନ ବିଚଳିତ ହୋଇଯାଏ । ଯାହାର ମନ ଏଥିରେ ବିଚଳିତ ନହୁଏ, ସେ ଶ୍ରୀକୃଷ୍ଣଙ୍କ ସଖା, ସୁହୃଦ୍ ଓ ଶ୍ରୀକୃଷ୍ଣଙ୍କ ସମତୁଲ୍ୟ ଅଟେ । ସେ ଭଗବାନଙ୍କ ଭାଇ ସଦୃଶ ।

ସୂତ କହିଲେ—"ମୁନିଗଣ ! ଯେତେବେଳେ ମହାରାଜ ପରୀକ୍ଷିତ ଶୁକଦେବଙ୍କୁ ଅନ୍ୟ ଭଗବଦ୍ଭକ୍ତ ଚରିତ ଶୁଣାଇବା ପାଇଁ କହିଲେ, ସେତେବେଳେ ସେ ଅତି ମଧୁର ପ୍ରେମର ପୁଣ୍ୟପ୍ରତୀକ ସୁଦାମା ଚରିତ କହିବାକୁ ଆରମ୍ଭ କଲେ । ସେହି ଚରିତ ମୁଁ ଆପଣମାନଙ୍କୁ କହୁଛି ।"

କାଥିଆବାଡ଼ ପ୍ରାନ୍ତରେ ଜୁନାଗଡ଼ ଏକ ପ୍ରସିଦ୍ଧ ସ୍ଥାନ । ସେଠାରେ ସୁଦାମା ନାମକ ଜଣେ ଦରିଦ୍ର ବ୍ରାହ୍ମଣ ବାସ କରୁଥିଲେ । ସେ ଅତ୍ୟନ୍ତ ସଂଯମୀ, ସୁଶୀଳ,

ସଦାଗୃଷ୍ଟ, ସତ୍ୟବାଦୀ, ସରଳ ଓ ସାଧୁସେବୀ ଥିଲେ । ସେ ବ୍ରହ୍ମଜ୍ଞାନୀ ଥିଲେ । ସଂସାରର ସୁନ୍ଦରରୁ ସୁନ୍ଦର ବସ୍ତୁ ତାଙ୍କୁ ଆକର୍ଷିତ କରିପାରୁ ନଥିଲା । ଇନ୍ଦ୍ରିୟକୁ ସୁଖ ପ୍ରଦାନକାରୀ ଯେତେ ବିଷୟ ରହିଛି, ସେ ସବୁଥିରୁ ସେ ସର୍ବଦା ବିରକ୍ତ (ନିର୍ଲିପ୍ତ) ଥିଲେ । ସେ ଥିଲେ ଅତି ଦରିଦ୍ର ଓ ଅକିଞ୍ଚନ । ଏହାସତ୍ତ୍ୱେ ବି ତାଙ୍କର ଚିତ୍ତ କେବେହେଲେ ଚଞ୍ଚଳ ହେଉ ନଥିଲା । ଦରିଦ୍ରତା ସମ୍ବନ୍ଧୀୟ ଯେତେ ଦୁଃଖ ଭୋଗିବାକୁ ପଡ଼ୁଥିଲା, ସେ ସବୁକୁ ସେ ଶାନ୍ତଚିତ୍ତରେ ସାହସର ସହିତ ସହ୍ୟ କରୁଥିଲେ । ସେ ଇନ୍ଦ୍ରିୟସବୁଙ୍କୁ ବଶ କରିଥିଲେ ।''

ଶୌନକ ପଚାରିଲେ—''ହେ ସୂତ ! ସୁଦାମା କ'ଣ ସନ୍ନ୍ୟାସୀ ଭିକ୍ଷୁ ଥିଲେ ?''

ସୂତ କହିଲେ—''ନା, ମହାରାଜ ! ସେ ଗୃହସ୍ଥ ଥିଲେ । ତାଙ୍କର ବୃତ୍ତି ହିଁ ଭିକ୍ଷାବୃତ୍ତି ଥିଲା । ଯାହାକିଛି ପ୍ରାରବ୍ଧ ବଶତଃ ତାଙ୍କୁ ମିଳି ଯାଉଥିଲା ସେ ସେଥିରେ ଜୀବନ ନିର୍ବାହ କରୁଥିଲେ ! ତାଙ୍କୁ ପେଟପୂରା ଅନ୍ନ ମଧ୍ୟ ମିଳୁ ନଥିଲା । ସମସ୍ତ ସମୟରେ ସେ ଅଧା ପେଟ ରହୁଥିଲେ ତ ସମସ୍ତ ସମୟରେ ତାଙ୍କୁ ଉପବାସରେ ମଧ୍ୟ ରହିବାକୁ ପଡ଼ୁଥିଲା । ମୁନିଗଣ ! ଗୃହସ୍ଥ ନିଜ ପେଟରେ ପଥରକେ ଓଦାକନା ବାନ୍ଧି ସମସ୍ତ କଟାଇପାରେ, କିନ୍ତୁ ଯେତେବେଳେ ପିଲା ଛୁଆଙ୍କର ଭୋକରେ ପେଟ ଜଳେ, ସେତେ-ବେଳେ ମନୁଷ୍ୟ ଜ୍ଞାନଶୂନ୍ୟ ହୋଇଯାଏ । ଯଦି ଦରିଦ୍ରତା ସାଙ୍ଗରୁ ମୁଖରା ସ୍ତ୍ରୀଟିଏ ମିଳିଥାଏ, ତାହାହେଲେ ସେହି ଦରିଦ୍ରତା ରୌରବ ନର୍କଠାରୁ ଅଧିକ ଯନ୍ତ୍ରଣାଦାୟକ ହୁଏ । ସୌଭାଗ୍ୟ ବଶତଃ ସୁଦାମାଙ୍କର ପତ୍ନୀ କଟୁଭାଷିଣୀ ନଥିଲେ । ସେ ଥିଲେ ସତୀ, ସାଧ୍ୱୀ, ପତିପରାୟଣା ଓ ସୁଶୀଳା । ସେ ନିଜେ ଦୁଃଖ କଷ୍ଟରେ ରହି ପତିଙ୍କୁ ସୁଖୀ ରଖିବାକୁ ଚେଷ୍ଟା କରୁଥିଲେ । ଯେଉଁମାନେ ଅସତୀ ସ୍ତ୍ରୀ, ସେମାନେ ନିର୍ଧନ ପତିଙ୍କୁ ପରିତ୍ୟାଗ କରି ପରପୁରୁଷର ଅନୁଗତା ହୁଅନ୍ତି । କିନ୍ତୁ ପତିବ୍ରତାଙ୍କ ପାଇଁ ନିଜର ପତି ଯେପରି ହୋଇଥାଆନ୍ତୁ ପଛକେ ସେ ତାଙ୍କ ପାଇଁ ସର୍ବସ୍ୱ । ତାଙ୍କୁ ଛାଡ଼ି ସେ ଅନ୍ୟ କୌଣସି ପୁରୁଷଙ୍କୁ ଚାହାନ୍ତି ବି ନାହିଁ ।''

ସୁଦାମା ଯେପରି ଦୁର୍ବଳ ଥିଲେ, ତାଙ୍କର ପତ୍ନୀ ମଧ୍ୟ ସେହିପରି ଦୁର୍ବଳ ଥିଲେ । ଭିକ୍ଷାରୁ ଯାହାକିଛି ମିଳୁଥିଲା, ତାହାକୁ ସେ ପବିତ୍ର ଭାବରେ ରାନ୍ଧି ଭଗବାନଙ୍କୁ ଭୋଗ ଲଗାଇ, ନିଜର ପତିଙ୍କୁ ବାଢ଼ି ଦେଉଥିଲେ, ପିଲାମାନଙ୍କୁ ଖୁଆଇ ଦେଉଥିଲେ ଓ ଯଦି ଖଣ୍ଡେ ଅଧେ ରୁଟି ବଳୁଥିଲା, ତାହାହେଲେ ସେ ତାହାଖାଇ ପାଣିପିଇ ରହୁଥିଲେ । ଯଦି କିଛି ବଳୁ ନଥିଲା, ତେବେ ଉପବାସରେ ରହି ଯାଉଥିଲେ । ସୁଦାମା ତାଙ୍କୁ ପଚାରୁଥିଲେ—''ପ୍ରିୟେ ! କିଛି ପ୍ରସାଦ ପାଇଲ ତ ?''

ସେ ସ୍ୱାମୀଙ୍କୁ କହୁଥିଲେ—"ହଁ ମହାରାଜ ! ସବୁ ଆନନ୍ଦ, ଆପଣ ମୋ ପାଇଁ କିଛି ଚିନ୍ତା କରନ୍ତୁ ନାହିଁ ।" ତାଙ୍କୁ ପ୍ରାୟ ଉପବାସରେ ରହିବାକୁ ପଡ଼ୁଥିଲା । ତେଣୁ ସେ ସୁଦାମାଙ୍କଠାରୁ ଅଧିକ ଦୁର୍ବଳ ଥିଲେ । ତାଙ୍କର ଖଣ୍ଡିଏ ମାତ୍ର ସାଢ଼ିପିଆଁ ଧୋତି ଥିଲା, ଯାହାକି ମଳ କେତେ ରଙ୍ଗ ରଙ୍ଗ ଥିଲା, କାରଣ ତାହା ଅରେ କାଚ ସଫା କରିଦେଲେ ତାହାର ଅସ୍ତିତ୍ୱ ରହନ୍ତା ନାହିଁ । ଗାଧୋଇ ସାରି ପିନ୍ଧିବା ପାଇଁ ଅନ୍ୟ ଧୋତି ନଥିବାରୁ ସେ ଗୋଟିଏ ତାନ୍ନ ଚପୁଡ଼ି ପିନ୍ଧି ଅନ୍ୟ କାନକୁ ଧୋଉଥିଲେ ଓ ଶୁଖାଉ ଥିଲେ । କାରଣ କେତେକ ବର୍ଷ ପୂର୍ବେ ସୁଦାମାଙ୍କୁ ଯେଉଁ ନୂତନ ଧୋତି କେଉଁଠୁ ମିଳୁଥିଲା, ସେହି ଧୋତିକୁ ସୁଦାମା ପିନ୍ଧି ଅତି ପୁରୁଣା ହୋଇଗଲେ ସେହି ପୁରୁଣା ଧୋତିକୁ ସିଲେଇ କରି ତାଙ୍କର ପତ୍ନୀ ପିନ୍ଧୁଥିଲେ । ଏବେ ତାଙ୍କର ଏପରି ଦଶା ପଡ଼ିଲା ଯେ, ସେ ଯେଉଁଠି ବସିଲେ ଧୋତି ସଙ୍ଗେ ସଙ୍ଗେ ଚିରିଗଲା । ତେଣୁ ସେ ଦିନରେ ବାହାରକୁ ନ ବାହାରି ଘର ଭିତରେ ରହୁଥିଲେ । ସୁଦାମାଙ୍କର କେବଳ ଗୋଟିଏ ପୁରୁଣା ଧୋତି ଓ ଗୋଟିଏ ପୁରୁଣା ପଟଡ଼ି ଥିଲା । ଯେଉଁଥିରେ କି ରଙ୍ଗବେରଙ୍ଗୀ ଦାଗମାନ ଲାଗିଥିଲା । ଘରେ ବାସନ ବୋଲି କେବଳ ଖଣ୍ଡିଏ ଫୁଟା ଟାଉଆ ଓ ଗୋଟିଏ କାଠ ନିର୍ମିତ କାଠୁଆ ଥିଲା । ମାଟିର ଦୁଇଟି ପୁରୁଣା ବାସନ ମଧ୍ୟ ଥିଲା ତାହା ବ୍ୟତୀତ ଘରେ ଗୋଟିଏ ଭଙ୍ଗା ଖଟିଆ ଓ ଗୋଟିଏ ଫଟା ଜଳପାତ୍ର ଥିଲା । ଘର ଉପରର ଛପର ବର୍ଷାରେ ସଢ଼ି ସୁନ୍ଦରପାଡ଼ ଦଶା ହୋଇଯାଇଥିଲା । ରାତିରେ ସେ ଘର ଭିତରୁ ଆକାଶକୁ ଚାହିଁଲେ ସବୁ ତାରା ଗଣି ହୋଇପାରୁଥିଲେ । ଗୋଟିଏ ପୁରୁଣା ଚିରଣା ଚଦର ଥିଲା, ଯେଉଁଥିରୁ କି ଦୁର୍ଗନ୍ଧ ଆସୁଥିଲା । ତାହାକୁ ଭଙ୍ଗା ଖଟ ଉପରେ ବିଛାଇ ରାତିରେ ମା ନିଜର ପିଲାଙ୍କୁ ଶୁଆଇ ଦେଉଥିଲେ, ନିଜେ ଭୂମି ଉପରେ ଶୋଇ ଯାଉଥିଲେ । ବର୍ଷାଦିନେ ସେମାନଙ୍କୁ ସାରାରାତି ଅନିଦ୍ରା ରହିବାକୁ ପଡ଼ୁଥିଲା ।

ଥରେ ଲଗାତାର ପନ୍ଦର ଦିନ ବର୍ଷା ଲାଗିରହିଲା । ସୁଦାମା ବାହାରକୁ ଭିକ୍ଷାପାଇଁ ଯାଇ ପାରିଲେ ନାହିଁ । ଘରେ ଅନ୍ନର ଦାନାଟିଏ ବି ନଥିଲା । ଶ୍ରେଷ୍ଠ ପିଲାଟି ଭୋକରେ ଅଥିଷ୍ଟ ପାଉଷ୍ଟ ହେଉଥିଲା । ମାତା ତାକୁ ବାରମ୍ବାର ସ୍ତନ ପିଆଉଥିଲେ; କିନ୍ତୁ ତାଙ୍କ ସ୍ତନରୁ କ୍ଷୀର ଅବା ଝରନ୍ତା କେଉଁଠୁ ? ତାଙ୍କ ଶରୀରତ ସହଜେ ରକ୍ତଶୂନ୍ୟ ଥିଲା । ସେ ଯାହାକୁ ଯେମିତି ମାଗିଯାଚି ଆଣି ପିଲାକୁ କିଛି ଖୁଆଇଲେ । ଭୋଜନ କରିବା ପାଇଁ ତୃପ୍ତିର ଦିନ କୌଣସି ଆଶା ନଥିଲା । ପିଲା ଅତ୍ୟଧିକ କାନ୍ଦିବାରୁ ସେହି ପତିବ୍ରତାଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା । ସେ କେବେହେଲେ ନିଜ ମୁଖରେ ଆହା ବୋଲି କହି ନଥିଲେ କିମ୍ବା ନିଜର ଦୁଃଖ ପତିଙ୍କ ଆଗରେ କେବେହେଲେ ପ୍ରକାଶ କରି ନଥିଲେ । ପ୍ରକାଶ କରୁନଥିଲେ ବି ସୁଦାମା ସବୁକଥା ବୁଝି ପାରୁଥିଲେ । କିନ୍ତୁ ସେଦିନ ତାଙ୍କର ପତ୍ନୀ କହିବାକୁ ବାଧ୍ୟ ହେଲେ । ପିଲାଟିର ଏପରି ଦୁର୍ଦ୍ଦଶା ଦେଖି ମାତୃହୃଦୟ ବିଦୀର୍ଣ୍ଣ ହେଉଥିଲା । ସେ ଯେତେବେଳେ ଦାରିଦ୍ର୍ୟ ଦୁଃଖରେ ଅତ୍ୟନ୍ତ

ଦୁଃଖିତ ହେଲେ, ସେତେବେଳେ ସେ କିଛି କହିବାକୁ ପତିଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ତାଙ୍କ ଗୁପ୍ତ ଅରୁଥିଲା, ପତିଙ୍କୁ କିଛି କହିବାକୁ ସେ ଭୟ କରୁଥିଲେ । ତାଙ୍କର ମୁଖମଣ୍ଡଳ ଶୁଖି ଯାଇଥିଲା । ସେ ଦୁଃଖସ୍ୱରେ ମଧୁର ସ୍ୱରରେ ସ୍ୱାମୀଙ୍କୁ କହିଲେ—"ପ୍ରାଣନାଥ ! ମୁଁ ଶୁଣିଥିଲି ଆପଣଙ୍କ ମିତ୍ର ସ୍ୱୟଂ ଶ୍ରୀପତି ।"

ସୁଦାମା ଖିନ୍ନ ମନରେ କହିଲେ—"ପ୍ରିୟେ ! ମୋର ତା ସହିତ କି ସମ୍ପର୍କ ? ସିଏ ହେଉଛନ୍ତି ଶ୍ରୀପତି । ମୁଁ ହେଉଛି ଭିକ୍ଷୁକ, ଦରିଦ୍ର ଜାତ ବ୍ରାହ୍ମଣ । ମିତ୍ରତା ତ ସମ ଅବସ୍ଥା ସମ୍ପନ୍ନ ଲୋକଙ୍କ ସହିତ ହୁଏ ?"

ପତିବ୍ରତା ସ୍ତ୍ରୀ କହିଲେ—"ନା, ମହାରାଜ ! ଆପଣତ ଅନେକ ଥର ମୋତେ କହିଛନ୍ତି ଯେ, ଆମେ ଦୁହେଁ ଏକ ସଙ୍ଗେ ପଢ଼ୁଥିଲୁ, ସାଙ୍ଗ ହୋଇ ବଣରୁ ସମିଧ, କୁଶ ଓ ଫୁଲଫଳ ସଂଗ୍ରହ କରୁଥିଲୁ, ସେ ମୋତେ ଖୁବ ଭଲ ପାଉଥିଲେ ।"

ସୁଦାମା ଶୁଖିଲା ହସ ହସି କହିଲେ—"ତାହା ବହୁତ ପୁରୁଣା କଥା । ସେ ସବୁ ପିଲା ଦିନର କଥା । ସେ ସବୁ କ'ଣ ସେ ବର୍ତ୍ତମାନ ଭୁଲି ଯିବେଣି । ସମୟ ସମୟରେ ବିଷମ ପୁରୁଷଙ୍କ ସହିତ ମଧ୍ୟ କୌଣସି ପରିସ୍ଥିତିରେ ମିତ୍ରତା ହୋଇଯାଏ । ଯେପରି କୌଣସି ବଡ଼ ଲୋକକୁ କୌଣସି କାରଣରୁ କାରାଦଣ୍ଡ ହୋଇଗଲା । କୌଣସି ସାଧାରଣ ଲୋକକୁ କାରାଗାରରେ ରହିବାକୁ ପଡ଼ିଥିଲା । ତେଣୁ ଦୁହେଁ ଏକ ପରିସ୍ଥିତିରେ ରହିବାକୁ ପଡ଼ିଲା । ସେହି କ୍ଷେତ୍ରରେ ପରସ୍ପର ମଧ୍ୟରେ ମିତ୍ରତା ହୋଇଯାଏ । ମନୁଷ୍ୟମାନେ ଏକ ସାମାଜିକ ପ୍ରାଣୀ । ତାହାକୁ କହିବା, ବୋଲିବା, ଶୁଣିବା ଓ ଲଢ଼ିବା ପାଇଁ ସାଥିର ଆବଶ୍ୟକତା ପଡ଼ିଥାଏ । କାରାଗାରରେ ଭଲପାଇବାକୁ କେହି ନଥାନ୍ତି । ତେଣୁ ଧନୀଲୋକ ସାଧାରଣ ଲୋକଙ୍କ ସହିତ ସୁସମ୍ପର୍କ ରଖି ପ୍ରେମରେ ଆଳାପ ଆଲୋଚନା କରନ୍ତି । ତାଙ୍କ ସହିତ ସ୍ନେହ ସଦ୍ଭାବରେ ସମୟ କାଟନ୍ତି । କାରାବାସ କାଳ ଶେଷ ହୋଇଯିବା ପରେ ଯେତେବେଳେ ଉଭୟେ ମୁକ୍ତ ହୁଅନ୍ତି, ସେତେବେଳେ ଯଦି ସାଧାରଣ ଲୋକ ସେହି ଧନୀ ଲୋକ ନିକଟକୁ ଯାଏ, ତାହାହେଲେ ସେ ତାକୁ କଥା ପଚାରେ ବି ନାହିଁ । କିଛିଦିନ ପରେ ସମ୍ପୂର୍ଣ୍ଣ ଭୁଲି ବି ଯାଏ । ପଢ଼ିବା ସମୟରେ ପିଲାମାନଙ୍କ ମଧ୍ୟରେ ମିତ୍ରତା ହୋଇଥାଏ । କିନ୍ତୁ ସେହି ସମୟ ଉପସ୍ଥିତ ହେଲେ ଆଉ ମିତ୍ରତା ରହେନାହିଁ, ଯେତେବେଳେ କି କେହି ଉଚ୍ଚ ପଦ ପଦବୀରେ ଅଧିଷ୍ଠିତ ହୋଇଯାଏ । ଶ୍ୟାମସୁନ୍ଦର ଯେତେବେଳେ ପାଠ ପଢ଼ୁଥିଲା, ସେତେବେଳେ ସେ ବ୍ରହ୍ମଚାରୀ ଥିଲା । ମୁଁ ମଧ୍ୟ ବ୍ରହ୍ମଚାରୀ ଥିଲି । ଏବେ ସେ ରାଜା ଆଉ ପୁଣି ମୁଁ ଜଣେ ସାମାନ୍ୟ ଦରିଦ୍ର ଲୋକ ଓ ଭିକାରି । ସେ ତ ବର୍ତ୍ତମାନ ମୋତେ ଆଉ ଚିହ୍ନିପାରିବ ନାହିଁ ।"

ଏଣ୍ଡୋଣଣ୍ଡୀ ସୁଦାମାଙ୍କ ପତ୍ନୀ କହିଲେ—"ପ୍ରାଣନାଥ ! ଏକଥା ତ ସାଧାରଣ ଲୋକଙ୍କ କଥା । ଭଗବାନ କ'ଣ କେବେ ତାଙ୍କ ଭକ୍ତଙ୍କୁ ଭୁଲି ପାରନ୍ତି ? ସର୍ବାନ୍ତର୍ଯାମୀଙ୍କୁ କ'ଣ ଅଜଣା ? ମିତ୍ରତା କଥା ଛାଡ଼ିଦିଅନ୍ତୁ, ତଥାପି ତ ଆପଣ ଜଣେ ବ୍ରାହ୍ମଣ । ସେ ବ୍ରାହ୍ମଣ ପ୍ରେମୀ ବ୍ରାହ୍ମଣ୍ୟଦେବ ଅଟନ୍ତି । ସେ ଆପଣଙ୍କୁ କେବେହେଲେ ଭୁଲି ନଥିବେ । ସେ ଶରଣାଗତ ବତ୍ସଳ । ସଜ୍ଜନମାନଙ୍କର ଏକମାତ୍ର ଗତି । ଭଲ ଭଲ ଲୋକ ଧନବାନ୍ ହେଲେ ନିର୍ଧନଙ୍କୁ ଭୁଲି ଯାଆନ୍ତି; କିନ୍ତୁ ଭଗବାନ୍ ଆପଣଙ୍କୁ କଦାପି ଭୁଲି ନଥିବେ ।"

ସୁଦାମା କହିଲେ—"ହଁ, ମୋର ବିଶ୍ୱାସ ସେ ଭୁଲି ନଥିବେ । ଆଚ୍ଛା, ତୁମେ ଏକଥା ପଚାରିବାର ଅଭିପ୍ରାୟ କ'ଣ ?"

ନମ୍ରତା ସହକାରେ ରହି ରହି ଅସ୍ପଷ୍ଟ ଶବ୍ଦରେ ସତୀ କହିଲେ—"ମୋର ପ୍ରାର୍ଥନା, ଆପଣ ତାଙ୍କ ନିକଟକୁ ଯାଆନ୍ତୁ ।"

ସୁଦାମା ଚମକିପଡ଼ି କହିଲେ—"ତାଙ୍କ ନିକଟକୁ କାହିଁକି ଯିବି ?"

ସତୀ କହିଲେ—"ଆପଣ ବ୍ରାହ୍ମଣ ଓ ଯଦୁନନ୍ଦନ ବ୍ରାହ୍ମଣ୍ୟଦେବ । ଆପଣ ଦୀନ ଓ ସେ ସମସ୍ତଙ୍କର ପ୍ରତିପାଳକ ଦୀନବନ୍ଧୁ । ଆପଣ ଦରିଦ୍ର ହେତୁ ଦୁଃଖୀ, ସେ ସ୍ୱୟଂ ଲକ୍ଷ୍ମୀପତି । ସେ ଆପଣଙ୍କୁ ପ୍ରଚୁର ଧନ ଦେଇ ଆପଣଙ୍କର ଦାରିଦ୍ର୍ୟ ଦୂର କରିଦେବେ ।"

ସୁଦାମା ବିସ୍ମିତ ହୋଇ କହିଲେ—"ମୁଁ କ'ଣ ଭଗବାନଙ୍କ ନିକଟକୁ ଧନ ମାଗିବାକୁ ଯିବି ? ପ୍ରିୟେ ! ଏ କାର୍ଯ୍ୟ ମୋ ବଶରେ ନାହିଁ । ମୁଁ ବରଂ ଉପବାସରେ ମରିଯିବି; କିନ୍ତୁ ଧନ ମାଗିବାକୁ ଭଗବାନଙ୍କ ନିକଟକୁ ଯାଇପାରିବି ନାହିଁ । ତୁଚ୍ଛ ଧନର ଯାଚଞ୍ଚା ସେହି ଅଖିଳ ବ୍ରହ୍ମାଣ୍ଡ ନାୟକଙ୍କ ପାଖରେ କରିବି କିପରି ?"

ସତୀ କହିଲେ—"ପ୍ରଭୋ ! ନିଜ ପାଇଁ ନୁହେଁ, ଏହି ଶିଶୁପୁତ୍ର ପାଇଁ, ଏ ଦାସୀ ପାଇଁ । ମୋର ଅନୁରୋଧ ରକ୍ଷା କରନ୍ତୁ ପ୍ରଭୋ !"

ସୁଦାମା କହିଲେ—"ପିଲା କାଳୁ ମରିବାର ଥିଲେ ଆଜି ବରଂ ମରିଯାଉ, କିନ୍ତୁ ମୁଁ ଭଗବାନଙ୍କୁ ଧନ ପାଇଁ କିଛି କହି ପାରିବି ନାହିଁ ।"

ସ୍ତ୍ରୀ କହିଲେ—"ପ୍ରଭୋ ! ଯଦି ଆମ ଭାଗ୍ୟରେ ଯାଚଞ୍ଚା ଲେଖା ଅଛି, ତେବେ ସାଧାରଣ ଲୋକଙ୍କୁ କାହିଁକି ହାତ ପତାଇ ମାଗିବା, ତାଙ୍କୁ କାହିଁକି କିଛି ନ ମାଗିବା ? ଏପରି କଲେ ଆମକୁ ଅନ୍ୟ ପାଖରେ ଆଉ ହାତ ପତାଇବାକୁ ପଡ଼ନ୍ତା ନାହିଁ ।"

ସୁଦାମା କହିଲେ —"ପ୍ରିୟେ ! ତୁମେ ଯାହା କହୁଛ ସତ । ନିତ୍ୟ ଭିକ୍ଷାକରି ଆମେ ଉଦର ପୂରଣ କରୁଥାଉଁ । କିନ୍ତୁ ମିତ୍ରଠାରେ ଯାଚଞ୍ଚା ଶୋଭାପାଏ ନାହିଁ । ଯାହାର ମିତ୍ରତା ରକ୍ଷା କରିବାକୁ ହୁଏ, ସେ ସର୍ବଦା ଦୁଇଟି କଥା ମନେ ରଖିବା ଉଚିତ । ପ୍ରଥମତଃ ମିତ୍ରକୁ କଦାପି ଧନ ମାଗିବ ନାହିଁ ଓ ଦ୍ୱିତୀୟରେ ମିତ୍ରଙ୍କ ପତ୍ନୀ ସହିତ ଏକାନ୍ତରେ କଥାବାର୍ତ୍ତା ହେବନାହିଁ । ଏ ଦୁଇଟି କଥା ପାଳନ ନ କଲେ ଦିନେ ନା ଦିନେ ମନରେ ମିତ୍ର ପ୍ରତି ମିତ୍ରର ମନୋମାଳିନ୍ୟ ଘଟିଥାଏ । ଏହିଠାରେ କୌଣସି ପ୍ରକାରେ ଅଧା ଭୋଜନ କରି ଦିନ କାଟିନେବା ବରଂ ଶ୍ରେୟସ୍କର । ତୁଚ୍ଛ ଧନପାଇଁ ଭଗବାନଙ୍କ ନିକଟକୁ ଯିବା ଆଦୌ ଶୋଭନୀୟ ନୁହେଁ । ପୁନଶ୍ଚ ସେ ବର୍ତ୍ତମାନ କେଉଁଠାରେ ରହୁଛନ୍ତି, ତାହା ମଧ୍ୟ ମୁଁ ଜାଣେ ନାହିଁ । ସେ ବର୍ଷେକାଳ ଧର୍ମରାଜ ଯୁଧିଷ୍ଠିରଙ୍କ ରାଜ୍ୟ ଇନ୍ଦ୍ରପ୍ରସ୍ଥରେ ରହି ଆସିଥିଲେ । ପୁନଶ୍ଚ କେଉଁଠାକୁ କେଉଁ ଅସୁର ରାଜାକୁ ମାରିବାକୁ ଚାଲି ଯାଇଥିବେ ।"

ସତୀ କହିଲେ—"ପ୍ରାଣନାଥ ! ନିଜର ଦୁଃଖ ସୁଖ ନିଜର ଆପଣାର ଲୋକଙ୍କ ଆଗରେ ହିଁ କୁହାଯାଏ । ଶ୍ୟାମସୁନ୍ଦର ଆପଣଙ୍କର ସୁହୃଦ । କେବଳ ଆପଣଙ୍କର ନାହିଁ କି, ସମସ୍ତ ପ୍ରାଣୀଙ୍କର ସେ ସୁହୃଦ । ତାଙ୍କୁ ଯାଚଞ୍ଚା କରିବା ଯାଚଞ୍ଚା ମଧ୍ୟରେ ପାଦପଦ୍ମ ଆଶ୍ରିତ ଗଣ୍ୟ ନୁହେଁ ! ମୁଁ ଭଲଭାବେ ବୁଝିଛି, ସେ ବର୍ତ୍ତମାନ ଦ୍ୱାରକାରେ ରହୁଛନ୍ତି । ସେ ସମସ୍ତ ଭୋଜ, ବୃଷ୍ଣି ଓ ଅନ୍ଧକ ବଂଶୀୟ ଯାଦବଙ୍କର ଅଧିପତି ଅଟନ୍ତି । ସେ ନିଜର ପାଦପଦ୍ମ ଆଶ୍ରିତ ଜନଙ୍କର ଦୁଃଖ ଦୂର କରନ୍ତି । ତାଙ୍କ ପକ୍ଷେ କୌଣସି ବସ୍ତୁ ଅଦେୟ ନୁହେଁ । ଧନ ତ ଏକ ତୁଚ୍ଛ ବସ୍ତୁ । ସେ ନିଜର ଭକ୍ତଙ୍କ ପାଇଁ ନିଜେ ନିଜକୁ ମଧ୍ୟ ଦେଇ ଦିଅନ୍ତି ।"

ସୁଦାମା କହିଲେ—ପ୍ରିୟେ ! ଭଗବାନଙ୍କ ଭକ୍ତ ତ ଭଗବାନଙ୍କ ଦିଅି ମୁକ୍ତିକୁ ମଧ୍ୟ ପ୍ରତ୍ୟାଖ୍ୟାନ କରନ୍ତି । କିନ୍ତୁ ତୁମେ ମୋତେ ତାଙ୍କ ନିକଟକୁ ଧନ ମାଗିବା ପାଇଁ ପଠାଉଛ । ଏହା କି ପ୍ରକାର ଭକ୍ତି ?"

ସତୀ କହିଲେ—"ପ୍ରଭୋ ! ଆମେ ଧନ ପ୍ରମାଦ ଯୋଗୁଁ କମ୍ପା କଥିଷ୍ଟ ଭୋଗ ପାଇଁ ତ ମାଗୁ ନଥାଇଁ । ଏହି ଦାରିଦ୍ର୍ୟ ଦୁଃଖରେ ତାଙ୍କୁ ଆମେ ସ୍ମରଣ ବି କରିପାରୁ ନଥାଇଁ । ଯଦିଚ ଭଗବନ୍ତ ଭକ୍ତଙ୍କର ଅର୍ଥ, କାମ ଆଦି ବିଶେଷ ଅଭୀଷ୍ଟ ନୁହେଁ, ତଥାପି ଧର୍ମପୂର୍ବକ କାମ ଓ ଅର୍ଥର ସେବନ କରାଯାଇଥାଏ, ତେଣୁ ସେହି ଅନ୍ତର୍ଯାମୀ ପ୍ରଭୁ ଏଥିରେ ମଧ୍ୟ ପ୍ରସନ୍ନ ହୋଇଥାଆନ୍ତି । ସେ ଯେତେବେଳେ ମୋକ୍ଷର ସ୍ୱାମୀ ଅଟନ୍ତି, ତେବେ ସେ ଧନ କାହିଁକି ଦେଉଛନ୍ତି ?"

ସୂତ କହିଲେ—"ମୁନିଗଣ ! ଯେତେବେଳେ ସୁଦାମାଙ୍କର ପତ୍ନୀ ତାଙ୍କୁ ବାରମ୍ବାର ଅନୁରୋଧ କଲେ, ସେତେବେଳେ ସୁଦାମା ଚିନ୍ତାକଲେ, ଯେହେତୁ ଏହାଙ୍କର ଏତେ ଆଗ୍ରହ ତାହାହେଲେ ମୁଁ ନିଶ୍ଚୟ ଦ୍ୱାରକା ଯିବି । ମୁଁ ଯାଇ ତାଙ୍କୁ ଧନ ତ ମାଗିବି ନାହିଁ, ତଥାପି ସ୍ତ୍ରୀଙ୍କର କଥା ରକ୍ଷା ହେବ । ଏହାଦ୍ୱାରା ମୋର ଏକ ବଡ଼ ଲାଭ ଏତିକି ହେବ ଯେ, ମୁଁ ଶ୍ୟାମସୁନ୍ଦରଙ୍କୁ ଦର୍ଶନ କରିପାରିବି ।" ଏହି କଥା ଚିନ୍ତାକରି ସେ ଦ୍ୱାରକାପୁରୀ ଯିବାକୁ ମନରେ ନିଶ୍ଚୟ କଲେ ଓ ପତ୍ନୀଙ୍କୁ କହିଲେ—"ଆଚ୍ଛା, ଠିକ୍‌ଅଛି, ଯଦି ତୁମେ ଏକା ଜିଦ ଧରୁଛ ତାହାହେଲେ ମୁଁ ଦ୍ୱାରକା ଯିବି । କିନ୍ତୁ ଶାସ୍ତ୍ରକାରମାନେ କହିଛନ୍ତି, ରାଜା, ବ୍ରାହ୍ମଣ, ଗୁରୁ, ବୈଦ୍ୟ, ଜ୍ୟୋତିଷ ଓ ମିତ୍ରଙ୍କ ନିକଟକୁ ଯିବାକୁ ହେଲେ ରିକ୍ତ ହସ୍ତରେ ଯିବା ଉଚିତ୍ ନୁହେଁ । କିଛି ନା କିଛି ନେଇଯିବା ଉଚିତ୍ । ତେଣୁ ତୁମ ଘରେ ଯଦି କିଛି ଉପହାର ନେଇଯିବାକୁ ଥାଏ, ତାହାହେଲେ ତାହା ମୋତେ ଦେଇଦିଅ ।"

ସତୀ ଚିନ୍ତାକଲେ—"ଏହା ଏକ ନୂଆ ବିପତ୍ତି ଆସି ପହଞ୍ଚିଲା । ଯେ କୌଣସି ପ୍ରକାରରେ ତ ତାଙ୍କୁ ଯିବାକୁ ପଡ଼ିବ । ନ ହେଲେ ସେ ମୋତେ ଦୋଷ ଦେବେ ଯେ, 'ମୁଁ ତ ଯିବାକୁ କହିଲି, ତୁମେ କିଛି ଉପହାର ନେବା ପାଇଁ ବ୍ୟବସ୍ଥା କଲ ନାହିଁ । ରିକ୍ତ ହସ୍ତରେ ମିତ୍ରଙ୍କ ଘରକୁ ଯିବା ତ ଠିକ୍ ନୁହେଁ ।" ଏହା ଚିନ୍ତା କରି ସେ ବ୍ୟସ୍ତ ହୋଇପଡ଼ିଲେ; କିନ୍ତୁ ସାହସ ଛାଡ଼ିଲେ ନାହିଁ । ସେ କହିଲେ—'ଠିକ୍ ଅଛି, ଆପଣ ଅପେକ୍ଷା କରନ୍ତୁ ମୁଁ କିଛି ନେଇ ଆସୁଛି ।" ଏହା କହି ସେ ତାଙ୍କର ଜଣେ ସାଙ୍ଗ ପଡ଼ୋଶୀଙ୍କ ପାଖକୁ ଗଲେ ଓ ଅତି ଦୁଃଖପ୍ରକାଶ କରି କହିଲେ—"ଭଉଣୀ ! ତୁମେ ମୋତେ ସର୍ବଦା ସାହାଯ୍ୟ କରି ଆସିଛ । ଆଜି ମୋତେ ସାମାନ୍ୟ କିଛି ସାହାଯ୍ୟ କର । ମୁଁ ଆଉ ତୁମକୁ କେବେ କଷ୍ଟ ଦେବି ନାହିଁ । ଚାରିମୁଠା ଖୁଦ ମୋତେ ଆଜି ଦିଅ ।"

ସତୀଙ୍କର ଶୁଖିଲା ମୁଖ ଓ କରୁଣାପୂର୍ଣ୍ଣ ବଚନ ଶୁଣି ସେହି ସ୍ତ୍ରୀଲୋକ ମନରେ ଦୟା ଆସିଲା । ସେ ଚାରିମୁଠା ଖୁଦ ଆଣି ସତୀଙ୍କୁ ଦେଲେ । ସତୀ ତାହା ଆଣି ତାକୁ ଭାଜି, ସେଥିରେ ଆବଶ୍ୟକୀୟ ଲବଣ ଓ ମସଲା ମିଶାଇ ଗୋଟିଏ ପୁରୁଣା ଚିରା କପଡ଼ାରେ ଭଲକରି ବାନ୍ଧିଦେଲେ । ସେହି ପୁଡ଼ିଆକୁ ଆଣି ସ୍ୱାମୀଙ୍କୁ ଦେଇ କହିଲେ—"ଦେଖନ୍ତୁ, ଏହି ଖୁଦଭଜା ହିଁ ଆମର ଭେଟି । ମୁଁ ଏହାର ଯତ୍ନରେ ଭାଜି ଦେଇଅଛି । କାରଣ ଆପଣଙ୍କୁ ଏ ସାମାନ୍ୟ ଜିନିଷ ଭେଟି ଦେବାପାଇଁ ଲଜ୍ଜା ଲାଗିପାରେ । ତେଣୁ ତାଙ୍କୁ ଏତିକି କହିବେ ଯେ, ଆପଣଙ୍କ ଭାଉଜ ଏହା ଆପଣଙ୍କ ପାଇଁ ପଠାଇଛନ୍ତି ।"

ସୂତ କହିଲେ—"ମୁନିଗଣ । ସେହି ପୁଟୁଳୀକୁ ନେଇ ସୁଦାମା ଦ୍ୱାରକା ଅଭିମୁଖେ ଯାତ୍ରା କଲେ । ତାଙ୍କର ଦରିଦ୍ରତା ପାଇଁ ମନରେ ଦୁଃଖ ରହିଥିଲା ଓ

ଭଗବାନଙ୍କ ଦର୍ଶନ ହେବ, ସେଥିପାଇଁ ମନରେ ମଧ୍ୟ ପ୍ରସନ୍ନତା ଭରି ଯାଉଥିଲା । ମୁଁ ଭଗବାନଙ୍କୁ କିପରି ଦର୍ଶନ କରିବି, ଏହା ଚିନ୍ତା କରି କରି ସେ ଅଗ୍ରସର ହେବାକୁ ଲାଗିଲେ । ଏହାପରେ ସେ ଯେପରି ଦ୍ୱାରକାରେ ପାଇ ପହଞ୍ଚିଲେ, ସେ ବିଷୟରେ ମୁଁ ପରବର୍ତ୍ତୀ ଅଧ୍ୟାୟରେ କହିବି ।"

## ଛପ୍ପୟ

ଦାରିଦ ଦୁଃଖ ଅତି ଦୁସହ ଭୟୋ ତବ ସତୀ ସୁଝାୟୋ ।
ହୈଂ ଯଦୁନନ୍ଦନ ସଖା ଦେବ ! ବହୁବାର ବତାୟୋ ।।
କ୍ୟୋଂ ନ ଦ୍ୱାରକାନାଥ ନିକଟ ହେ ପ୍ରିୟତମ ! ଜାବେଂ ।
ଦୀନବନ୍ଧୁ ଢିଁଗ ଜାଇ ଦୁସହ ଦୁଖ କ୍ୟୋଂ ନ ସୁନାବେଂ ।।
ଦ୍ୱିଜ ବୋଲେ—"ଧନ ହେତୁ ହରି, ଢିଁଗ କବହୁଁ ନହିଁ ଜାଉଁ ଗୋ ।
ବିନା ଅନ୍ନ ମରି ଜାଉଁ ଗୋ, ତଉ ନ ଉଦର ଦଖାଉଁ ଗୋ ।।



# ଦ୍ୱାରକା ଅଭିମୁଖେ ସୁଦାମା

ସ ତାନାଦାୟ ଚୀରାଗ୍ରେଷୁ ପ୍ରୟଯୌ ଦ୍ୱାରକାଂ କିଲ ।
କୃଷ୍ଣ ସଂଦର୍ଶନ ମହ୍ୟ   କଥଂ ସ୍ୟାଦିତି ଚିନ୍ତୟନ ॥ ✻

(ଶ୍ରୀ ଭାଃ ୧୦ସ୍କ : ୮୦ ଅ: ୧୫ ଶ୍ଳୋକ)

## ଛପ୍‌ପୟ

ବିବଧ ସଁତ ସମୁଝାଇ ଦ୍ୱାରକା ଭେଟେ ଦ୍ୱିଜବର ।
ଚୂଡ଼ା ମୁଠ୍‌ଠୀ ଗୃହ ମାଁଗି ଦୀୟେ ଅତି ସତ୍ୱର ॥
ଚାବି ବଗଲ ମହୁଁ ଭେଁଟ ଚଲେ ଦ୍ୱିଜ ଲଠିୟା ଟେକତ ।
ଡ଼ଗମଗ ଡ଼ଗମଗ ପଡରେଂ ପୈର ହାଁପତ ମଗ ଦେଖତ ॥
ତରୁତର ବସାୟେ ଶ୍ରାନ୍ତ ହୋଇ, ତନୁ ଜରଜର ମଗ ଅତି ବିକଟ ।
ଲଇ ସୁବଚେୟ ଶକ୍ତି ହରି, ପୁରୀ ଦ୍ୱାରକା କେ ନିକଟ ॥

ଏ ଜୀବନଟା କ'ଣ ଆଶା ନିରାଶାର ଦ୍ୱନ୍ଦ୍ୱ ଯୁଦ୍ଧ ? ଯେଉଁ କାର୍ଯ୍ୟ ଆମେ କରିବାକୁ ନ ଚାହୁଁ, କୌଣସି ବିବଶତା ହେତୁ ତାହା କରିବାକୁ ବାଧ୍ୟ ହେଉ । ଯେଉଁ କାର୍ଯ୍ୟ କରିବାକୁ ଇଚ୍ଛା କରୁ, ପ୍ରତିକୂଳ ପରିସ୍ଥିତି କାରଣରୁ ତାହା କରିପାରୁ ନାହିଁ । କାହାର-ଠାରୁ ଅଧିକ କିଛି ସାହାଯ୍ୟ ପାଇବା ପାଇଁ ଆଶା କରୁ; କିନ୍ତୁ ସେଠାରୁ ନିରାଶ ହୋଇ ଫେରିବାକୁ ପଡ଼େ ! ଯେଉଁଠାରୁ କିଛି ମିଳିବାର ଆଶା ନ ଥାଏ, ସେଠାରୁ ସବୁ ପ୍ରକାର ସାହାଯ୍ୟ ମିଳି କାର୍ଯ୍ୟ ପରିପୂର୍ଣ୍ଣ ହୁଏ । ଏହି ଦ୍ୱନ୍ଦ୍ୱ ନିର୍ଧନମାନଙ୍କ ହୃଦୟରେ ହିଁ ଉଠେ । କେବଳ ସେମାନଙ୍କ ନୁହେଁ ବ୍ୟକ୍ତି ନିର୍ଧନ ହେଉ ବା ଧନବାନ ହେଉ, ପଣ୍ଡିତ ହୋଇଥାଉ ବା ମୂର୍ଖ ହୋଇଥାଉ, ଶ୍ରେଷ୍ଠ ହୋଇଥାଉ ବା ବଡ଼ ହୋଇଥାଉ, ପ୍ରତ୍ୟେକଙ୍କ ହୃଦୟରେ

---

✻ ପୃଥୁକ ଦେଇ ଉପାୟନେ । ଚଳିଲେ ଦ୍ୱାରକା ଭୁବନେ ॥
ବିପ୍ର ଚିନ୍ତଇ ପଥେ ଯାନ୍ତେ । କୃଷ୍ଣଙ୍କୁ ଭେଟିବି କେମନ୍ତେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ ୮୭ ଅ.)

ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥାଏ । ଏହି ଦ୍ୱନ୍ଦ୍ୱରେ ଗୋଟିଏ ବଡ଼ ଲାଭ ମିଳେ, ତାହା ହେଉଛି ମିତ୍ର ଦର୍ଶନ । ଯଦି ଏ ସଂସାରରେ କୌଣସି ପ୍ରକୃତ ମିତ୍ର ମିଳି ଆଆନ୍ତି, ତାହା ହେଲେ ଏ ନୀରସ ସଂସାର ମଧ୍ୟ ସରସ ହୋଇ ଉଠେ । କିନ୍ତୁ ଏ ଜଗତରେ ସଚ୍ଚା ସୁହୃଦ୍, ନିସ୍ୱାର୍ଥ ପ୍ରେମୀ ଲୋକ ସହଜରେ ମିଳନ୍ତି ନାହିଁ, ଯେଉଁମାନେ କି ପ୍ରେମ ପାଇଁ ହିଁ ପ୍ରେମ କରନ୍ତି । ସ୍ୱାର୍ଥଯୁକ୍ତ ପ୍ରେମ କୌଣସି କାରଣରୁ ପ୍ରେମ ନୁହେଁ । ତାହା ଯେଉଁମାନେ କରନ୍ତି, ସେମାନେ ବେପାରୀ, ତାହା ମିଥ୍ୟା ପ୍ରେମ । ନିସ୍ୱାର୍ଥ ସ୍ୱଚ୍ଛ ପ୍ରେମୀଙ୍କୁ ତ ସ୍ମରଣ କରିବା ମାତ୍ରେ ରୋମାଞ୍ଚ ଜାତ ହୁଏ । ଯାହାଙ୍କ ଚିତ୍ତରେ ମିତ୍ରଙ୍କ ମୂର୍ତ୍ତି ସ୍ଥାନ ପାଇଛି, ତାହାଙ୍କ ଚିତ୍ତରେ କଦାପି ଦୁଃଖଜାତ ହୋଇ ନପାରେ ।

ସୂତ କହିଲେ—‘ମୁନିଗଣ ! ଯେତେବେଳେ ସୁଦାମାଙ୍କ ପତ୍ନୀ ସୁଦାମାଙ୍କୁ ବାରମ୍ବାର ଦ୍ୱାରକା ଯିବା ପାଇଁ ଅନୁରୋଧ କଲେ, ସେତେବେଳେ ସେ କାଖରେ ପୁଟୁଳାଟିକୁ ଜାକି ଦ୍ୱାରକା ଅଭିମୁଖେ ଯାତ୍ରା କଲେ । ତାଙ୍କ ପିତାଙ୍କର ଯେଉଁ ମଇଳା ପଗଡ଼ି ଥିଲା, ତାହା ସେ ମୁଣ୍ଡରେ ବାନ୍ଧିଲେ । ପୁରୁଣା ଚିରା ଲୁଗାଟି ପିନ୍ଧିଲେ ଓ ହାତରେ ବାଡ଼ିଟିଏ ଧରି କାନ୍ଧରେ ଗୋଟିଏ ଲୋଟା ଝୁଲାଇ ସେ ଆଗେଇ ଚାଲିଲେ । ଦ୍ୱାରଦେଶ ପର୍ଯ୍ୟନ୍ତ ତାଙ୍କ ପତ୍ନୀ ବଳେଇ ଦେବାକୁ ଆସିଲେ । ସେ ଅନୁକୂଳ କଲାବେଳେ ତାଙ୍କ ପତ୍ନୀ ତାଙ୍କର ମଙ୍ଗଳ କାମନା କରି ଦେବଦେବୀଙ୍କୁ ପ୍ରାର୍ଥନା କଲେ । ସେ କହିଲେ ଭଗବାନଙ୍କୁ ସାକ୍ଷାତ କରିବାକୁ ଯିବା ପଥରେ ମୋ ସ୍ୱାମୀଙ୍କୁ ଯେପରି କୌଣସି କଷ୍ଟ ନ ହେଉ । ତାଙ୍କ ଯାତ୍ରା ସୁଖପ୍ରଦ ହେଉ । ଏହାପରେ ନିଜର ପତିଙ୍କୁ ବିଦାୟ ଦେଇ ସତୀ ଘରଭିତରକୁ ଚାଲି ଆସିଲେ ଓ ସୁଦାମା ଦ୍ୱାରକାପୁରୀ ଯାତ୍ରା କଲେ ।

ସହଜେ ତ ସୁଦାମାଙ୍କର କୃଶ ଶରୀର, ବୃଦ୍ଧାବସ୍ଥା, କେତେକ ଦିନ ହେଲା ତାଙ୍କ ପେଟରେ ଅନ୍ନ ମୁଠିଏ ବି ପଡ଼ିନାହିଁ । ସେ ବାଡ଼ିଟି ଧରି ରାସ୍ତାରେ ଚାଲି ଥାଆନ୍ତି । ଚାଲିଲା ବେଳେ ମଧ୍ୟ ଝୁଣ୍ଟି ପଡ଼ୁଥାଆନ୍ତି । ହୃଦୟରେ ତାଙ୍କର ଦ୍ୱନ୍ଦ୍ୱ ଯୁଦ୍ଧ ଲାଗିଥାଏ । ମନୁଷ୍ୟ ଯେଉଁ କାର୍ଯ୍ୟରେ ପ୍ରବୃତ୍ତ ହୁଏ, ସେହି ଚିନ୍ତା ହିଁ ତାକୁ ବିଚଳିତ କରେ । ସେହି କଥାକୁ ସେ ସର୍ବଦା ଭାବୁଥାଏ । ସୁଦାମା ଯେ ଭଗବାନଙ୍କ ମୈତ୍ରୀକୁ ଭୁଲି ଯାଇଥିଲେ, ତାହା ନୁହେଁ; ସେ ଭଗବାନଙ୍କର ପ୍ରତ୍ୟେକ ଲୀଳା ମନେ ମନେ ସର୍ବଦା ଚିନ୍ତା କରୁଥିଲେ । ସେ ଏକାନ୍ତରେ ବସି ଭଗବାନଙ୍କର ମନମୋହିନୀ ମୂର୍ତ୍ତିକୁ ସର୍ବଦା ଧ୍ୟାନ କରୁଥିଲେ । ବାଣୀରେ ତାଙ୍କ ନାମ, ଭୁବନମୋହନ ଗୁଣ ଗାନ କରୁଥିଲେ । ତାଙ୍କ ହୃଦୟରେ ଭଗବାନଙ୍କ ଦର୍ଶନର ବାସନା ସର୍ବଦା ଜାଗ୍ରତ ହେଉଥିଲା । କିନ୍ତୁ ନିଜର ପରିସ୍ଥିତି ଯୋଗୁଁ ସେ ନୀରବ ରହୁଥିଲେ । ଏ ମଳିନ ବେଶରେ ଫଟା ପୁରୁଣା ବସ୍ତ୍ର ପିନ୍ଧି ଯଦି ଭଗବାନଙ୍କ ନିକଟକୁ ଯିବେ, ତାହାହେଲେ ସମସ୍ତେ ତାଙ୍କୁ ହସି ଉଡ଼ାଇ ଦେବେ । ଭଗବାନଙ୍କୁ ବି ସଙ୍କୋଚ ହେବ । ମୋ ଯୋଗୁଁ ଭଗବାନଙ୍କୁ ଯଦି ତାଙ୍କ

ପତ୍ନୀମାନେ ତାଚ୍ଛଲ୍ୟ କରନ୍ତି, ତାହା ହେଲେ ତାହା ଅତ୍ୟନ୍ତ ଦୁଃଖଦାୟକ ହେବ । ମୋ ମନରେ ତ ସର୍ବଦା ତାଙ୍କୁ ଯାଇ ସାକ୍ଷାତ କରିବାକୁ ଇଚ୍ଛା ରହୁଛି । ମୋ ହୃଦୟ କମଳରେ ବିରାଜିତ ତାଙ୍କର କମନୀୟ ମୂର୍ତ୍ତିକୁ ତ ମୁଁ ନିରନ୍ତର ଦର୍ଶନ କରୁଛି । କିନ୍ତୁ ଏ ଦରିଦ୍ର ବେଶରେ ଦ୍ୱାରକାଧୀଶଙ୍କ ନିକଟକୁ ଯିବା ଠିକ୍ ହେଉ ନାହିଁ ।" ଏହିପରି ପୂର୍ବରୁ ଚିନ୍ତା କରି ସେ ମର୍ମେ ମର୍ମେ ଅଟକି ଯାଉଥିଲେ । କେବେହେଲେ ଦ୍ୱାରକା ଯିବାର ନାମ ବି ଧରୁ ନଥିଲେ ।

ଯେତେବେଳେ ତାଙ୍କର ପତ୍ନୀ ତାଙ୍କୁ ଅତିଶୟ ବାଧ୍ୟ କଲେ, ସେ ବିବଶ ହୋଇ ଭାବିଲେ—"ଯାହା ସହିତ ମୁଁ ଜୀବନ ବିତାଉଛି, ତା କଥା ନିଜ ଭାବନାର ଅନୁକୂଳ ନ ହୋଇଥିଲେ ମଧ୍ୟ ତାହା ମାନିନେବା ଉଚିତ । ପତି ଯଦି ପତ୍ନୀଙ୍କ କଥା ମାନି ତା ଇଚ୍ଛାନୁସାରେ କାମ କରେ, ତାହାହେଲେ ଉଭୟଙ୍କ ମଧ୍ୟରେ ପ୍ରେମ ଅଧିକ ବଢ଼ିଯାଏ । ପତ୍ନୀ ଗର୍ବ କରେ ଯେ, ମୋର ପତି ମୋକଥା ରକ୍ଷା କଲେ । ଏହି କାରଣରୁ ସେ ନିଜ ପତ୍ନୀଙ୍କ କଥା ରକ୍ଷା କରି ଦ୍ୱାରକା ତ ଯାଉଥିଲେ; କିନ୍ତୁ ସେ ଭାବୁଥିଲେ ମୁଁ ଭଗବାନଙ୍କୁ କଦାପି ଧନ ମାଗିବି ନାହିଁ । ସ୍ତ୍ରୀ ଲୋକମାନେ ତ ବ୍ୟବହାର କଥା ବୁଝି ପାରନ୍ତି ନାହିଁ । ମୁଁ କପରି ଅବା ମୋ ମିତ୍ର ଭଗବାନଙ୍କୁ ଧନ ମାଗିବି ? ସେ ଭାବି ପାରନ୍ତି ଧନ ଲୋଭରେ ଏ ମୋ ପାଖକୁ ଆସିଛି । ମନସ୍ୱୀ ପୁରୁଷ ଆପଦ ବିପଦ ପଡ଼ିଲେ ଅପରିଚିତ ବ୍ୟକ୍ତିଙ୍କୁ ବରଂ ଯାଚଞ୍ଚା କରିପାରେ; କିନ୍ତୁ ପରିଚିତଙ୍କ ଆଗରେ ହାତପାତିବାକୁ ସହଜରେ ସାହସ କରିପାରେ ନାହିଁ । ପରିଚିତଙ୍କ ସହିତ ତ ମାନ ଅପମାନ ସମ୍ବନ୍ଧରେ ସଚେତନ ହେବାକୁ ପଡ଼େ । ଯେଉଁଠି ଯାହାର ପରିଚୟ ନଥାଏ, କେହି କାହାକୁ ଦୁଇ ପାହାରେ ପିଟିଦେଲେ ମଧ୍ୟ କିଛି ଚିନ୍ତା ନାହିଁ ! କିନ୍ତୁ କୌଣସି ପରିଚିତ ବ୍ୟକ୍ତି ଯଦି ଦୁଇ ପଦ କଡ଼ା କଥା କହିଦିଏ, ତାହା ହେଲେ ସେଥିରେ ବଡ଼ ଅପମାନିତ ହେବାକୁ ପଡ଼େ । ସୁଖ ଦୁଃଖ ତ ଭାଗ୍ୟ ଅନୁସାରେ ମିଳେ । ଭଗବାନ ତ ପ୍ରତ୍ୟେକ ଅନ୍ତରର କଥା ଜାଣନ୍ତି । ତାଙ୍କୁ କୌଣସି କଥା ଅଜଣା ନଥାଏ । ସ୍ତ୍ରୀର ଆଗ୍ରହରେ ମୁଁ ଦ୍ୱାରକା ଯାଉଛି । ଆଜି ମୋର ବହୁତ ଦିନର ଲାଳସା ପୂର୍ଣ୍ଣ ହେବ । ଆଜି ସେହି ସଚ୍ଚିଦାନନ୍ଦ ବିଗ୍ରହଙ୍କୁ ଦର୍ଶନ କରି ମୁଁ ଧନ୍ୟ ହେବି ।

ସେ ପୁନଶ୍ଚ ଚିନ୍ତା କଲେ—"ମୋତେ ଭଗବାନଙ୍କ ଦର୍ଶନ ମିଳିବ କି ନାହିଁ । ସେ ତ ରାଜାଧିରାଜ, ନିଜ ମହଲରେ ରହୁଥିବେ । ତାଙ୍କର ପହରା ପଡ଼ୁଥିବ । ମୋପରି ଦରିଦ୍ରକୁ କିଏ ଅବା ତାଙ୍କ ପାଖକୁ ନେବ ? ଦ୍ୱାରପାଳ ମୋ ବେଶକୁ ଦେଖି ମୋତେ ତ ଭିତରକୁ ଛାଡ଼ିବ ନାହିଁ । ହଁ ସେ ଯଦି ମୋତେ ଅଟକାଏ, ତାହାହେଲେ ମୁଁ ଦ୍ୱାର ଦେଶରେ ବସି ରହିବି । କେତେବେଳେ ହେଲେ ସେ ତ ମହଲରୁ ବାହାରକୁ ଆସିବେ । ସେତେବେଳେ ମୁଁ ତାଙ୍କୁ ଭେଟିବି । ସେ ତ ମୋତେ ନିଶ୍ଚୟ ଚିହ୍ନିବେ; କିନ୍ତୁ ଘଟଣା ବହୁ

ପ୍ରଚୁଣା ହୋଇଗଲାଣି । ସମ୍ଭବତଃ ସେ ମୋତେ ଭୁଲି ଗିଲେଣି । ହଁ ଯଦି ଭୁଲି ଯାଇଥିବେ, ତାହାହେଲେ ମୁଁ ସବୁକଥା ମନେ ପକାଇ ଦେବି ।"

ଏହିପରି ମନରେ ଭାବି ସେ ବାଡ଼ି ଧରି ଅଗେଇ ଚାଲିଲେ । ନଗରଠାରୁ କିଛି ଦୂର ଯାଇ ସେ ଥକି ପଡ଼ିଲେ । ତାଙ୍କର ଆଉ ଚାଲିବାକୁ ବଳ ପାଇଲା ନାହିଁ । ସଖୀ ତାଙ୍କୁ କିଛି ଚଣାଭଜା ଦେଇଥିଲେ । ଭୋକ ହେବାରୁ ବାଟରେ ସେ ତାହା ଖାଇବାକୁ ଇଚ୍ଛା କଲେ । ସେ ଦେଖିଲେ ଆଗରେ ଗୋଟିଏ ଅତି ସୁନ୍ଦର ଶିବ ମନ୍ଦିର ଅଛି । ବଟବୃକ୍ଷର ଛାୟା ମଧ୍ୟ ସେଠାରେ ଅଛି । ନିକଟରେ ସୁନ୍ଦର ପକ୍କା କୂପ । ସେତେବେଳକୁ ସେ ନଗରଠାରୁ ଏକ କୋଶ ବାଟ ବି ଯାଇ ନଥିଲେ । ତଥାପି ତାଙ୍କୁ ଏପରି ବୋଧ ହେଲା, ସତେ ଯେପରି ସେ ଅନେକ ବାଟ ଚାଲି ଆସିଛନ୍ତି । ଚାଲି ଚାଲି ତାଙ୍କ ବହୁତ ଶୋଷ ହେଉଥାଏ । ସେ ନିଜ କାନ୍ଧରୁ ଲୋଟା (ତାଳ) ଦଉଡ଼ିକୁ କାଢ଼ି କୂଅରୁ ଲୋଟାରେ ପାଣି କାଢ଼ିଲେ । ପାଣି କାଢ଼ି ମୁହଁ ହାତ ଆଦି ଧୋଇଲେ । ପୁନଶ୍ଚ ତାଳେ ପାଣି କାଢ଼ି ଗୋଟିଏ ପରିଷ୍କାର ସ୍ଥାନରେ ଯାଇ ବସିଗଲେ । ସେଠାରେ ସେ କିଛି ଚଣାଭଜା ଚୋବାଇ ଲୋଟାଏ ଜଳ ପିଇଗଲେ । ବାଟ ଚାଲି ଚାଲି ସେ କ୍ଳାନ୍ତ ହୋଇ ପଡ଼ିଥିଲେ । ତେଣୁ ବଟବୃକ୍ଷ ଛାଇରେ ଶୋଇଗଲେ ।

ସୂତ କହୁଛନ୍ତି—"ମୁନିଗଣ ! ଯେ ପର୍ଯ୍ୟନ୍ତ ଜୀବ ଭଗବାନଙ୍କ ଆଡ଼କୁ ଅଗ୍ରସର ନ ହୋଉଛି, ସେ ପର୍ଯ୍ୟନ୍ତ ସେ ଦୁଃଖଭୋଗ କରୁଥାଏ । ଯେତେବେଳେ ସେ ଭଗବାନଙ୍କ ଆଡ଼କୁ ପାଦ ବଢ଼ାଏ, ତାହାର ସମସ୍ତ ଦୁଃଖ ଶୋକ ଦୂର ହୋଇଯାଏ । ଭଗବାନ ସ୍ୱୟଂ ତାହାର ଯୋଗ-କ୍ଷେମ ବିଷୟରେ ଚିନ୍ତା କରନ୍ତି । ଭଗବାନ ଦେଖିଲେ ସୁଦାମା ମୋ ନିକଟକୁ ଆସିବାକୁ ଚାହୁଁଛି । ମୋତେ ସାକ୍ଷାତ କରିବା ପାଇଁ ଚାଲି ଆସିଲାଣି । ସେ ଯଦି ଏହିପରି ଏକ ଏକ କୋଶ ଚାଲେ ଓ ବିଶ୍ରାମ ନିଏ, ତେବେ ମୋ ପାଖରେ ଆସି ପହଞ୍ଚିବାକୁ ତାକୁ ବହୁତ ଦିନ ଲାଗିଯିବ । କେବେ ସେ ଆସି ଏଠାରେ ପହଞ୍ଚିବ ତାହା କହି ହେବ ନାହିଁ । ଆଉ ମୋ ଭକ୍ତକୁ କୌଣସି ପ୍ରକାର କଷ୍ଟ ନ ହେଉ । ଯିଏ ମୋ ନିକଟକୁ ଏକପାଦ ଆଗେଇ ଆସେ ମୁଁ ତା ପାଖକୁ ୯୯ ପାଦ ଯାଇ ତାକୁ ଆଦରି ନିଏ । ଏହା ଚିନ୍ତା କରି ସେ ଯୋଗମାୟାଙ୍କୁ ଡକାଇ ଆଜ୍ଞା ଦେଲେ—"ମୋର ଭକ୍ତ ସୁଦାମାକୁ ଧୀରେ ଉଠାଇ ଆଣି ଦ୍ୱାରକାର ଉପବନରେ ଶୁଆଇ ଦିଅ" । ଭଗବାନଙ୍କ ଆଜ୍ଞା ପାଇ ଯୋଗମାୟା ମୁହୂର୍ତ୍ତକ ମଧ୍ୟରେ ସୁଦାମାଙ୍କୁ ସେଠାରୁ ଉଠାଇ ଆଣିଲେ ଓ ଭଗବାନଙ୍କ ମହଲ ସମ୍ମୁଖରେ ଥିବା ଅତ୍ୟନ୍ତ ସୁନ୍ଦର ଉପବନ ମଧ୍ୟରେ ସବୁଜ ଦୁବ ଶଯ୍ୟାରେ ଶୁଆଇ ଦେଲେ । କିଛି ସମୟ ପରେ ଯେତେବେଳେ ତାଙ୍କର ନିଦ ଭାଙ୍ଗିଲା; ସେ ଆଖି ଖୋଲି ଚାରିଆଡ଼କୁ ଚାହିଁ ବିସ୍ମିତ ହୋଇଗଲେ । ସେ ଦେଖିଲେ ତାଙ୍କ ସମ୍ମୁଖରେ ସୁବର୍ଣ୍ଣ ନିର୍ମିତ ସହସ୍ର ସହସ୍ର ମହଲ । ବନ, ଉପବନ, ସରୋବର ଚତୁର୍ଦ୍ଦିଗରେ

ପରିବେଷ୍ଟିତ । ଚତୁର୍ଦ୍ଦିଗ ସୁଗନ୍ଧରେ ଭରି ହୋଇଛି, ସେ ଯାଇ ନିକଟରେ କାମ କରୁଥିବା ମାଳୀମାନଙ୍କୁ ପଚାରିଲେ, କ'ଣ ଭାଇ ! ଏ କେଉଁ ନଗରୀ ? ଏଠାରୁ ଦ୍ୱାରକା ଆଉ କେତେ ଦୂର ?"

ମାଳୀମାନେ ହସି ହସି କହିଲେ—"ମହାରାଜ ! ଆପଣ କେଉଁଠୁ ଭଙ୍ଗ ଖାଇ ଆସିଛନ୍ତି ନା କ'ଣ ? ଦ୍ୱାରକାରେ ବସି ଦ୍ୱାରକା କଥା ଆମକୁ ପଚାରୁଛନ୍ତି ?"

ସୁଦାମା ଚମକି ପଡ଼ି କହିଲେ—"ଆରେ ଏ ସବୁ କ'ଣ ? ମୁଁ କ'ଣ କେତେବେଳେ ଦ୍ୱାରକାରେ ଆସି ପହଞ୍ଚି ଯାଇଛି ?" କିପରି ଏଠାକୁ ମୁଁ ଆସିଲି ? ମୁଁ କ'ଣ ଶୋଇ ଶୋଇ ଏତେବାଟ ଚାଲିଆସିଲି ? ଏତ ବଡ଼ ଆଶ୍ଚର୍ଯ୍ୟ କଥା । ଆରେ ଭାଇ ! ଏଠାରେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଘର କେଉଁଠା ? ଏତେ ବଡ଼ ବଡ଼ ଘରମାନଙ୍କ ମଧ୍ୟରୁ କେଉଁ ଘରେ ସେ ରହୁଛନ୍ତି ମୋତେ ଦୟାକରି କହିବେ କି ?"

ମାଳୀମାନେ ହସି ହସି କହିଲେ—"ମହାରାଜ ! ଆମେ ଜାଣିପାରୁଛୁ ଆପଣ ଏଠାକୁ ଏଇ ପ୍ରଥମଥର ବୋଧ ହୁଏ ଆସିଛନ୍ତି ? ଏ ସମସ୍ତ ଘର ଶ୍ରୀକୃଷ୍ଣଚନ୍ଦ୍ରଙ୍କର । ତାଙ୍କର ଷୋଳ ସହସ୍ର ଏକଶହ ଆଠରାଣୀ ଏହି ଘରମାନଙ୍କରେ ରହନ୍ତି ।"

ସୁଦାମା ଆଶ୍ଚର୍ଯ୍ୟ ହୋଇ କହିଲେ—"ଆରେ ବାପରେ ବାପ୍ ! ଷୋଳ ସହସ୍ର ଏକଶହ ଆଠରାଣୀ ? ମୋ ଘରେ ତ ଗୋଟିଏ ବ୍ରାହ୍ମଣୀ । ମୁଁ ଏ ଷୋଳ ସହସ୍ର ଘରେ କୃଷ୍ଣଙ୍କୁ କେଉଁଠି ଯାଇ ଖୋଜିବି ? ମୁଁ ତ ଚାଲି ଚାଲି ଥକି ପଡ଼ିଛି ।"

ସୁଦାମା ସରଳତାର ସହିତ କହିଲେ—"ଭାଇ ! ମୋତେ ଏ ମହଲ ଭିତରକୁ କିଏ ଛାଡ଼ିବ ? ମୁଁ ତ ଦେଖିପାରୁଛି ଯେ ବଡ଼ ବଡ଼ ଅସ୍ତ୍ରଶସ୍ତ୍ରଧାରୀ ପହରାବାଲା ଏପାଖ ସେପାଖ ହେଉଛନ୍ତି ?"

ମାଳୀମାନେ କହିଲେ—"ମହାରାଜ ! ବ୍ରାହ୍ମଣଙ୍କ ପାଇଁ ଭିତରକୁ ଯିବାକୁ ମନା ନାହିଁ । ଆପଣ ନିର୍ଭୟରେ ଭିତରକୁ ଚାଲିଯାଆନ୍ତୁ ।"

ଏହା ଶୁଣି ସୁଦାମା ଧୈର୍ଯ୍ୟ ଧରିଲେ । ସେ ନିଜର ଦାଢ଼ିକୁ ଆଗକୁ ଠିକ୍ ଠିକ୍ କରି ପକାଇ ମହଲ ଆଡ଼େ ଅଗ୍ରସର ହେଲେ । ଭଗବାନଙ୍କ ନିବାସକୁ ଯିବାକୁ ହେଲେ ସାତଟି ଦ୍ୱାର ପାରହୋଇ ଯିବାକୁ ପଡ଼େ । ପ୍ରଥମ ତିନିଟି ଦ୍ୱାରରେ ତ ଶସ୍ତ୍ରଧାରୀ ସୈନିକଙ୍କ ଛାଉଣୀ ପଡ଼ିଛି । ଭିତର ତିନିଟି ଦ୍ୱାରରେ ହାତରେ ବେତ ଧରି କେବଳ ଦ୍ୱାରପାଳ ଜଗି ରହୁଥାଏ ଏବଂ ସୈନିକ ଶସ୍ତ୍ର ଧରି ଏପାଖ ସେପାଖ ହେଉଥାଆନ୍ତି । ସୁଦାମା ଏହା ଦେଖି ତାଙ୍କ ଛାତି ଥରିବାକୁ ଲାଗିଲା । ସେ ଭାବୁଥାଆନ୍ତି; ମୋର ସ୍ତ୍ରୀ

ମୋତେ ଅଧାଅ ରେ ଦ୍ୱାରଣରେ ପକାଇଲା । କପଣ ଏତେ ଖାଡ଼ାହାଡ଼ରେ ମୁଁ କାହାକୁ କ'ଣ ପଚାରିବି ଭଲା ? ହେତେଗୁଡ଼ାଏ ସୈନ୍ୟ ତ ଏକାଭଳି ପୋଷାକ ପିନ୍ଧି ଏପାଖ ସେପାଖ ହେଉଛନ୍ତି । ଏମାନେ ଅବା କାହିଁକି ମୋତେ ଭିତରକୁ ଛାଡ଼ିବେ ?" ଏହା ଚିନ୍ତା କରି ସେ ଦ୍ୱାର-ଦେଶରେ ଯାଇ ବସି ପଡ଼ିଲେ । ଏହି ସମୟରେ ସେ ଦେଖିଲେ ଦଳକ ଗୁମ୍ପା ଲଗାଇ ପୀତବସ୍ତ୍ର ପିନ୍ଧି ବହୁତ ବ୍ରାହ୍ମଣ ମଣ୍ଡଳୀ ଭିତରକୁ ଯାଉଛନ୍ତି । ସେମାନଙ୍କୁ ସୈନିକ ଅଟକାଉ ନାହାନ୍ତି । ସେତେବେଳେ ସେ ବିଶ୍ୱାସ କଲେ—ଏଠାରେ ଭିତରକୁ ଯିବାକୁ ବ୍ରାହ୍ମଣଙ୍କୁ କେହି ଅଟକାନ୍ତି ନାହିଁ । କିଛି ସମୟ ପରେ ଆଉ ଗୋଟିଏ ବ୍ରାହ୍ମଣ ଦଳ ଆସିଲେ । ଏବେ ସେମାନଙ୍କ ସହିତ ମିଶି ସୁଦାମା ମଧ୍ୟ ଭିତରକୁ ପଶିଗଲେ । ସେହି ବ୍ରାହ୍ମଣଙ୍କ ମଧ୍ୟରେ ସେ ଏକପ୍ରକାର ଯାଉଥାଆନ୍ତି ଯେ, ତାଙ୍କୁ ଯେପରି କେହି ଦେଖିପାରିବେ ନାହିଁ । ସେ ଏହିପରି ଛଅଟି ସୈନିକ ଜଗିଥିବା ଦ୍ୱାର ପାର ହୋଇଗଲେ । ତାହାପରେ ଅନ୍ୟ ଛଅଟି ବେତଧାରୀ ପ୍ରହରୀ ଜଗିଥିବା ଦ୍ୱାରକୁ ମଧ୍ୟ ପାର ହୋଇଗଲେ । ଷଷ୍ଠ ଦ୍ୱାର ପାଖରେ ଯାଇ ସମସ୍ତ ବ୍ରାହ୍ମଣ ଅଟକି ଗଲେ । ଦାନାଧ୍ୟକ୍ଷ ସମସ୍ତଙ୍କୁ ସେଠାରେ ଦାନ ଦେଉଥିଲେ । ଯିଏ ଯାହା ମାଗୁଥିଲେ ତାଙ୍କୁ ତାହା ଦିଆଯାଉଥିଲା ।

ସୁଦାମା ସେଠାରେ ଯାଇ ଚୁପ୍‌ଚାପ୍ ଠିଆ ହୋଇଥିଲେ । ପ୍ରଧାନ ପ୍ରହରୀ ତାଙ୍କୁ ପଚାରିଲା— 'କହନ୍ତୁ ମହାରାଜ ! ଆପଣଙ୍କର କ'ଣ ଦରକାର ?"

ସୁଦାମା କହିଲେ—"ମୁଁ ତ ଶ୍ରୀ କୃଷ୍ଣଚନ୍ଦ୍ରଙ୍କୁ ଭେଟିବାକୁ ଚାହୁଁଛି ।'

ପ୍ରଧାନ ପ୍ରହରୀ ପଚାରିଲା—"ତାଙ୍କ ସହିତ ଆପଣ କାହିଁକି ସାକ୍ଷାତ କରିବେ ? ଯାହା କହିବା କଥା, ତାହା ମୋତେ କୁହନ୍ତୁ । ଆପଣଙ୍କର ଯାହା ଦରକାର ମୁଁ ତାହା ଆଣି ଦେବି ।"

ସୁଦାମା କହିଲେ—"ମୋର କୌଣସି ବସ୍ତୁ ଆବଶ୍ୟକ ନାହିଁ । ଶ୍ରୀକୃଷ୍ଣ ହେଉଛନ୍ତି ମୋର ମିତ୍ର । ମୁଁ ତାଙ୍କୁହିଁ ଭେଟିବାକୁ ଆସିଛି ?

ପ୍ରଧାନ ପ୍ରହରୀ ଚମକିପଡ଼ି ପଚାରିଲେ—"ଭଗବାନ ଆପଙ୍କେ ମିତ୍ର ? ତାଙ୍କ ସହିତ ଆପଣଙ୍କର କେବେ ମିତ୍ରତା ହେଲା ? ତାଙ୍କ ସହିତ ଆପଣଙ୍କର କି ସମ୍ବନ୍ଧ ? ସେ ଆପଣଙ୍କର କ'ଣ ହୁଅନ୍ତି ?"

ସୁଦାମା କହିଲେ—"ମୁଁ ଓ ସେ ସାଙ୍ଗ ହୋଇ ଅବନ୍ତୀ ନଗରୀରେ ପଢ଼ୁଥିଲୁ । ସେହିଦିନଠାରୁ ତାଙ୍କ ସହିତ ମୋର ମିତ୍ରତା । ଆଉ ସମ୍ବନ୍ଧରେ ସେ ମୋର ବନ୍ଧୁ ହେବେ । ତାଙ୍କର ବଡ଼ ଶାଳୀକୁ ମୁଁ ବିବାହ କରିଛି ।"

ଏହା ଶୁଣି ସମସ୍ତେ ହସିବାକୁ ଲାଗିଲେ । ସମସ୍ତେ ପଚାରିଲେ—"ମହାରାଜ ! ଆପଣଙ୍କ ଧର୍ମପତ୍ନୀ କେଉଁ ରାଜାଙ୍କ କନ୍ୟା ? ଭଗବାନଙ୍କର ତ ଷୋଳ ହଜାର ଏକଶହ ଆଠ ରାଣୀ । ସେମାନଙ୍କ ମଧ୍ୟରୁ କେଉଁ ରାଣୀଙ୍କ ବଡ଼ ଭଉଣୀଙ୍କୁ ଆପଣ ବିବାହ କରିଛନ୍ତି ?"

ସୁଦାମା କହିଲେ—"ମୋର ପତ୍ନୀ ଜଳନିଧି ସମୁଦ୍ରର ଜ୍ୟେଷ୍ଠା କନ୍ୟା ଅଲକ୍ଷ୍ମୀ ତାଙ୍କର ସାନ ଭଉଣୀ ଲକ୍ଷ୍ମୀଙ୍କୁ ଦ୍ୱାରିକାପତି ବିବାହ କରିଛନ୍ତି । ସେହି ହିସାବରେ ସେ ହେଉଛନ୍ତି ମୋର ସଢ଼ୁ । ଏହା ଠିକ୍ ନା ନୁହେଁ ?"

ଏହା ଶୁଣି ସମସ୍ତେ ଖିଲ୍ ଖିଲ୍ ହୋଇ ହସି ଉଠିଲେ । କେତେକ ଲୋକ କହୁଥିଲେ—"ତାଙ୍କୁ ଭଗବାନଙ୍କ ନିକଟକୁ ଯିବାକୁ ଛାଡ଼ିଦିଅ । ସେ ଅତ୍ୟନ୍ତ ଧୀନହୀନ !" ଆଉ କେତେକ କହୁଥିଲେ—"ସେ ବୋଧହୁଏ କିଛି ମାଗିବା ପାଇଁ ଭଗବାନଙ୍କ ପାଖକୁ ଆସିଛନ୍ତି । ବ୍ରହ୍ମା ବ୍ରାହ୍ମଣମାନଙ୍କୁ ହିଁ ଯାଚନ୍ତା କରିବା ପାଇଁ ସୃଷ୍ଟି କରିଛନ୍ତି ।"

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ମହାନ୍ ଐଶ୍ୱର୍ଯ୍ୟ ଦେଖି ସୁଦାମାଙ୍କର ବଡ଼ କୌତୁହଳ ଜାତ ହେଲା । ଭଗବାନଙ୍କୁ ଭେଟିବା ପାଇଁ ସେ ଉତ୍କଣ୍ଠିତ ହେଲେ । ଏବେ ସେ ଯେପରି ଭଗବାନଙ୍କୁ ସାକ୍ଷାତ କଲେ, ତାହା ମୁଁ ପରବର୍ତ୍ତୀ ଅଧ୍ୟାୟରେ ଆପଣମାନଙ୍କୁ କହିବି । ଏହା ଅତ୍ୟନ୍ତ କରୁଣ ପୂର୍ଣ୍ଣ ରୋମାଞ୍ଚକାରୀ ପ୍ରସଙ୍ଗ ।"

## ଛପ୍ପୟ

ଜାଗେ, ପୁଛେଁ କହଁ । ଦ୍ୱାରକା କୃଷ୍ଣ ରହେଂ କତ ।
ଭୌଂଚକ୍କେ ସେ ଲଖେଂ ପରମ ବିସ୍ମିତ ହ୍ୱୈଂ ଇତ ଉତ ॥
ଲୋଗନ ଦୟୌ ବତାଇ ରୁକମିନୀ ମହଲନ ଆୟେ ।
ଦ କଜନ ସହିତ ଛିଁ ଦ୍ୱାର ଲାଁଘ ହିୟ ଅତି ହରଷାୟେ ॥
ମିତ୍ର ମିଲନ କୀ ଚଟପଟୀ, ଲଗୀ ସବନ ତେଂ ଦ୍ୱିଜ କହତ ।
କୃଷ୍ଣ ହମାରେ ସଖା ହୈଁ, ହମ ଉନତେଂ ମିଲବେ ଚହତ ॥

# ଶ୍ରୀକୃଷ୍ଣ ସୁଦାମା ମିଳନ

**ତଂ ବିଲୋକ୍ୟାଚ୍ୟୁତୋ ଦୂରାତ୍ ପ୍ରିୟାପର୍ଯ୍ୟଙ୍କମାସ୍ଥିତଃ ।**
**ସହସୋତ୍ଥାୟ ଚାଭ୍ୟେତ୍ୟ ଦୋର୍ଭ୍ୟାଂ ପର୍ଯ୍ୟଗ୍ରହୀନ୍ମୁଦା ।। ***

**(ଶ୍ରୀ ଭା : ୧୦ ସ୍କ : ୮୦ ଅ. ୯ ଶ୍ଳୋକ)**

## ଛପ୍‌ପୟ

ସବ ସେବକ ସୁନ ହିଁ ସହିଁ ବ୍ୟଂଗ କରି ଜରି ଖତସବେଂ ।
ଦେଖେରେ ଖରେ ବିପ୍ର ସରଲ ଚିତ୍ତ ଜାତ ବତାବେଂ ।।
ପ୍ରିୟା ସହିତ ପ୍ରଭୁ ପଲଁଗ ପଧାରେ ଦୀଠି ପରୀ ଜବ ।।
ଦୌଡରେ ହେକେଂ ବିକଲ ବିସାରୀ ତନ ସୁଧି ବୁଧି ସବ ।।
ଦୋଉ ଭୁଜା ପସାରିକେଂ, ଲପଟାୟେ ହୃଦୟ ତେତେଂ ତୁରତ ।
ମିତ୍ର ମିତ୍ର ପୁନ ପୁନ କହିତ, ନେହ ନୀର ନୟନନୀ ବହତ ।।

ପ୍ରେମରେ କୌଣସି ନିୟମ ରହେ ନାହିଁ । ବଡ଼ପଣ ରହେ ନାହିଁ । ସଙ୍କୋଚ ରହେ ନାହିଁ । ଭେଦଭାବ ବି ରହେ ନାହିଁ । ଆମେ ଏ କାର୍ଯ୍ୟ କଲେ ଲୋକେ କ'ଣ କହିବେ, ଆମ ପ୍ରତିଷ୍ଠାରେ ଆଞ୍ଚ କାଳେ ଆସିବ, ଆମ ପ୍ରଭାବ କାଳେ କମିଯିବ, ଏପରି ବିଚାର ପ୍ରେମରେ ନଥାଏ । ପ୍ରକୃତ ପ୍ରେମ ଦର୍ଶନରେ ହୃଦୟ ଆପେ ଆପେ ଦ୍ରବଣ ହୋଇଯାଏ । ବିନା ପ୍ରଯତ୍ନରେ ହୃଦୟ ତରଳିଯାଏ । ନୟନରୁ ଅଶ୍ରୁ ଝରେ ଓ ଶରୀର ରୋମାଞ୍ଚିତ ହୋଇ ଉଠେ । ପ୍ରକୃତ ପ୍ରେମ ଦର୍ଶନରେ ଅଙ୍ଗେ ଅଙ୍ଗେ ଏକ ପ୍ରକାରର ବିଚିତ୍ର ବିସ୍ଫୂର୍ତ୍ତି ଆସେ । ହୃଦୟରେ ପ୍ରେମ ଭାବ ବିଶେଷ ରୂପେ ଉଦ୍ରେକ ହେଲେ ମନୁଷ୍ୟ

---

* ଗୋବିନ୍ଦ ବିପ୍ର ମୁଖ ଦେଖି । ଉଠିଲେ ଆସନ ଉପେକ୍ଷି ।।
ପ୍ରିୟାର ସଙ୍ଗ ଛାଡ଼ି ହରି । ବିପ୍ରକୁ ଆଲିଙ୍ଗନ କରି ।।
ଭକତବନ୍ଧୁ ଦାମୋଦର । ହୃଦେ ଲଗାଇ ବିପ୍ରବର ।।

**(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ : ୮୬ ଅ.)**

ନିଜେ ନିଜକୁ ଭୁଲିଯାଏ । ଚହ ସ୍ବହେଁ ପ୍ରେମୀକୁ ନିଜ ସହିତ ମିଶାଇ ଏକ କରି ନେବାକୁ । ସେତେବେଳେ ଆଉ ଦ୍ୱୈଧୀଭାବ ରହେ ନାହିଁ । କେତେକ ଲୋକ ଏହି ପ୍ରେମ ଚେଷ୍ଟାଗୁଡ଼ିକୁ ଦନ୍ତର ସହିତ କରିଥାଆନ୍ତି; କିନ୍ତୁ ହାର୍ଦ୍ଦିକ ଭାବଗୁଡ଼ିକୁ ହୃଦୟ ସଙ୍ଗେ ସଙ୍ଗେ ଗ୍ରହଣ କରି ନିଏ । ତାହା ଅଧିକ ଦିନ ପର୍ଯ୍ୟନ୍ତ ରହିପାରେ ନାହିଁ । ଯାହାଙ୍କ ହୃଦୟରେ ପ୍ରେମର ତରଙ୍ଗ ଉଠେ, ସ୍ନେହର ହିଲ୍ଲୋଳରେ ଯାହାଙ୍କ ହୃଦୟ ଦ୍ରବୀଭୂତ ହୁଏ, ନବନୀତ ଭଳି ସ୍ନିଗ୍ଧ ଓ କୋମଳ ହୋଇଯାଏ, ସେ ମନୁଷ୍ୟ ନୁହନ୍ତି, ନରୋତ୍ତମ । ପୁରୁଷ ନୁହନ୍ତି ପରମେଶ୍ୱର । ପ୍ରେମ ହିଁ ଭଗବାନଙ୍କର ରୂପ । ପ୍ରେମ ଓ ପ୍ରଭୁଙ୍କ ମଧ୍ୟରେ କୌଣସି ଅନ୍ତର ନାହିଁ । ଭେଦଭାବ ନାହିଁ । ହୃଦୟରେ ପ୍ରେମ ଉତ୍ପନ୍ନ ହେବା ମାତ୍ରେହିଁ ହରି ଧାଇଁ ଆସି ସେହି ହୃଦୟରେ ମିଶିଯାଆନ୍ତି ଓ ସେ ସ୍ୱୟଂ ପ୍ରେମ ହୋଇ ସ୍ନେହ ନୀର ନୟନରୁ ଝରାନ୍ତି । ପ୍ରେମୀକୁ ପ୍ରଭୁ ନିଜ ସହିତ ମିଳିତ ନ କରାଇ ସ୍ୱୟଂ ତାହାରି ଭଳି ହୋଇ ତାକୁ ଆପଣାର କରି ନିଅନ୍ତି । ଏହା ହିଁ ସେହି ମହତୋମହୀୟାନଙ୍କର ମହତ୍ତ୍ୱ ।"

ସୂତ କହିଲେ—"ମୁନିଗଣ ! ରାଜକର୍ମଚାରୀ ଯେତେ ସରଳ ଓ ସଜ୍ଜନ ହୋଇଥିଲେ ମଧ୍ୟ ତାଙ୍କଠାରେ ପ୍ରାୟ କିଛି ନା କିଛି ରୁକ୍ଷତା ରହିଥାଏ । ଏହା ତାଙ୍କର ଦୋଷ ବୋଲି କହି ହେବ ନାହିଁ । ପ୍ରକୃତ କାରଣ ହେଲା, ସେମାନଙ୍କ ପାଖକୁ ଯେଉଁମାନେ ଆସନ୍ତି, ସେମାନେ ସାଧାରଣତଃ ଅର୍ଥୀ । ଅର୍ଥୀ ଅନ୍ୟର ବିବଶତା ଆଡ଼କୁ ଧ୍ୟାନ ଦିଏ ନାହିଁ । ସିଏ ତ ନିଜ କାର୍ଯ୍ୟ ହାସଲ କରିବାକୁ ଆସିଥାଏ । ସେ ବାରମ୍ବାର ସେହି ଗୋଟିଏ କଥା କହୁଥାଏ ଓ ସମସ୍ୟା ପଡ଼ିଲେ ଏପରି ଭାବ ବ୍ୟକ୍ତ କରେ ଯେ, ଉଚ୍ଚ ଅଧିକାରୀ ପାଖରେ ଯାଇ ତାକୁ ହାଜର ହେବାକୁ ପଡ଼େ । ସେହିଭଳି କଥା ନିତ୍ୟ ଶୁଣି ଶୁଣି କର୍ମଚାରୀ ଅଭ୍ୟସ୍ତ ହୋଇ ଯାଇଥାଏ ଓ ସେପରି କଥା ଉପରେ ବିଶେଷ ଗୁରୁତ୍ୱ ଦିଏ ନାହିଁ ।

ଯେତେବେଳେ ସୁଦାମା କହିଲେ ଯେ, ଶ୍ରୀକୃଷ୍ଣ ହେଉଛନ୍ତି ମୋର ମିତ୍ର, ସେତେବେଳେ ସମସ୍ତେ ତାଙ୍କୁ ଏଣୁତେଣୁ ପ୍ରଶ୍ନ ପଚାରିଲେ । ସରଳ ବ୍ରାହ୍ମଣ ରାଜକର୍ମଚାରୀଙ୍କର ବ୍ୟଙ୍ଗ କଥାକୁ କପଟ ଅବା ବୁଝିପାରନ୍ତେ । ସେ ନିଷ୍କପଟ ଭାବରେ ସବୁ କଥାର ଉତ୍ତର ଦେଲେ । ଲୋକେ ତାଙ୍କର ସରଳତା ଉପରେ ମଧ୍ୟ ଉପହାସ କଲେ ଓ ଆହୁରି ଅନେକ ପ୍ରଶ୍ନ କଲେ । ସାଦାସିଧା ଲୋକ ହୋଇଥିବାରୁ ତାଙ୍କୁ ଅନେକ ଲୋକ ଉପହାସ କରି ଆନନ୍ଦ ପାଇଲେ । ବିଶେଷ କରି ଚଞ୍ଚଳ ପ୍ରକୃତିର ଯୁବକ ଓ ଯୁବତୀଙ୍କୁ ଯଦି କେଉଁଠି କେହି ସାଦାସିଧା ସରଳ ଲୋକ ମିଳିଯାଆନ୍ତି, ତାହାହେଲେ ଏମାନେ ତାଙ୍କୁ ହସି ଉଡ଼ାଇ ଦିଅନ୍ତି ।

ସପ୍ତମ ଦ୍ୱାର ହିଁ ଭଗବାନଙ୍କ ଅନ୍ତଃପୁର ଦ୍ୱାର ଥିଲା । ସେଠାକୁ ସର୍ବସାଧାରଣ ଲୋକ ତ ସହଜରେ ଯାଇ ପାରୁ ନଥିଲେ, ତଣ୍ଡସ୍ତ ଗୁରୁଙ୍କର, ଉଦ୍ଧବାଦି ପରମବିଶ୍ୱାସପାତ୍ର

ମନ୍ତ୍ରୀ, ସାଧୁ ବ୍ରାହ୍ମଣ ଓ ରାଣୀମାନେ ସେହି ଦ୍ୱାର ଦେଇ ଭିତରକୁ ଅବାଧରେ ଯାଇ ପାରୁଥିଲେ । ସେଠାକୁ ପ୍ରାୟ ଏହିପରି ଲୋକ ଯାଇ ପାରୁଥିଲେ, ଯେଉଁମାନଙ୍କୁ କି ସ୍ତ୍ରୀ ଲୋକମାନେ ଲୁଚୁ ନଥିଲେ । ଭଗବାନଙ୍କର ଯେଉଁ ଭବନରେ ବୈଠକଖାନା ଥିଲା, ତାହା ସେହି ଅଗଣାକୁ ସଂଯୋଗ କରୁଥିଲା । ବାହାରେ ଯେଉଁ ଦାନ ଧର୍ମ, ପୂଜନ ଆଦି ହେଉଥିଲା, ଭଗବାନ ତାହା ସେହିଠାରେ ବସି ବି ଦେଖି ପାରୁଥିଲେ ।

ସେହି ସମୟରେ ଭଗବାନ ହ୍ରାତାଦାନ୍ତ ପଲଙ୍କ ଉପରେ ବିରାଜମାନ କରିଥିଲେ । ତା ଉପରେ ମଖମଲ ଗଦି ପଡ଼ିଥିଲା ଓ ଶୁଭ୍ର ସ୍ୱଚ୍ଛ ବସ୍ତ୍ର ବିଛା ହୋଇଥିଲା । ଅନେକ ତକିଆ ବି ତା ଉପରେ ରଖା ହୋଇଥିଲା । ତାଙ୍କ ପ୍ରିୟା ମଧ୍ୟ ସେହି ପଲଙ୍କ ଉପରେ ବସିଥିଲେ । ଉଭୟେ ହସ ବିନୋଦରେ କଥାବାର୍ତ୍ତା ହେଉଥିଲେ । ଦ୍ୱାରପାଳ ଲୋକଙ୍କ ହସ ଶୁଣି ଭଗବାନଙ୍କର ଧ୍ୟାନ ସେହିଆଡ଼େ ଗଲା । ସେ ସମ୍ମୁଖରେ ଅତ୍ୟନ୍ତ ଚିରା ପୁରୁଣା ବସ୍ତ୍ର ପିନ୍ଧିଥିବା, ଲାଠି ଭରା ଦେଇ ଠିଆ ହୋଇଥିବା କୃଶଗାତ୍ର ନିଜର ବାଲ୍ୟକାଳର ସହପାଠୀ ତଥା ମିତ୍ର ସୁଦାମାଙ୍କୁ ଦେଖିଲେ । ତାଙ୍କୁ ଦେଖିବା ମାତ୍ରେ ସେ ଆତ୍ମବିସ୍ମୃତ ହୋଇଗଲେ । ସେ କେତେବେଳେ ପଲଙ୍କ ଉପରୁ ଡେଇଁ ପଡ଼ିଲେ ତାହା କେହି ଦେଖି ନାହାନ୍ତି । ଭଗବାନ ଡେଇଁପଡ଼ି କେଉଁଆଡ଼େ ଗ୍ଲଲିଗଲେ ବୋଲି ସମସ୍ତ ଚହଲ ପଡ଼ିଗଲା । କେହିହେଲେ ବୁଝି ପାରିଲେ ନାହିଁ; ଭଗବାନଙ୍କର ଆଜି କ'ଣ ହେଲା ? ଦାସଦାସୀ ଆଦି ଯେତେ ଥିଲେ ସମସ୍ତେ ତାଙ୍କ ପଛେ ପଛେ ଧାଇଁଲେ । ଏ ମଧ୍ୟରେ ଭଗବାନ ଯାଇ ନିଜର ଦୁଇ ବିଶାଳ ଭୁଜରେ ସୁଦାମାଙ୍କୁ ଆଲିଙ୍ଗନ କରି ଚାପି ଧରିଲେ । ତାଙ୍କର ମଙ୍ଗଳମୟ ସ୍ପର୍ଶ ପାଇ ବ୍ରାହ୍ମଣ ବିଚରା ଆନନ୍ଦରେ ବିଭୋର ହୋଇଗଲେ । ସେ ଆଶା କରି ନ ଥିଲେ ଯେ, ଭଗବାନଙ୍କ ସହିତ ତାଙ୍କର ଭେଟ ହୋଇ ପାରିବ । କିନ୍ତୁ ଭଗବାନଙ୍କର ଏହି ଅଗାଧ ପ୍ରେମକୁ ଦେଖି ବ୍ରାହ୍ମଣ ଆତ୍ମବିସ୍ମୃତ ହୋଇଗଲେ । ସେହି ସମୟରେ ଭଗବାନଙ୍କ ଅବସ୍ଥା ବିଚିତ୍ର ପ୍ରକାର ହୋଇଥିଲା । ତାଙ୍କର କମଳ ସଦୃଶ ବଡ଼ ବଡ଼ ନେତ୍ରରୁ ଅବିରତ ପ୍ରେମାଶ୍ରୁ ଧାରା ବହିବାରେ ଲାଗିଥିଲା । ସେହି ଅଶ୍ରୁରେ ସୁଦାମାଙ୍କର ବସ୍ତ୍ର ଜୁଡ଼ୁବୁଡ଼ୁ ହୋଇଗଲା । ଭଗବାନଙ୍କ ଶରୀର ରୋମାଞ୍ଚିତ ହୋଇ ଯାଇଥିଲା, ବାଣୀ ରୁଦ୍ଧ ହୋଇ ଯାଇଥିଲା ଓ ସେ କସିକରି ତାଙ୍କ ପ୍ରିୟ ସଖାଙ୍କ ହୃଦୟରେ ଚାପି ଧରିଥିଲେ । ସେତେବେଳେ ଏପରି ପ୍ରତୀତ ହେଉଥିଲା ଯେ, ସତେ ଯେପରି ନେତ୍ର ଦ୍ୱାରା ସେ ସୁଦାମାଙ୍କ ରୂପକୁ ପିଇଯିବେ । ତାଙ୍କର ସମସ୍ତ ଅଙ୍ଗକୁ ନିଜ ଅଙ୍ଗ ସହିତ ଏକ କରିଦେବେ ।

ଗୋଟିଏ ଦରିଦ୍ର ବ୍ରାହ୍ମଣ ପ୍ରତି ଭଗବାନଙ୍କର ଏହି ଅଲୌକିକ, ଅଦ୍ଭୁତ, ଅନିର୍ବଚନୀୟ ପ୍ରେମକୁ ଦେଖି ସମସ୍ତେ ଅବାକ୍ ହୋଇଗଲେ । କାହାରି ମୁଖରୁ କଥା ପଦେ ସୁଦ୍ଧା ବାହାରୁ ନ ଥିଲା । ଏ କଥା ଶୁଣି ସମସ୍ତ ରାଣୀ ଆସି ସେଠାରେ ପହଞ୍ଚି-

ଗଲେ । ସେମାନେ ବୁଝିପାରିଲେ ନାହିଁ ଯେ, ଏ ଘଟଣାର କାରଣ କ'ଣ ! ଭଗବାନ ଏ ଦରିଦ୍ର ବ୍ରାହ୍ମଣ ସହିତ ମିଳି ଏପରି ଅଧୀର ଓ ଆତ୍ମବିସ୍ମୃତ କାହିଁକି ହେଉଛନ୍ତି । ବହୁ ସମୟ ଧରି ସେ ସୁଦାମାଙ୍କୁ ନିଜ ହୃଦୟରେ ଜାକିଧରି ଅଶ୍ରୁ ବିସର୍ଜନ କରୁଥିଲେ । ସୁଦାମା ମଧ୍ୟ ଅବୋଧ ବାଳକଙ୍କଭଳି ଭଗବାନଙ୍କ ହୃଦୟରେ ଆବଦ୍ଧ ହୋଇ ଅଶ୍ରୁ ବିମୋଚନ କରୁଥିଲେ ।

କିଛି ସମୟ ପରେ ଭଗବାନଙ୍କର ଚେତା ଆସିଲା । ସେ ସୁଦାମାଙ୍କ ହାତ ଧରି ଧରି ଭିତରକୁ ନେଇଗଲେ । ତାଙ୍କୁ ନିଜ ପଲଙ୍କ ଉପରେ ମୁଣ୍ଡପଟକୁ ବସାଇ ଘର ଭିତରକୁ ଚାଲିଗଲେ । ସେବକ, ସେବିକା ଓ ରାଣୀମାନେ ଏହା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ଭଗବାନ କାହାରିକୁ କିଛି କରିବାକୁ ନ କହି ନିଜେ ନିଜେ ସବୁ ବସ୍ତୁ ନେଇ ଆସୁଥିଲେ । ସେ ତାଙ୍କ ପୂଜା ପାଇଁ ପୁଷ୍ପ, ଧୂପ, ଦୀପ, ଅକ୍ଷତ, ଚନ୍ଦନ, ବସ୍ତ୍ର ଯଜ୍ଞୋପବୀତ ଓ ଅନ୍ୟାନ୍ୟ ସମସ୍ତ ଜିନିଷ ନିଜ ହାତରେ ଆଣି ରଖିଲେ । ସୁବର୍ଣ୍ଣର ଏକ ଥାଳି ଉପରେ ସୁବର୍ଣ୍ଣ ଝରି ଦ୍ୱାରା ସେହି ଲୋକପାବନ ପ୍ରଭୁ ନିଜେ ସୁଦାମାଙ୍କର ପାଦ ପ୍ରକ୍ଷାଳନ କଲେ । ରୁକ୍ମିଣୀ ମଧ୍ୟ ଏହା ଦେଖି କହିଲେ—"ପ୍ରାଣେଶ୍ୱର ! ଆଜି ଆପଣ କ'ଣ ନିଜେ ସବୁ ପ୍ରକାର ସେବା ପୂଜା କରିବାରେ ଲାଗିଛନ୍ତି ? ଅନ୍ୟାନ୍ୟ ପୂଜାରେ ଆପଣ ତ ମୋତେ ପାଖରେ ବସାଇ ପୂଜା କରନ୍ତି । ମୁଁ ଆଜି କି ଅପରାଧ କଲି ? ଆପଣ ମୋତେ ନ ଡାକି ଏକା ଏଭଳି ପୂଜା କରୁଛନ୍ତି ? ଏହା କହି ସେ ସୁବର୍ଣ୍ଣଝରି ଭଗବାନଙ୍କ ହାତରୁ ଛଡ଼ାଇ ଆଣି ସୁଦାମାଙ୍କର ପାଦ ଧୋଇ ଦେଲେ । ଭଗବାନ୍ ଆନନ୍ଦରେ ବିଭୋର ହୋଇ ମଧ୍ୟ ତାଙ୍କ ପାଦ ଧୋଇ ପୋଛିପୋଛି କରିଦେଲେ । ତାଙ୍କ ପାଦ ଧୂଳିରେ ପରିପୂର୍ଣ୍ଣ ଥିଲା, ପାଦତଳେ ଫାଟ ମଧ୍ୟରେ କାଦୁଅ ଶୁଖି ଭର୍ତ୍ତି ହୋଇଥିଲା । ଭଗବାନ ନିଜ ଉତ୍ତରୀରେ ସେହି ମଳି କାଦୁଅଗୁଡ଼ିକୁ ନିଜ କୋମଳ କରରେ ଧୋଇ ପୋଛି ତାଙ୍କ ପାଦକୁ ସଫା କଲେ । ତାହାପରେ ସେହି ଚରଣୋଦକକୁ ଅତି ଆଦରରେ ନିଜ ଶିର ଉପରେ ଛିଞ୍ଚିଲେ ଓ ଘର ଭିତରେ ଚାରିଆଡ଼େ ଛିଞ୍ଚିଲେ । ଏହାପରେ ଅର୍ଘ୍ୟ ପ୍ରଦାନ କରି ଆଚମନ କରାଇ ବିଧିବତ୍ ଔଷଧ ନେଇ ତାଙ୍କ ପାଦ ଫାଟରେ ଲଗାଇ ତାଙ୍କୁ ସ୍ନାନ କରାଇଲେ । ନୂତନ ଯଜ୍ଞୋପବୀତ ଏକ ସୁନ୍ଦର ନୂତନ ରେଶମୀ ବସ୍ତ୍ରର ଯୋଡ଼ ତାଙ୍କୁ ପିନ୍ଧାଇ ଦେଲେ । ତାଙ୍କ ଶରୀର ସାରା କେଶର, କସ୍ତୁରୀ ଓ କର୍ପୂର ଆଦି ଲଗାଇ ଦେଲେ । ସୁଗନ୍ଧମୁକ୍ତ ଦ୍ରବ୍ୟ-ସୁବାସିତ ଚନ୍ଦନ ତାଙ୍କ ସର୍ବାଙ୍ଗରେ ଲେପିଲେ । ତାହାପରେ ସୁବାସିତ ଧୂପ ଜଳାଇ, ସହସ୍ର ଦୀପ ଲଗାଇ ତାଙ୍କୁ ପୂଜା କଲେ । ଅତିଥିଙ୍କୁ ଗୋଦାନ କରିବାର ବିଧି ଥିବାରୁ ସେ ତାଙ୍କୁ ଏକ କପିଳା ଗାଈ ଅର୍ପଣ କଲେ । ତାହାପରେ ନୈବେଦ୍ୟ, ଫଳ ଆଦି ଅର୍ପଣ କରି ସୁନ୍ଦର ଲବଙ୍ଗ, ଅଲେଇଚ ଓ କର୍ପୂର-ଯୁକ୍ତ ତାମ୍ବୁଳ ତାଙ୍କୁ ଦେଲେ । ଭଗବାନ ବାରମ୍ବାର କହୁଥିଲେ—"ମିତ ! ଭଲ ହେଲା ଆସିଲେ, ଭଲ ହେଲା ଆସିଲେ । ମୁଁ ଆଜି ଆପଣଙ୍କୁ ପୂଜା କରି ଧନ୍ୟ ହେଲି ।"

ରୁକ୍ମଣୀ ଦେଖିଲେ— ଭଗବାନ ଆଜ ଅତିଥିଙ୍କ ସେବାରେ ମୁଁ ଭାଗ ନେବାକୁ ଚାହୁଁ ନାହାନ୍ତି । ତେଣୁ ସେହି ମଳିନ ବସନ, ଅତ୍ୟନ୍ତ ଦୁର୍ବଳ କୃଶଗାତ୍ର ବିଶିଷ୍ଟ ବିପ୍ରଙ୍କ ନିକଟରେ ଚାମର ସେବା କରିବାକୁ ଲାଗିଲେ । ନାରାୟଣଙ୍କ ଠାରୁ ଦୂରରେ ରହୁଥିବା-ବେଳେ ଲକ୍ଷ୍ମୀ ସାଧାରଣତଃ ରୁଷ୍ଟା ହୁଅନ୍ତି; କିନ୍ତୁ ନାରାୟଣଙ୍କ ନିକଟରେ ଥିବାବେଳେ ସେ ଦାସୀଙ୍କ ଭଳି ସେବାରେ ନିଯୁକ୍ତ ହୁଅନ୍ତି । ନିଜେ ନିଜେ ଚାମର କରନ୍ତି, ଯଦ୍ଦ୍ୱାରା ନାରାୟଣ ତାଙ୍କୁ ଆଦର କରନ୍ତି । ତେଣୁ ଭଗବାନ ତାଙ୍କୁ ସର୍ବଦା ପାଖେ ପାଖେ ରଖନ୍ତି ।

ଅନ୍ତଃପୁରର ଲୋକ ଓ ବାହାରର ଯେତେକ ବ୍ରାହ୍ମଣ ସେଠାରେ ଉପସ୍ଥିତ ଥିଲେ, ସେମାନେ ପୁଣ୍ୟକୀର୍ତ୍ତି ଭଗବାନ ଶ୍ୟାମସୁନ୍ଦରଙ୍କୁ ଜଣେ ଭିକ୍ଷୁକ ବ୍ରାହ୍ମଣର ଏପରି ପୂଜା କରୁଥିବାର ଦେଖି ପରସ୍ପର ମଧ୍ୟରେ କୁହାକୁହି ହେଉଥିଲେ— "ଆହା ! ଏ କି ଆଶ୍ଚର୍ଯ୍ୟ କଥା, ସାକ୍ଷାତ୍ ଶ୍ରୀପତି ଏ ଶ୍ରୀହୀନ, ନିର୍ଧନ, ଲୋକନିନ୍ଦିତ, ସଭ୍ୟସମାଜଦ୍ୱାରା ତିରସ୍କୃତ, ଅଧମ ଭିକ୍ଷୁକ ବ୍ରାହ୍ମଣର ସେବା ପୂଜା ଏପରି ତନ୍ମୟତାର ସହିତ କରୁଛନ୍ତି । ସେ ଏଥିପାଇଁ ନିଜକୁ ମଧ୍ୟ ଭୁଲି ଯାଉଛନ୍ତି । ଏ ବ୍ରାହ୍ମଣ ପୂର୍ବ ଜନ୍ମରେ ଏପରି କି ଦାନ ପୁଣ୍ୟ କରିଥିଲା, ଯେଉଁଥି ପାଇଁ ଲକ୍ଷ୍ମୀଦେବୀଙ୍କର ଆଶ୍ରୟସ୍ଥଳ ଜଗଦ୍‌ଗୁରୁ ଭଗବାନ କମଳାରୂପୀ ରୁକ୍ମଣୀ ଦେବୀଙ୍କୁ ଛାଡ଼ି ଜ୍ୟେଷ୍ଠବନ୍ଧୁଙ୍କ ଭଳି ଧାଇଁଯାଇ ତାଙ୍କୁ ଆଲିଙ୍ଗନ କଲେ ? ଜ୍ୟେଷ୍ଠ ବନ୍ଧୁଠାରୁ ବଳି ମଧ୍ୟ ତାଙ୍କୁ ଆଦର କଲେ ?

ସମସ୍ତ ରାଣୀ ଚନ୍ଦ୍ର ପ୍ରତିମା ପରି ସେଠାରେ ଠିଆ ହୋଇ ଏ ସବୁ ଘଟଣା ଦେଖୁଥିଲେ । ସେବକମାନେ ଏହା ଦେଖି ବିସ୍ମିତ ହେଉଥିଲେ । ଭଗବାନଙ୍କର କଣ୍ଠ ଅବରୁଦ୍ଧ ଥିଲା । ଭଗବାନ ଚରଣ ଧୋଇ ଦେବା ସମୟରେ ସେ ମଧ୍ୟ କିଛି ଆପତ୍ତି କଲେ ନାହିଁ । ଚନ୍ଦନ ଲଗାଇ ଦେଲାବେଳେ ଲଗାଇ ନେଲେ । ବସ୍ତ୍ର ପିନ୍ଧାଇଲା ବେଳେ ପିନ୍ଧି ନେଲେ । ଆରତି କଲାବେଳେ ଚୁପ୍‌ଚାପ୍ ବସି ରହିଲେ । ଏପରି ଜଣାପଡ଼ୁଥିଲା, ସତେ ଯେପରି ସେ ଗୋଟିଏ ନିର୍ଜୀବ ମୂର୍ତ୍ତି । ପୂଜା କରି ସାରି ବ୍ରହ୍ମଣ୍ୟଦେବ ଭଗବାନ ଭୂମିରେ ପଡ଼ିଯାଇ ସୁଦାମାଙ୍କୁ ପ୍ରଣାମ କଲେ । ତାହାପରେ ସମସ୍ତେ ଭଗବାନଙ୍କୁ ଅନୁକରଣ କରି ସେହିପରି ପ୍ରଣାମ କଲେ । ସମସ୍ତେ ପ୍ରଣାମ କଲାପରେ ଭଗବାନ ତାଙ୍କୁ କହିଲେ— "ଭାଇ ! ଚାଲନ୍ତୁ ଭୋଜନ କରିବେ ।" ଏହା କହି ସେ ନିଜେ ତାଙ୍କ ହାତଧରି ଭିତର ମହଲକୁ ନେଲେ । ରାଣୀମାନେ ମିଠା, ଖଟା, ମସଲାଦିଆ ବିଭିନ୍ନ ପ୍ରକାର ଭୋଜନ ପରଷି ଅତ୍ୟନ୍ତ ପ୍ରେମ ଓ ଅନୁରାଗର ସହିତ ତାଙ୍କୁ ଆପ୍ୟାୟିତ କରାଇଲେ । ଏତେ ପ୍ରକାର ଦ୍ରବ୍ୟ ଭୋଜନକୁ ଦେଖି ସୁଦାମାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଅମୃତୋପମ ଭୋଜନ ପାଇ ସେ ଅତ୍ୟନ୍ତ ତୃପ୍ତ ହେଲେ । ଭୋଜନ କରାଇ ସାରିବା ପରେ ଭଗବାନ ତାଙ୍କୁ ଅତ୍ୟନ୍ତ ସ୍ନେହରେ ନିଜର ବୈଠକଖାନାକୁ ନେଇଗଲେ ।

ସୂତ କହିଲେ—"ମୁନିଗଣ ! ଯେତେବେଳେ ଦୁଇଜଣଯାକ ଭୋଜନ କରି ସାରିଲେ, ସେତେବେଳେ ଦୁହେଁ ପ୍ରେମରେ ବସି ଦୁଃଖସୁଖ ହେଲେ । ଦୁଇ ମିତ୍ରଙ୍କ ମଧ୍ୟରେ ଯେପରି ମଧୁର, ରସରସିଆ, ଚମକଆ ଓ ଆନନ୍ଦଦାୟିନୀ କଥାବାର୍ତ୍ତା ହୋଇଥିଲା, ତାହା ମୁଁ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନା କରିବି ।'

## ଛପ୍‌ପୟ

ସ୍ୱୟଂ ପକଇ ଯଦୁନାଥ ପଲଙ୍ଗ ପୈ ବସ୍ତ୍ର ବଠାୟେ ।
ପୂଜା କୋ ସଂଭର ସ୍ୱୟଂ କର କମଲନ ଲୟେ ॥
କରି ପୂଜନ ସମ୍ମାନ ସ୍ୱାଦୁ ଭୋଜନ କରବାୟେ ।
କରେଂ ପ୍ରେମ ଅତି ଅଧିକ ସୁଦାମା ବନ୍ଧୁ ସକୁଚୟେ ॥
ନେହ ସହିତ ବୈଠାଇ ଢିଂଗ, ପୁନି ପୂଛତ କୁଶଲ ହରି ।
କହୋ, ଲୌଟ ଗୁରୁ ସଦନ ତେଂ, ଗୃହୀ ବନେ ନହିଁ ବ୍ୟାହ କରି ॥



# ସୁଦାମା ଓ ଶ୍ୟାମସୁନ୍ଦର

**ଅପି ବ୍ରହ୍ମନ୍ ଗୁରୁକୁଲାଦ୍ ଭବତା ଲବ୍ଧ-ଦକ୍ଷିଣାତ୍ ।**
**ସମାବୃତ୍ତେନ ଧର୍ମଜ୍ଞ ଭାର୍ଯ୍ୟୋଢ଼ା ସଦୃଶୀ ନ ବା ॥** ※

**( ଶ୍ରୀ ଭା : ୧୦ ସ୍କ. ୮୦ ଅ. ୨୮ ଶ୍ଳୋକ)**

## ଛପ୍‌ପୟ

**ସଖୀ କୈସୀ ମିଲୀ, ମିଲେ ମନ ତୁମସେ ବା ତେ ।**
**ଲଡ଼ତ ଭିଡ଼ତ ତୋ ନାହିଁ କାନ ତୋ ଜରେ ନ ଚାତେ ॥**
**କତନେ ବାଲକ ଭୟେ ସବନକେ ନାମ ବତାଓ ।**
**ସବ ଘର କୋ ବୃତ୍ତାନ୍ତ ସୁନାଓ ମତ ସକୁଚାଓ ॥**
**ଗୁରୁକୁଲ କେ ସୁଖମୟ ଦିବସ, ହାୟ ! ସ୍ୱପନ ସମ ଅବ ଭୟେ ।**
**ଗୁ ପତନୀ କଛୁ ଯାଦ ହୈ, ଇଂଧନ ଲେିନେ ବନ ଗୟେ ॥**

ଏ ସଂସାରରେ ସାଧାରଣତଃ ପ୍ରତ୍ୟେକ ସଖା, ସମ୍ବନ୍ଧୀୟ, ତଥା ପ୍ରିୟଜନଙ୍କ ମିଳନରେ ପ୍ରସନ୍ନ ହୋଇଥାଆନ୍ତି । କିନ୍ତୁ ସିଏ ଲେଙ୍ଗୋଟି (ଛିଣ୍ଡା ଲୁଗା) ପିନ୍ଧିଥିବା ମିତ, ଯାହାଙ୍କ ସହିତ ଅତୀତର ଅନନ୍ତ ସ୍ମୃତି ବିଜଡ଼ିତ, ସେ ଯଦି ନିଜର ବାଲ୍ୟସଖାଙ୍କ ସହିତ ମିଳିତ ହୁଏ, ତାହାହେଲେ ତାଙ୍କ ସମ୍ବନ୍ଧରେ କହିବାକୁ ଭାଷା ମିଳେ ନାହିଁ । ସେପରି ମିତଙ୍କ ମିଳନରେ ପ୍ରସନ୍ନତା ସ୍ୱୟଂ ସାକାରରୂପ ନେଇ ସମ୍ମୁଖରେ ଆସି ଉପସ୍ଥିତ ହୁଏ । ଉଭୟ ମିତ ମିଳି ପରସ୍ପର ମଧ୍ୟରେ ଜଣେ ଅନ୍ୟ ଜଣକ ହୃଦୟକୁ ଦରାଣ୍ଡନ୍ତି, ଦୁଃଖସୁଖ ବିଷୟମାନ ଆଳାପ ଆଲୋଚନା କରନ୍ତି ଓ ଅତୀତର ଘଟଣାବଳୀକୁ ସ୍ମରଣ କରି ପ୍ରମୁଦିତ

---

※ ଗୁରୁଦକ୍ଷିଣା ଆମ୍ଭେ ଦେଇ । ପୁରେ ଅଇଲୁ ବେନି ଭାଇ ॥
ତୁମ୍ଭେ ଯେ ବିଦ୍ୟା ସମାପତେ । ନିଜ ଭୁବନେ ଉପଗତେ ॥
ଉତ୍ତମ କୁଳେ କନ୍ୟା ବରି । ବିଭା ହୋଇଲ ନିଜ ନାରୀ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ମ ସ୍କ. ୮୬ ଅ.)

ହୁଏନ୍ତି । ଜୀବନରେ ସୁଖ-ଦୁଃଖ ଭୋଗିବାର ନିର୍ଦ୍ଦିଷ୍ଟ ସମୟ କିଛି ନଥାଏ । ଘଟଣା ତ ସହସା ଆସି ପହଞ୍ଚିଯାଏ ଓ ତାହା ଘଟିଯାଇ ଅନନ୍ତ କାଳ ଗର୍ଭରେ ବିଲୀନ ହୋଇଯାଏ । ସୁଖ, ଦୁଃଖ ଯେ ହୃଦୟ ଭୋଗ କରିବାକୁ ହୁଏ, ତାହା ମନୁଷ୍ୟର ସ୍ମୃତିପୃଷ୍ଠାରେ ହୁଏ । ଜୀବଦଶାରେ ଘଟିଥିବା ଅନେକ ଘଟଣା ସ୍ମୃତିର ପୁଟୁଳି ନ ହେଉଥିଲେ ଜୀବନ ଶୂନ୍ୟ ହୋଇଯାଏ । ପୁନଶ୍ଚ ସେଥିରେ ସ୍ଫୁର୍ତ୍ତି କିମ୍ବା ଉତ୍ସାହ ତଥା ଆମୋଦ ପ୍ରମୋଦର ପ୍ରକାଶ ହୁଏ ନାହିଁ । ସେପରି ଜୀବନ ଜଡ଼ ସଦୃଶ ହୋଇଯାଏ ।

ସୂତ କହିଲେ—"ମୁନିଗଣ ! ଭୋଜନୋପରାନ୍ତ ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ପ୍ରେମରେ ନିଜର ବାଲ୍ୟ ସଖା ସୁଦାମାଙ୍କ ହାତଧରି ନିଜ ଭବନକୁ ଆଣିଲେ । ଉଭୟେ ଏକ ଆସନ ଉପରେ ସୁଖରେ ଲଗି ଲଗି ବସିଲେ । ସୁଦାମା ମୌନ ରହିଥିଲେ ! କିନ୍ତୁ ଆମ ଚଞ୍ଚଳ ଶିରୋମଣି ଶ୍ୟାମସୁନ୍ଦରଙ୍କର ମୁଖାରବିନ୍ଦ ପ୍ରେମରେ ବିକସିତ ହୋଇ ଉଠୁଥିଲା । ଉତ୍ଫୁଲ୍ଲ ହୋଇ ଉଠୁଥିଲା ! ସେ ହସି ହସି କହିଲେ—"କିହୋ ଭାଇ ! ଏବେ ଆପଣଙ୍କ ସମସ୍ତ ସମାଚାର ଶୁଣିବା ପାଇଁ ମୋର ମନ ବ୍ୟଗ୍ର ହୋଇଉଠୁଛି ।

ସୁଦାମା କହିଲେ—"ହଁ ଭାଇ ! ସମସ୍ତଙ୍କୁ କୌଣସି ପ୍ରକାରେ ଏଡ଼ାଇ ମୁଁ ଦିନ କାଟୁଅଛି ।"

ଭଗବାନ କହିଲେ —"ଆଚ୍ଛା କହିଲେ ଦେଖି, ଆପଣଙ୍କର ଓ ମୋର ସମା-ବର୍ତ୍ତନ ସଂସ୍କାର ଏକ ସଙ୍ଗେ ହୋଇଥିଲା ନା ? ଆମେ ଦୁହେଁ ଏକସଙ୍ଗେ ଗୁରୁଙ୍କୁ ଦକ୍ଷିଣା ଦେଇ ଅଧ୍ୟୟନ ସମାପ୍ତ କରି ଫେରିଥିଲେ ନା ? ସେହି ଦିନଠାରୁ ଆପଣ କ'ଣ କ'ଣ କରିଛନ୍ତି ?"

ସୁଦାମା କହିଲେ—"କ'ଣ ଅବା କରିବି ଭଗବାନ ! ଏ ପାପୀ ପେଟକୁ ଭରି ଶୋଇ ସମୟତକ କଟାଇ ଆସିଛି ।"

ଭଗବାନ କହିଲେ—"ଆରେ ଭାଇ ! ଖାଇବା ଶୋଇବା ତ ସମସ୍ତଙ୍କ ସହିତ ଯୋଡ଼ା ଯାଇଛି । ଶାସ୍ତ୍ରକାରମାନେ କହନ୍ତି—"ଦ୍ୱିଜ ଏକକ୍ଷଣ ପାଇଁ ସୁଦ୍ଧା ଅନାଶ୍ରମୀ ହେବା ଉଚିତ ନୁହେଁ । ବ୍ରହ୍ମଚର୍ଯ୍ୟ ବ୍ରତ ସମାପ୍ତ କରି ନିଜ ଅନୁରୂପ ଉତ୍ତମ ଲକ୍ଷଣଯୁକ୍ତ କନ୍ୟା ସହିତ ବିବାହ କରି ଗୃହସ୍ଥାଶ୍ରମ ଧର୍ମ ପାଳନ କରିବା ଉଚିତ୍ । ଆପଣ କହନ୍ତୁ ତ କେଉଁ ବ୍ରାହ୍ମଣ କନ୍ୟା ସହିତ ଆପଣ ବିବାହ କରିଥିଲେ କିମ୍ବା ଏ ପର୍ଯ୍ୟନ୍ତ ଅବିବାହିତ ରହିଛନ୍ତି । ମୁଁ ତ ଆପଣଙ୍କୁ ପିଲାଦିନେ ଦେଖିଥିଲି ଯେ ଆପଣଙ୍କର ଗୃହସ୍ଥ ହେବାପାଇଁ ଆଗ୍ରହ ନଥିଲା । ଆପଣ କ'ଣ ନୈଷ୍ଠିକ ହୋଇ ରହିଗଲେ ? ଆପଣଙ୍କ ବେଶଭୂଷାରୁ ଜଣାପଡ଼ୁଛି ଯେ ଆପଣ ନିର୍ଦ୍ଧନ । ତେବେ ବିବାହ କରିଛନ୍ତି କି ନାହିଁ ? ମୋର ତ

କେବଳ ବିବାହ ଚଳୁ, ଦେଖନ୍ତୁ ମୁଁ ଷୋଳହଜାର ଏକଶହ ଆଠ ପତ୍ନୀ ଉପରେ ଗ୍ରହଣ କରିଛି । କାରଣ ଗୃହସ୍ଥାଶ୍ରମ ଧର୍ମ ସବୁଠାରୁ ଶ୍ରେଷ୍ଠ । ଆପଣ ଏ ଯେତେ ଜଟାଧାରୀ, ଫଳାହାରୀ, ତ୍ୟାଗୀ, ବୈରାଗୀ, ସନ୍ନ୍ୟାସୀ, ବ୍ରହ୍ମଚାରୀ, ଆଶ୍ରମୀ ଓ ଭିକ୍ଷୋପଜୀବୀମାନଙ୍କୁ ଦେଖୁଛନ୍ତି, ଏମାନେ ସମସ୍ତେ ଗୃହସ୍ଥାଶ୍ରମୀଙ୍କ ଉପରେ ନିର୍ଭର କରି ହିଁ ଚଳୁଛନ୍ତି । ଏମାନଙ୍କର ଭରଣପୋଷଣ ଭାର ଗୃହସ୍ଥୀ ଉପରେ ହିଁ ନିର୍ଭର କରେ । ଏଥିପାଇଁ ଗୃହସ୍ଥାଶ୍ରମ ଧର୍ମର ଏତେ ପ୍ରଶଂସା ।"

ସୁଦାମା କହିଲେ—"ହଁ, ମହାରାଜ ! ଗୃହସ୍ଥାଶ୍ରମ ଧର୍ମ ମୋ ଭଳି ଦରିଦ୍ର ଲୋକ ଉପରେ ଅତି ପାଳନ କରିବାକୁ ସକ୍ଷମ ହୁଅନ୍ତି । କୁକୁର, ଶୂକରଙ୍କ ଭଳି ଆହାର, ନିଦ୍ରା, ଭୟ, ମୈଥୁନ ଆଦିରେ ମଜ୍ଜି ରହି ମୁଁ ଦିନ କାଟୁଅଛି । ଘରେ ଗୋଟିଏ ବ୍ରାହ୍ମଣୀ ଅଛି ।"

ଭଗବାନ୍ କହିଲେ—"ଆଚ୍ଛା କହନ୍ତୁ ତ ମୋ ଭାଉଜଙ୍କ ସ୍ୱଭାବ କିପରି ? ସେ ଆପଣଙ୍କ ସହିତ କଳି ଝଗଡ଼ା କରନ୍ତି ନାହିଁ ତ ? ବ୍ରାହ୍ମଣଙ୍କ ଘରେ ଖୁବ୍ ସୁନ୍ଦର ସ୍ୱଭାବର ସ୍ତ୍ରୀ ରହୁଥିଲେ ମଧ୍ୟ, ଧନ ଆଦି ଖୁବ୍ କମ୍ ରହୁଥିବାରୁ ସେମାନେ କର୍କଶା ହୁଅନ୍ତି । କଥା କଥାରେ କ୍ରୋଧ ପ୍ରକାଶ କରନ୍ତି, ମୁହଁ ଫୁଲାନ୍ତି, ମୁଖରା ହୋଇ କଟୁକଥା ମାନ କହନ୍ତି । ସବୁ କିଛି ଥିଲେ ମଧ୍ୟ କେତେକ ସ୍ତ୍ରୀ କିଛି କହନ୍ତି ନାହିଁ । ଏହି ଦୁଃଖ ହିଁ ପୃଥିବୀରେ ନରକଠାରୁ ବଳି ଦୁଃଖ । ଭାଉଜ ଆପଣଙ୍କ ସହିତ ଝଗଡ଼ା କରନ୍ତି ନାହିଁ ତ ? ପ୍ରେମପୂର୍ବକ ଆପଣଙ୍କର ସେବା କରନ୍ତି ତ ? ଆପଣଙ୍କ କାନ ଗରମ ତ କରନ୍ତି ନାହିଁ ?

ଏହା ଶୁଣି ସୁଦାମା ହସିଲେ, କିନ୍ତୁ କିଛି ଉତ୍ତର ଦେଲେ ନାହିଁ । ରୁକ୍ମିଣୀ ସବୁକଥା ବାହାରେ ବସି ଶୁଣୁଥିଲେ । ସେ ବାହାରେ ଥାଇ କହିଲେ—ଆପଣଙ୍କ କାନ କିଏ ସମ୍ଭବତଃ ଗରମ କରୁଛି । ତେଣୁ ଆପଣ ସେ କଥା ତାଙ୍କୁ ପଚାରୁଛନ୍ତି ?

ଭଗବାନ୍ ହସି ହସି କହିଲେ—"ମୁଁ ଯଦି ମୋ ବିପତ୍ତି ବିଷୟ ବଖାଣି ବସିବି, ତାହାହେଲେ ଏଠାରେ ବର୍ତ୍ତମାନ ମହାଭାରତ ସୃଷ୍ଟି ହୋଇଯିବ । ମୋ ଦୁଃଖ କଥା ମୁଁ ଜାଣେ । କେବେ କିଏ ମୁହଁ ଫୁଲାଇଲାଣି ତ କିଏ କହିଲାଣି ମୋତେ ସ୍ୱର୍ଗରୁ ପାରିଜାତ ପୁଷ୍ପ ଆଣିଦିଅ । ଏକଲ ଝଂଝଟ ମଧ୍ୟରେ ମୁଁ ତ ବୁଡ଼ିରହିଛି । ଭାଉଜ ଆପଣଙ୍କୁ ଏଇଟା ଆଣ, ସେଇଟା ଆଣ ଏପରି ବୋଧହୁଏ କହୁ ନଥିବେ ? ଭାଇ ! ଏ ସ୍ତ୍ରୀ ରୂପୀ ମାୟା ଏତେ ପ୍ରବଳ ଯେ, ଏମାନଙ୍କ ଆବର୍ତ୍ତରେ ଥରେ ପଡ଼ିଗଲେ ମନୁଷ୍ୟ ସବୁକିଛି ଭୁଲିଯାଏ । ଗର୍ଭରେ କରିଥିବା ପ୍ରତିଜ୍ଞା ଏପରି କି ସମସ୍ତ ପ୍ରତିଜ୍ଞାକୁ ଭୁଲିଯାଇ ମନୁଷ୍ୟ ଏମାନଙ୍କର ଦାସ ହୋଇଯାଏ । ଏ ତ୍ରିଗୁଣମୟୀ ମାୟା ଏପରି ଦୁସ୍ତ୍ୟଜ୍ୟ ଯେ, ବଡ଼ ବଡ଼ ଜ୍ଞାନୀ ପୁରୁଷ ମଧ୍ୟ ଏମାନଙ୍କ ମୋହରେ ପଡ଼ି ଯାଆନ୍ତି । କେହି ଅବା ମହାପୁରୁଷ

କେଉଁଠି ବରଲ ହୋଇଥିବେ, ଯେଉଁମାନେ କ ଈଶ୍ୱରଙ୍କ ମାୟାରେ ସୃଷ୍ଟ ଏ ବିଷୟ ବାସନା ଆଦି ପରିତ୍ୟାଗ କରିପାରୁଥିବେ । ଏପରି ଖାତଗ୍ରାସ ପୁରୁଷଙ୍କ ପାଇଁ ଢବାହର କୌଣସି ଆବଶ୍ୟକତା ନାହିଁ । ଏବେ ଦେଖନ୍ତୁ, ଆମେ ତ ଜାଣିଶୁଣି ଏହି ସ୍ତ୍ରୀ ମାୟାରେ ପଡ଼ିଯାଇ ଆଉଁ । ଏମାନେ ଆମ୍ଭମାନଙ୍କୁ ଏହାଙ୍କର କ୍ରୀଡ଼ା ମୃଗରେ ପରିଣତ କରିଛନ୍ତି । ଏଥିରୁ ଆମର ଅବା ଉପାୟ କ'ଣ ?"

ଏହା ଶୁଣି ରୁକ୍ମିଣୀ ସୁଦାମାଙ୍କୁ କହିଲେ—"ବଡ଼ଭାଇ ! ଆପଣ ଏହାଙ୍କ କଥାକୁ ବିଶ୍ୱାସ କରନ୍ତୁ ନାହିଁ । ଇଏ ବଡ଼ କପଟୀ । ଉପରକୁ ଦେଖାଇ ହେବାକୁ ସେ ଏପରି ଗୁଡ଼ାଏ ଚକ୍‌କଣ କଥା କହୁଛନ୍ତି, ସତେ ଯେପରି ଇଏ ଆମ୍ଭମାନଙ୍କ ଅଧୀନ ହୋଇଯାଇଛନ୍ତି । କିନ୍ତୁ ଏହାଙ୍କଠାରେ ଟିକିଏ ହେଲେ ମୋହ ମମତା ବି ନାହିଁ । ସ୍ନେହ କାହାକୁ କହନ୍ତି, ଏହାଙ୍କୁ ତ ମୋଟେ ଜଣା ନାହିଁ । ଇଏ କିନ୍ତୁ ବଡ଼ ନିଷ୍ଠୁର । ଇଏ ହିଁ ସମସ୍ତଙ୍କ ନାକରେ ଅଙ୍କୁଶ ଲଗାଇ ସମସ୍ତଙ୍କୁ ନଚାଉଛନ୍ତି ଓ ଆମ ଦୋଷ ଦେଇ ପାର ହେଉଛନ୍ତି ।"

ଭଗବାନ ହସି ହସି କହିଲେ—"ଦେଖ ଭାଇ ! ଏ କପରି ମୁହେଁ ମୁହେଁ ଆପଣଙ୍କ ଆଗରେ ମୋତେ ନାନା କଥା କହି ଦୋଷ ଦେଉଛନ୍ତି । ପ୍ରକୃତ କଥା ହେଲା, ମୁଁ କୌଣସି ବିଷୟରେ ଆସକ୍ତ ନୁହେଁ, କେବଳ ଲୋକଶିକ୍ଷା ପାଇଁ ଯାହା କିଛି କରୁଛି ।"

ରୁକ୍ମିଣୀ କହିଲେ—"ଆପଣ ତ ଲୋକଶିକ୍ଷା ପାଇଁ ସବୁ ନାଟ ଲଗାଉଛନ୍ତି, କିନ୍ତୁ ଆମକୁ କେବଳ ଦୁଃଖ ଦେଉଛନ୍ତି । କାହାପାଇଁ ଏହା ଖେଳ ତ, କାହାପାଇଁ ହୃଦୟ ବିଦାରକ ଘଟଣା ! ତଥାପି ଆପଣ ଓଲଟି ଆମ୍ଭମାନଙ୍କ ଦୋଷ ଦେଉଛନ୍ତି ।"

ଭଗବାନ ପ୍ରେମଯୁକ୍ତ ରୋଷରେ କହିଲେ—"ମୁଁ ମୋ ମିତ୍ରଙ୍କ ସହିତ ତ କଥାବାର୍ତ୍ତା କରୁଛି, ମଝିରେ ତୁମକୁ କିଏ କହିବାକୁ କହୁଚ ? ଯେଉଁଠି ଦୁଇଜଣ କଥାବାର୍ତ୍ତା ହେଉଥାଆନ୍ତି, ସେଠି ଅନ୍ୟ କେହି କହିବା ଉଚିତ ନୁହେଁ । ଏପରି କି ଶୁଣିବା ମଧ୍ୟ ଉଚିତ ନୁହେଁ ।"

ରୁକ୍ମିଣୀ କହିଲେ—"ମୁଁ କହିବି, ନିଶ୍ଚୟ କହିବି । ବଡ଼ଭାଇଙ୍କୁ ଆପଣ କାହିଁକି ଆମ୍ଭମାନଙ୍କ ଦୋଷ କହୁଛନ୍ତି ?"

ଭଗବାନ୍ କହିଲେ—"ଆଚ୍ଛା, ଭାଇ ! ଏ ଅଳ୍ପଜ୍ଞ ବାଳୁଙ୍କ କଥା ଶୁଣି କିଛି ଲାଭ ନାହିଁ । ଆପଣ ଗୁରୁଙ୍କ ପ୍ରସଙ୍ଗରେ କହନ୍ତୁ । ଆପଣଙ୍କର ଅତୀତରେ ସମସ୍ତ କଥା ମନେ ଅଛି ତ ?"

ସୁଦାମା କହିଲେ—"କେଉଁ କଥା ଆପଣ ପଚାରୁଛନ୍ତି ?"

ଭଗବାନ୍ କହିଲେ—"ଥରେ ଗୁରୁଦେବଙ୍କ ଆଶ୍ରମରେ ଇନ୍ଧନ ନଥିଲା । ଗୁରୁପତ୍ନୀ ମାତାଜୀ ଆମ୍ଭମାନଙ୍କୁ ଅତି ସ୍ନେହରେ କହିଲେ—ପିଲାମାନେ ! ସନ୍ଧ୍ୟାପାଇଁ ଆଶ୍ରମରେ ଖଣ୍ଡିଏ ହେଲେ ଜାଳେଣୀ କାଠ ନାହିଁ ।"

ଆମେ ଦୁହେଁ କହିଥିଲେ—"ମାତାଜୀ ! ଆପଣ ଚିନ୍ତା କରନ୍ତୁ ନାହିଁ । ଆମେ ସଙ୍ଗେ ସଙ୍ଗେ ଇନ୍ଧନ ନେଇ ଆସୁଛୁ ।" ଏହା କହି ଆମେ ଦୁହେଁ ଚାଲି ଆସିଲେ । ବର୍ଷାଋତୁ ନ ହୋଇଥିଲେ ବି ହଠାତ୍ କଳାହାଣ୍ଡିଆ ମେଘ ଉଠିଆସିଲା । ମୂଷଳ ଧାରରେ ବର୍ଷା ହେବାକୁ ଲାଗିଲା । ବର୍ଷା ଯୋଗୁଁ ଆମେ ଏକ ସଘନ ବନରେ ଗଛମୂଳେ ଆଶ୍ରୟ ନେଇଥିଲେ । ପ୍ରବଳ ବର୍ଷା ହେଲା । ଅନ୍ଧକାରରେ ମୁହଁକୁ ମୁହଁ ଦିଶିଲା ନାହିଁ । ପ୍ରଚଣ୍ଡ ପବନ ସହିତ ତୋଫାନ ମାଡ଼ି ଆସୁଥାଏ । ଘଡ଼ଘଡ଼ି ଶବ୍ଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଉଥାଏ । ବିଜୁଳି ଖୁବ୍ ଯୋରରେ ମାରୁଥାଏ । ବର୍ଷା ଓ ବାୟୁବେଗ ଭୟରେ ଭୁବନ ଭାସ୍କର ଅସ୍ତାଚଳ ଉହାଡ଼ରେ ଲୁଚିବାକୁ ଯାଉ ଥାଆନ୍ତି । ଦଶଦିଗ ତମୋମୟ ହୋଇ ଯାଇଥାଏ । ଚତୁର୍ଦ୍ଦିଗ ଜଳ ପ୍ଳାବନରେ ଜଳାପ୍ଲୁତ ହୋଇ ଯାଇଥାଏ । ଯେଉଁଆଡ଼େ ଚାହିଁଲେ ସେଆଡ଼େ ଜଳ । ଭୂମିର ଉଚ୍ଚ ଖାଲ ବାରି ହେଉ ନଥାଏ । ଏପରି ପ୍ରତୀତ ହେଉଥାଏ, ଯେତେ ଯେପରି ଅସମୟରେ ସୃଷ୍ଟି ପ୍ରଳୟ ହୋଇଯିବ । ଆମେ ଦୁହେଁ ଅତ୍ୟନ୍ତ ବର୍ଷା ଓ ପ୍ରଚଣ୍ଡ ପବନ ଯୋଗୁଁ ଶୀତରେ ଥୋଟାଯାକ ଥରୁଥିଲେ । ଶେଷରେ ଶୀତରେ ପୀଡ଼ିତ ହୋଇ ଅଚେତ ହେବା ଅବସ୍ଥାରେ ଦୁହେଁ ଦୁହିଁଙ୍କୁ ଜାବୁଡ଼ି ଧରି ନିରୁପାୟଶୂନ୍ୟ ହୋଇ ପଡ଼ିଥିଲେ । ଦିଗ ବାରି ହେଉ ନଥିଲା । ଚେଷ୍ଟା ଶେଷରେ ପଡ଼ିଉଠି ଦୁହେଁ କିଛି ସମୟ ଏପାଖ ସେପାଖ ଯିବାକୁ ଚେଷ୍ଟାକଲେ; କିନ୍ତୁ ଯାଇ ହେଲାନାହିଁ । ଏହି ଅବସ୍ଥାରେ ଆମେ ଦୁହେଁ ସାରା ରାତି ସେହି ବନ ମଧ୍ୟରେ କଟାଇଲେ । ପ୍ରାତଃ ହେବାରୁ ଆମର ପୂଜନୀୟ ଗୁରୁଜୀ ସ୍ନେହବଶ ହୋଇ ଆମ ଦୁହିଁଙ୍କୁ ଖୋଜିବା ପାଇଁ ସେହି ସଘନ ବନ ମଧ୍ୟକୁ ଆସିଲେ ଓ ଆମ ଦୁହିଁଙ୍କୁ ଶୀତରେ ଥରୁ ଥିବାର ଦେଖି ଅଧୀର ହୋଇପଡ଼ିଲେ । ତାହାପରେ ଆମ ଦୁହିଁଙ୍କୁ ନିଜ ଗ୍ରୀବାରେ ଜାକିଧରି, ଗୋଟିଏ ହାତ ଦୁହିଁଙ୍କ ଶିର ଉପରେ ବୁଲାଇ ଅତ୍ୟନ୍ତ ସ୍ନେହରେ କହିଲେ—"ପିଲାଏ ! ତୁମେ ଦୁହେଁ ମୋ ସକାଶେ ବଡ଼ କଷ୍ଟ ପାଇଲ । ଦେଖ, ଧନ ଦାନ କରିବା, ବିଦ୍ୟା ଦାନ କରିବା ଏହା କୌଣସି ବଡ଼ କଥା ନୁହେଁ । ସବୁଠାରୁ ବଡ଼ କଥା ହେଲା, ସେବା । ଯିଏ ନିଜ ଶରୀରକୁ ହୋମ-କରି ସେବା କରେ, ସେହି ହିଁ ସବୁଠାରୁ ବଡ଼ ଦାତା । ଯିଏ ଯେତେ ଦୁଃଖୀ, ଦରିଦ୍ର, ସାନ ବା ବଡ଼ ହୋଇଥାଉ ପଛେ, ସମସ୍ତଙ୍କ ଶରୀର ନିଜ ନିଜ ପାଇଁ ଅତି ଆଦରର ବସ୍ତୁ । ଯେତେ ନିର୍ଗୁଣ ଆତୁର ମନୁଷ୍ୟ ହୋଇଥାଉ ପଛେ, ସେ ମରିବାକୁ କଦାପି ଚାହେଁ ନାହିଁ । ନିଜ ପ୍ରାଣକୁ ରକ୍ଷା କରିବାକୁ ସବୁ ପ୍ରାଣୀ ଚାହାନ୍ତି । ଏହି

ପ୍ରାଣକୁ ତୁଚ୍ଛ ମନେକରି ତୁମେ ଦୁହେଁ ଯେ ଆମର ସେବା କଲ, ଏହା ସବୁଠାରୁ ବଡ଼ କଥା । ସତ୍ ଶିଷ୍ୟଙ୍କର ଏହାହିଁ ଏକମାତ୍ର ପ୍ରଧାନ କର୍ତ୍ତବ୍ୟ ଯେ, ନିଜର ଶରୀରକୁ ଜ୍ଞାନଦାତା ଗୁରୁଙ୍କ ସେବାରେ ଲଗାଇ ଦେବା । ଗୁରୁ ସେବାଠାରୁ ବଳି ଅନ୍ୟ କୌଣସି ସର୍ବୋତ୍ତମ ଦକ୍ଷିଣା ନାହିଁ । ଗୁରୁଦେବ ଏଥିରେ ପ୍ରସନ୍ନ ହୁଅନ୍ତି । ତୁମେ ଦୁହେଁ ଆଜି ମୋତେ ନିଜର ଏହି କାର୍ଯ୍ୟଦ୍ୱାରା ନିଜର ବଶକରି ନେଇଛ ! ମୁଁ ତୁମ ଦୁହିଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ । ମୁଁ ଆଶୀର୍ବାଦ କରୁଛି, ତୁମର ସମସ୍ତ କାମନା ପୂର୍ଣ୍ଣ ହେଉ । ତୁମର ବିଦ୍ୟା ଇହଲୋକ ଓ ପରଲୋକରେ କେବେହେଲେ ନିଷ୍ଫଳ ନହେଉ ।"

ସୁଦାମା କହିଲେ—"ହଁ ମହାରାଜ ! ଏ ଘଟଣା କେବେହେଲେ ଜୀବନରେ ଭୁଲି ହେବନାହିଁ ।"

ଭଗବାନ୍ କହିଲେ—"ଦେଖନ୍ତୁ, ସୁଦାମା ! ଆମର ଗୁରୁମାତା କେତେ ଭଲଲୋକ ଥିଲେ, ସେ ଆମକୁ କିପରି ସ୍ନେହ କରୁଥିଲେ । ସେ ଜାଣନ୍ତି ଯେ ମୋତେ ମୁଗର ପକୁଡ଼ି ଖୁବ ଭଲଲାଗେ । ଏଥିପାଇଁ ପ୍ରାୟ ପ୍ରତିଦିନ ସେ ତାହା ତିଆରି କରନ୍ତି । ତାଙ୍କ ହାତରନ୍ଧା ଭାତ ମୋତେ ଖୁବ୍ ଭଲଲାଗେ, ସେ ଅତି ଆଦରରେ ମୋତେ ଖୁଆଇ ଦେଉଥିଲେ । ଏତେ ଚିନ୍ତା ନିଜ ମାତା ବି କରିପାରନ୍ତି ନାହିଁ । ସେହି ସମୟରେ ଥରେ ତାଙ୍କର କପିଳା ଗାଈ ହଜି ଯାଇଥିଲା, ତିନିଦିନ ପର୍ଯ୍ୟନ୍ତ ସେ ଅତ୍ୟନ୍ତ ବ୍ୟାକୁଳ ହେଲେ । ତୃତୀୟଦିନ ଯେତେବେଳେ ଆମେ ତାକୁ ଖୋଜି ଆଣି ଦେଲେ, ସେତେବେଳେ ସେ ଆମ ଦୁହିଙ୍କ ଉପରେ କେତେ ସନ୍ତୁଷ୍ଟ ହୋଇଥିଲେ, ତାହା ତ ଆପଣଙ୍କର ମନେଥିବ । ସେଦିନ ଛତୁଆ ଗୁଣ୍ଡ ପାଟିରେ ପକାଇ ପକାଇ ମୁଁ ହସି ପକାଇଲି, ଛତୁଆ ଯାକ ସବୁ ମୁଖରୁ ବାହାରି ପଡ଼ିବାରୁ ସେ ଅତି ସ୍ନେହରେ କହିଥିଲେ —'ଆରେ, ତୁ ବଡ଼ ପାଗଳଟାଏରେ ।'"

ଆମ ଗୁରୁ ମଧ୍ୟ ଖୁବ୍ ଭଲ ଲୋକ ଥିଲେ । ଥରେ 'ଯଜ୍ଞକାଠ' କ୍ରୋଧିତ ହୋଇ ବନକୁ ଚାଲିଯାଇଥିଲା । ମେଦିନ ଗୁରୁଜୀ ସେଥିପାଇଁ ଭୋଜନ କଲେ ନାହିଁ । ଗୁରୁ-କୁଳରେ ରହୁଥିବା ସମୟରେ ଅନେକ ଘଟଣା ଘଟି ଯାଇଛି, ସେ ସମସ୍ତ ମନେ ପଡ଼ିଲେ ହୃଦୟ ଆନନ୍ଦରେ ଭରିଯାଏ । ସେହି ଦୟାଳୁ ସାନ୍ଦୀପନୀ ଗୁରୁଙ୍କର ମନମୋହନୀ ମୂର୍ତ୍ତି ଏପର୍ଯ୍ୟନ୍ତ ମୋ ନୟନ ସମ୍ମୁଖରେ ନାଚି ଉଠୁଛି । ଗୁରୁକୁଳର ଜୀବନ କି ସୁଖପ୍ରଦ ନଥିଲା ? ସେତେବେଳେ କିଛି ଚିନ୍ତା ନଥିଲା କିମ୍ବା ଦୁଃଖ ନଥିଲା । ଆମେ ସ୍ୱଚ୍ଛନ୍ଦରେ ବୁଲୁଥିଲେ । କଞ୍ଚା ପାଚିଲା ଫଳ ଯାହା ଯେଉଁଠି ମିଳୁଥିଲା ତାହା ଖୋଲି ମନ ଇଚ୍ଛା ଖାଉଥିଲେ । ଦ୍ୱିଜାତି ମାନଙ୍କ ପାଇଁ ଗୁରୁକୁଳ ବାସହିଁ ଜ୍ଞାନାର୍ଜ୍ଜନ ପାଇଁ ସର୍ବପ୍ରଥମ ମୁଖ୍ୟ କର୍ତ୍ତବ୍ୟ । ଗୁରୁକୁଳରେ ରହି ବିଦ୍ୟାର୍ଥୀ ସମସ୍ତ ଜ୍ଞାତବ୍ୟ ବିଷୟକୁ ଶିକ୍ଷା କରି ନେଇଥାଏ । ଜ୍ଞାନାର୍ଜ୍ଜନ କରି ସେ ଅଜ୍ଞାନାନ୍ଧକାରକୁ ହଟାଇ

ରଖିଥାଏ । ସେହି ବ୍ୟକ୍ତି ହିଁ ସତ୍କର୍ମ କରିପାରେ, ଯିଏ ପିଲାଦିନେ ଗୁରୁକୁଳ ଆଶ୍ରମରେ ରହି ଗୁରୁଦେବଙ୍କୁ ଶ୍ରଦ୍ଧାର ସହିତ ସେବା ସୁଶ୍ରୁଷା କରିଥାଏ । ଗୁରୁ ସାକ୍ଷାତ୍ ପରମବ୍ରହ୍ମ ଅଟନ୍ତି । ସେ ସ୍ୱୟଂ ମୋର ସ୍ୱରୂପ । ଯେଉଁ ବର୍ଣ୍ଣାଶ୍ରମୀ ହରିରୂପୀ ଗୁରୁଙ୍କର ଆଶ୍ରୟ ଗ୍ରହଣ କରେ, ତାଙ୍କଠାରୁ ସଦୁପଦେଶ ଗ୍ରହଣ କରେ, ତାହା ହେଲେ ସେହି ଉପଦେଶ ଦ୍ୱାରା ହିଁ ଅତି ସହଜରେ ଏହି ସଂସାର ରୂପୀ ସାଗରକୁ ପାର ହୋଇ ଯାଏ । ସେ ଏହାଦ୍ୱାରା ନିଜ ଜୀବନକୁ ସାର୍ଥକ କରେ । ସେ ତା'ର ମାନବ ଜନ୍ମର ସାର୍ଥକତା ଉପଲବ୍ଧି କରେ । ସର୍ବଭୂତର ଅନ୍ତରାତ୍ମାରୂପେ ମୁଁ ଅଧିଷ୍ଠିତ, ଯେପରି ଗୁରୁଙ୍କ ସେବାରେ ମୁଁ ପ୍ରସନ୍ନ ହୁଏ, ଯଜ୍ଞ, ବ୍ରହ୍ମଚର୍ଯ୍ୟ, ତପ, ଶମ, ଦମ ଓ ଅନ୍ୟାନ୍ୟ କୌଣସି ସାଧନାରେ ସେପରି ପ୍ରସନ୍ନ ହୁଏ ନାହିଁ । ଆପଣ ତ ଅତିଶୟ ପ୍ରେମରେ ଗୁରୁଙ୍କର ସେବା କରୁଥିଲେ । ସେହି କାରଣରୁ ଆପଣ ନିଜର ଇହଲୋକ ଓ ପରଲୋକ ଉଭୟ ଗଢ଼ି ନେଇଛନ୍ତି ।"

ସୁଦାମା କହିଲେ—"ମହାରାଜ ! ମୁଁ କ'ଣ ଅବା ସେବା କରିଛି ? କିନ୍ତୁ ହେ ଜଗଦ୍ଗୁରୁ ! ହେ ଦେବାଧିଦେବ ! ମୋର ଏହି ସୌଭାଗ୍ୟ ଯେ, ସ୍ୱୟଂ ପରମେଶ୍ୱର ଆପଣଙ୍କ ସହିତ ମୁଁ ପାଠ ପଢ଼ୁଥିଲି । ଆପଣଙ୍କ ଭଳି ସତ୍ୟ ସଂକଳ୍ପଙ୍କ ସାଥେ ସାଥେ ମୁଁ ମଧ୍ୟ ଗୁରୁକୁଳରେ ବାସ କରୁଥିଲି । ସେହି ଦୃଷ୍ଟିରୁ ହିଁ ମୋର ସବୁକିଛି ମିଳିଗଲା । ଏହା ମୋ ପାଇଁ ମହାନ୍ ଗୌରବର କଥା ଯେ, ମୁଁ ଅଖିଳ କୋଟି ବ୍ରହ୍ମାଣ୍ଡ ନାୟକଙ୍କ ସହାଧ୍ୟାୟୀ ଅଟେ । ଆପଣ ହିଁ ମୋ ଉପରେ କୃପା କରି ଗୁରୁକୁଳରେ ମିଳିଥିଲେ । ତାହା ନ ହୋଇଥିଲେ ଆପଣଙ୍କୁ ପୁଣି କିଏ କ'ଣ ପଢ଼ି ପଢ଼ାଇବାକୁ ସକ୍ଷମ ହୁଅନ୍ତା ? କାରଣ ବେଦ ସ୍ଥଳ ସାକ୍ଷାତ୍ ଛନ୍ଦୋମୟ ବେଦ ହିଁ ଆପଣଙ୍କର ମୂର୍ତ୍ତିମାନ ବିଗ୍ରହ । ପୁନଶ୍ଚ ଆପଣଙ୍କର ଗୁରୁକୁଳରେ ରହିବାର ବା କି ଆବଶ୍ୟକ ? ଏହା ଥିଲା କେବଳ ଲୋକଲୀଳା ପାଇଁ ଆପଣଙ୍କର ଗୁରୁକୁଳ ଆଶ୍ରମରେ ଆବିର୍ଭାବ । ଗୁରୁକୁଳ ଆଶ୍ରମରେ ରହି ଆପଣ ଦ୍ୱିଜାତିମାନଙ୍କ ସମ୍ମୁଖରେ ଏକ ଆଦର୍ଶ ଉପସ୍ଥାପନା କରିଛନ୍ତି ।"

ସୂତ କହିଲେ—"ମୁନିଗଣ ! କଥିତ ସମସ୍ତ ପର୍ଯ୍ୟନ୍ତ ଏହିପରି ଉଭୟ ମିତ୍ରଙ୍କ ମଧ୍ୟରେ ଅତୀତର ଓ ବର୍ତ୍ତମାନର କଥା ଆଲୋଚନା ହେବାରେ ଲାଗିଲା । ଏହାପରେ ଭଗବାନ ଯେପରି ସୁଦାମାଙ୍କର ଅତି ତୁଚ୍ଛ ଭେଟିକୁ ନିଜ ହାତରେ ନେଇ ସବୁକିଛି ତାଙ୍କୁ ପ୍ରଦାନ କଲେ, ସେହି ପ୍ରସଙ୍ଗ ମୁଁ ପରବର୍ତ୍ତୀ ଅଧ୍ୟାୟରେ ଆପଣମାନଙ୍କୁ କହିବି । ଆପଣମାନେ ତାହା ପ୍ରେମପୂର୍ବକ ଶ୍ରବଣ କରନ୍ତୁ ।"

## ଛପ୍ପୟ

ଘର ମହିଁ ଇଂଧନ ନାହିଁ କହ୍ୟୋ ଗୁରୁଆନୀ ଜାଓ ।
ବେଟା ! ବନ ମହିଁ ଜାଇ ତୁରତ ଇଂଧନ ଲେ ଆଓ ॥

ଘୁମ ଘୁମ ଡୋଲ୍ତ ଚଲେଂ ପ୍ରବଲ ବନ ଆଁଧୀ ଆଈ ।
ବରଷା ଭୀଷନ ଭଈ ନହୀଂ ମଗ ପରେଂ ଦଖାଈ ॥
ଘଣ ହଟାଈ ବୃକ୍ଷତର, ସ୍ୱେର ଭୟୋ ଗୁରୁ ଆଇଗେଂ ।
କରେଧ୍ୟା ପ୍ୟାର ଆଶିଷ ଦଈ, ହୃଦୟ ଲୀୟେ ଚପଟାଇଗେଂ ॥



# ସୁଦାମାଙ୍କ ଖୁଦଭଜା

କିମୁପାୟନମାନୀତଂ ବ୍ରହ୍ମନ୍ ମେ ଭବତା ଗୃହାତ୍ ।
ଅଣ୍ୱପ୍ୟୁପାହୃତଂ ଭକ୍ତୈଃ ପ୍ରେମ୍ଣା ଭୂର୍ଯ୍ୟେବ ମେ ଭବେତ୍ ॥
ଭୂର୍ଯ୍ୟଭକ୍ତୋପହୃତଂ ନ ମେ ତୋଷାୟ କଳ୍ପତେ ॥ *

ଛପ୍ପୟ

ଯୋ ଗୁରୁ ଦେଁକେ ଜ୍ଞାନ ମୋକ୍ଷକୋ ମାର୍ଗ ବତାବେଂ ।
ତେ ହରି ହର ଅଜ ରୂପ ସଚ୍ଚିଦାନନ୍ଦ କହାବେଂ ॥
ଆଛା, ସଭୀ କହା ହମାରେ ଲୀୟେ ଦୀୟୋ ।
ଅବହୀ ନହୁଁ ତନ ଦୟୋ ବଲମ ଜାନେ କ୍ୟୁଁ ଜୀୟୋ ॥
କହନ ନ କହେଂ ଦ୍ୱିଜ ଲାଜବଶ, ଶ୍ରୀହରି ବୈଭବ ଦେଖିଂ ଚକିତ୍ ।
ବାର ବାର ଯଦୁବୀର କହେଁ, ଦେହୁ ଉପାୟନ ପ୍ରିୟ ତୁରତ ॥
(ଶ୍ରୀ ଭା : ୧୦ ସ୍କ: ୮୧ ଅ : ୩ ଶ୍ଳୋକ)

---

* ହେ ମିତ୍ର ମୋର ପ୍ରାଣସଖା । କିସ ଆଣିଛ ମୋତେ ଦେଖା ॥
ମୋର ଭକତ ପ୍ରାଣୀ ଯେବେ । ମୋତେ ପୂଜଇ ପ୍ରେମଭାବେ ॥
ସେ ଅଣୁମାତ୍ରେ ଯେବେ ଦେଇ । ପର୍ବତ ପ୍ରାୟେ ମୁଁ ମଣଇ ॥
ଯେ ମୋର ଭାବ ନ ଜାଣନ୍ତି । ପର୍ବତ ପ୍ରାୟେ ଧନ ଦ୍ୟନ୍ତି ॥
ସେ ମୋତେ ଦିଶେ ତୁଚ୍ଛପ୍ରାୟେ । ବୋଲନ୍ତି ପ୍ରଭୁ ଦେବରାୟେ ॥
(ଭାଗବତ : ଜଗନ୍ନାଥ ଦାସ ୧୦ମ ସ୍କ. ୮୭ ଅ.)

ସ୍ୱାଦ ପ୍ରକୃତରେ ବସ୍ତୁରେ ନ ଥାଏ, ତାହା ଥାଏ ପ୍ରେମରେ । ବିନା ପ୍ରେମରେ ଅମୃତ ଯଦି ପାନ କରିବାକୁ ଦିଆଯାଏ, ତାହାହେଲେ ତାହା ନୀରସ ଓ ସ୍ୱାଦରହିତ ହୁଏ । ଯଦି ପ୍ରେମରେ ସହିତ ବିଷ ବି ଦିଆଯାଏ, ତାହାହେଲେ ତାହା ସରସ ଓ ସୁସ୍ୱାଦୁ ହୁଏ । ସ୍ଥାନେ ସ୍ଥାନେ ଦେଖାଇ, ଆଗ୍ରହ କରି ମଧ୍ୟ ଖାଇବାକୁ ମନହୁଏ ନାହିଁ, ତାହା ଯେତେ ସୁନ୍ଦର ଖାଦ୍ୟଦ୍ରବ୍ୟ ହୋଇଥାଉ ପଛକେ ତାହା ଖାଇବାରେ ବିବେକ ବାଧାଦିଏ । ଦୁର୍ଯ୍ୟୋଧନ ଭଗବାନଙ୍କ ସେବା ପାଇଁ ଅନେକ ବସ୍ତୁ ଯୋଗାଡ଼ କରିଥିଲେ, ଅନେକ ତିଆରି କରାଇଥିଲେ । ଅନେକ ଆଗ୍ରହ କରି ଡାକିଲେ ଓ ଡକାଇଲେ; କିନ୍ତୁ ଭଗବାନ ସେଥିରୁ ଖୋଟିଏ ହେଲେ ଦାନା ବି ଖାଇ ନଥିଲେ । ଏହାର ବିପରୀତରେ ବିଦୁରଙ୍କ ଘରେ ନିଜେ ଯାଇ କଦଳୀ ମାଗି ଚୋପା ଖାଇଥିଲେ । ଏ ସଂସାର ଭାବମୟ । କୌଣସି ବସ୍ତୁ ଖରାପ ନୁହେଁ କିମ୍ବା ଭଲ ମଧ୍ୟ ନୁହେଁ । ଯେଉଁ ବସ୍ତୁ ପ୍ରତି ଯେପରି ଭାବ ଜାତ ହୁଏ, ତାହା ସେପରି ଦେଖାଯାଏ । ମାତା, ଭଉଣୀ, କନ୍ୟା, ପତ୍ନୀ, ମାଉସୀ, ପିଉସୀ, ଭାଉଜ ସମସ୍ତେ ସ୍ତ୍ରୀ ଜାତି । କେବଳ ଭାବନାରେହିଁ ପ୍ରଭେଦ । କୌଣସି ବସ୍ତୁକୁ ଦେଖିଲେ ଜଣେ ବାନ୍ତିକରେ ତ ଅନ୍ୟ ଜଣେ ତାକୁ ତା ରୁଚି ଅନୁସାରେ ଅତ୍ୟନ୍ତ ସ୍ୱାଦ ବୋଲି କହି ଖାଏ । ଭଗବାନଙ୍କର କୌଣସି ବସ୍ତୁର ଆବଶ୍ୟକତା ନଥାଏ । ସ୍ୱୟଂ ଲକ୍ଷ୍ମୀ ଯାହାଙ୍କର ଦାସୀ, ତାଙ୍କର କେଉଁ ବସ୍ତୁ ଅବା ଅଭାବ କିପରି ହୋଇପାରନ୍ତା ? କିନ୍ତୁ ଭଗବାନ ସର୍ବଦା ଭାବ ପାଇଁ କ୍ଷୁଧାର୍ତ୍ତ । ପ୍ରେମ ଭାବରେ ଯଦି ତାଙ୍କୁ କେହି କିମ୍ପଦ ଦିଏ, ତାହାହେଲେ ସେ ଧାଇଁ ଯାଇ ତାକୁ ଛଡ଼ାଇ ଆଣି ଆଗ୍ରହ ପୂର୍ବକ ଖାଇ ଥାଆନ୍ତି । ଏଥିପାଇଁ ଶାସ୍ତ୍ରକାରମାନେ କହିଛନ୍ତି—"ଭାବଗ୍ରାହୀ ଜନାର୍ଦ୍ଦନଃ" ଭଗବାନ୍ ଭାବକୁ ହିଁ ଗ୍ରହଣ କରନ୍ତି । ତେଣୁ ତାଙ୍କ ନାମ ଭାବଗ୍ରାହୀ ।"

ସୂତ କହିଲେ—"ମୁନିଗଣ ! ସୁଦାମାଙ୍କ ପତ୍ନୀ ଯେଉଁ ଚାରିମୁଠା ଖୁଦଭଜା ଭଗବାନଙ୍କୁ ଦେବାପାଇଁ କନା ପୁଡ଼ାରେ ବାନ୍ଧି ଦେଇଥିଲେ, ସୁଦାମା ତାହା କାଖତଳେ ଜାକି ଅତି ଯତ୍ନରେ ଆଣିଥିଲେ । ବାଟରେ ଆସିଲାବେଳେ ସେ ଭାବିଥିଲେ ଏହାକୁ ନେଇ ସେ ଭଗବାନଙ୍କ ଆଗରେ ରଖିଦେବେ । ପ୍ରାର୍ଥନା କରିବେ—"ଭଗବାନ୍ ! ମୁଁ ଅତ୍ୟନ୍ତ ଦରିଦ୍ର, ମୋର ଏହି ଭେଟି ଗ୍ରହଣ କରନ୍ତୁ । ଲାଜରେ ମୁଁ ତ ଏହାକୁ ଆଣିବାକୁ ଆଦୌ ଇଚ୍ଛା କରୁ ନଥିଲି; କିନ୍ତୁ ବ୍ରାହ୍ମଣୀ ତାହା ଶୁଣିଲା ନାହିଁ । ଯେତେବେଳେ ସେ ଏହା ବାନ୍ଧି ଦେଲା, ମୁଁ ସେତେବେଳେ ତାହା ଆଣିଲି । ଏହା ଅବଶ୍ୟ ଆପଣଙ୍କୁ ଭେଟି ଦେବାର ଉପଯୁକ୍ତ ଦ୍ରବ୍ୟ ନୁହେଁ । କିନ୍ତୁ ମୋର ଦୀନତାକୁ ଦେଖି ଏହାକୁ ଆପଣ ଗ୍ରହଣ କରନ୍ତୁ ।" କିନ୍ତୁ ଏଠାକୁ ଆସି ସେ ଭଗବାନଙ୍କର ଯେଉଁ ଅତୁଳ ବୈଭବ ଦେଖିଲେ, ତେଣୁ ଏହି ସାମାନ୍ୟ ଖୁଦଭଜା ଭେଟି ଭଗବାନଙ୍କୁ ଦେବାପାଇଁ ତାଙ୍କର ସାହସ ହେଲାନାହିଁ । ସେ ଚିନ୍ତାକଲେ—"ଏ ଖୁଦଭଜା ଦେଖି ସମସ୍ତେ

ମୋତେ ହସି ଉଡ଼ାଇ ଦେବେ । ଏଥିପାଇଁ ମୁଁ ଏବେ ତାଙ୍କୁ ଆଉ ଦେବନାହିଁ । ଘରକୁ ଫେରାଇ ନେବ ।”

ସର୍ବାନ୍ତର୍ଯ୍ୟାମୀ ହରିତ ସବୁ କଥା ଜାଣୁଥିଲେ । ସେ ଚାହିଁ ଦେଖିଲେ, ସୁଦାମା ତାଙ୍କ କାଖରେ କ’ଣ ଗୋଟିଏ ପୁଡ଼ା ଲୁଚାଇ ଜାକି ଧରିଛନ୍ତି । ଗାଧୋଇବା ସମୟରେ, ଖାଇବା ସମୟରେ ଓ ଲୁଗା ପିନ୍ଧିବା ସମୟରେ ସେ ତାକୁ ଲୁଚାଇ ଦେଉଥିଲେ । ଘଟ ଘଟର କଥା ଜାଣିପାରୁଥିବା ବ୍ରାହ୍ମଣ୍ୟଦେବ ଭଗବାନ୍ ଶ୍ୟାମସୁନ୍ଦର ଏବେ ସବୁକଥା ବୁଝିପାରିଲେ ! ସେ ଜାଣିଗଲେ ଯେ, ମିତ୍ର ସଙ୍କୋଚ ବଶତଃ ଏ ଖୁଦଭଜା ମୋତେ ଦେଉନାହାନ୍ତି । ସେ ତାଙ୍କ ସଂକୋଚ ଦୂର କରିବା ପାଇଁ ମନ୍ଦ ମନ୍ଦ ହସି କହିଲେ— “ହଁ ମିତ୍ର ! ଅନ୍ୟ କଥାବାର୍ତ୍ତା ପଛରେ ହେବା, ପ୍ରଥମେ ଆପଣ ମୋତେ କହନ୍ତୁ ଯେ ଆପଣ ଘରୁ ମୋ ପାଇଁ କ’ଣ ଉପହାର ଆଣିଛନ୍ତି ? ମୋ ଭାଉଜ ମୋ ପାଇଁ କ’ଣ ପଠାଇଛନ୍ତି ?”

ଏହା ଶୁଣି ସୁଦାମା ବଡ଼ ଅଡ଼ୁଆରେ ଏବେ ପଡ଼ିଗଲେ, ସେ ଲାଜରେ ଛକ ପାଞ୍ଚ ହେଲେ । ସେ ହଁ କମ୍ବା ନାହିଁ କହିପାରିଲେ ନାହିଁ । ପୁଡ଼ାକୁ ଲୁଚାଇ ଚୁପ୍‌ଚାପ ବସି ରହିଲେ । ଭଗବାନ୍ ପୁଣି ପଚାରିଲେ—ଦେଖ ଭାଇ ! ସଂକୋଚ କରିବାର କିଛି କାରଣ ନାହିଁ । ଏହାତ କେବେହେଲେ ସମ୍ଭବ ହୋଇ ନପାରେ ଯେ, ମୋ ଭାଉଜ ମୋ ପାଇଁ କିଛି ନ ଦେଇଥିବେ ? କୌଣସି ମିତ୍ର କୌଣସି ମିତ୍ରକୁ ସାକ୍ଷାତ କରିବାକୁ ଗଲେ ତାହାର ସଦ୍‌ଗୃହସ୍ଥ ପତ୍ନୀ ନିଶ୍ଚୟ କିଛି ନା କିଛି ଉପହାର ଅବଶ୍ୟ ପଠାଇ ଥାଆନ୍ତି । ସେହି ଉପହାରରେ ବସ୍ତୁର ପ୍ରକୃତ କିଛି ମୂଲ୍ୟ ନଥାଏ । ତା ସହିତ ନିଜ ହୃଦୟର ଭାବହିଁ ଜଡ଼ିତ ଥାଏ । ଯେପରିକି ପାନ କାହାକୁ ଦେବାକୁ ହେଲେ ତାଙ୍କୁ ଗୋଟିଏ ପାନ ପତ୍ରରେ ବ ମସଲା ପୁରାଇ ମୋଡ଼ି ଖିଲିକରି ଦିଆଯାଏ, ପାନ ଦେଲା ଲୋକର ଅଭିପ୍ରାୟ ପାନ ଖଣ୍ଡିକ ଦେବାରେ ନଥାଏ, ସେହିପରି ଉପାୟନରେ (ବସ୍ତୁରେ) ପ୍ରେମ ଭରି ଦିଆଯାଏ । ଆପଣଙ୍କ କୃପାରୁ ମୋର ଏଠାରେ କୌଣସି ବସ୍ତୁର ଅଭାବ ନାହିଁ । ମୁଁ ବସ୍ତୁ ପାଇବା ପାଇଁ କ୍ଷୁଧିତ ନୁହେଁ; କିନ୍ତୁ ପ୍ରେମ ପାଇଁ ସର୍ବଦା କ୍ଷୁଧିତ । ମୋର ଭକ୍ତଗଣ ମୋତେ ସାମାନ୍ୟ ବସ୍ତୁଟିଏ ଦେଲେ ମଧ୍ୟ ପ୍ରେମ ପୂର୍ବକ ଦେଉଥିବାରୁ ମୋ ପାଇଁ ତାହା ବହୁତ ବେଶୀ । ଏହି ବିପରୀତରେ ଯଦି କେହି ଛପନ ପ୍ରକାର ଭୋଗ ମୋତେ ଦେଉଥାଏ ଓ ତାହା ବହୁ ପରିମାଣରେ ଦେଉଥାଏ, ତଥାପି ତାହା ଯଦି ବିନା ପ୍ରେମରେ ଦିଆ ହୋଇଥାଏ, ତାହାହେଲେ ସେଥିରେ ମୁଁ ସନ୍ତୁଷ୍ଟ ହୋଇପାରେ ନାହିଁ । ମୋର ଏଠାରେ ପ୍ରସନ୍ନତାର ମାପଦଣ୍ଡ ବସ୍ତୁର ଲଘୁତା, ଗୁରୁତା ଅଥବା ଶ୍ରେଷ୍ଠ ଦରର ନାହିଁ । ମୁଁ ତ ଭାବଗ୍ରାହୀ । ଯେଉଁ ବ୍ୟକ୍ତି ଭକ୍ତିପୂର୍ବକ ମୋତେ ଗୋଟିଏ ଫଳ ବା ଦିଏ, ଫୁଲ, ପତ୍ର ଏପରିକି କେବଳ ଜଳ ଟିକିଏ ଦିଏ, ତାହାହେଲେ ସେହି ପ୍ରେମ ଭାବରେ

ଦେଉଥିବା ବସ୍ତୁକୁ ମୁଁ ପ୍ରସନ୍ନତା ପୂର୍ବକ ଗ୍ରହଣ କରିଥାଏ। ତେଣୁ ଆପଣ ମୋ ପାଇଁ ଯାହାକିଛି ଆଣିଥାଆନ୍ତି ପଛେ, ସଙ୍କୋଚ ନକରି ତାହା ମୋତେ ପ୍ରସନ୍ନତାପୂର୍ବକ ପ୍ରଦାନ କରନ୍ତୁ।"

ସୂତ କହିଲେ—"ମୁନିଗଣ! ଭଗବାନ୍ ଏହିପରି ବାରମ୍ବାର କହିବା ସତ୍ତ୍ୱେ ବି ସୁଦାମା ସେହି ଖଣ୍ଡମୁଠା ଖୁଦଭଜାର ପୁଡ଼ିଆଟିକୁ ଶ୍ୟାମସୁନ୍ଦରଙ୍କୁ ଦେଲେନାହିଁ କି ଭଗବାନଙ୍କୁ ପଦେହେଲେ କିଛି କହିଲେ ବି ନାହିଁ। କେବଳ ସଂକୋଚ ଓ ଲଜ୍ଜାରେ ମୁହଁ ତଳକୁ କରି ପୂର୍ବପରି ବସି ରହିଲେ।

ଭଗବାନ୍ କହିଲେ—"କ'ଣ ଭାଇ! ଭାଉଜ କ'ଣ ମୋ ପାଇଁ କିଛି ପଠାଇ ନାହାନ୍ତି? ତାହାହେଲେ କହିଦିଅ ଯେ ସେ କିଛି ଦେଇ ନାହାନ୍ତି।"

ଏହା ଶୁଣି ରୁକ୍ମିଣୀ କହିଲେ—"ଆପଣତ ଯାହା ପଛରେ ଲାଗି ଥାଆନ୍ତି ତାକୁ ଛାଡ଼ନ୍ତି ନାହିଁ। ତାଙ୍କୁ ବଡ଼ ହଇରାଣ କରନ୍ତି। କଏ କିଛି ଏଠାକୁ ନ ଆଣିଲେ ସତେ ଯେପରି ଆପଣଙ୍କ ପେଟ ପୂରୁନାହିଁ? ସେ ଏତେ ଦୂରରୁ ଆସିଛନ୍ତି, ତାଙ୍କୁ କିଛି ଦେବା ଉଚିତ୍। ତାହା ନକରି ବାରମ୍ବାର ତାଙ୍କୁ ହଇରାଣ କରୁଛନ୍ତି? କହୁଛନ୍ତି କ'ଣ ନା, "କଣ ଆଣିଛନ୍ତି, କ'ଣ ଆଣିଛନ୍ତି? ଏହିପରି କହି ତାଙ୍କୁ ଲଜ୍ଜିତ କରନ୍ତୁ ନାହିଁ।"

ଏହା ଶୁଣି ବ୍ୟଙ୍ଗ ସ୍ୱରରେ ଭଗବାନ୍ କହିଲେ—"ମହାରାଣୀ! ଆଚ୍ଛା ଠିକ୍ ଅଛି, ତୁମେମାନେ ସବୁ ଚୁପ୍ ହୋଇ କେବଳ ଦେଖ। ମୋ କଥାରେ ଆଉ ପ୍ରତିବାଦ ନକରି ଦେଖ ଭାଇ କପରି ଆଣିଥିବା ଉପହାର ମୋତେ ଦେଉନାହାନ୍ତି।"

ରୁକ୍ମିଣୀ କହିଲେ—"ନ୍ୟାଯ୍ୟ କଥା କହିଲେ ତ ତୁମେ ନଶୁଣି ତୁମ ଜିଦରେ ଅଟଳ ରହ। କେବଳ ନେବା କଥାଟି ତୁମେ ଶିଖିଛ, ତାହାକୁ କିଛି ଦେବା ତ କର୍ତ୍ତବ୍ୟ?"

ଭଗବାନ୍ କହିଲେ—"ହଁ, ତାହାନୁହେଁ ଆଉ କ'ଣ? ତୁମ ବାପା ମଧ୍ୟ ମୋତେ ବହୁତ କିଛି ଦେଇଛନ୍ତି। ଲୋକେ କନ୍ୟା ଦାନ କରନ୍ତି, ତା ସହିତ ଦକ୍ଷିଣା ସ୍ୱରୂପ ଯୌତୁକ ଆଦି ଦିଅନ୍ତି। ସେମାନେ କେଉଁ କଥା ନଦିଅନ୍ତି? ଯୌତୁକ ଦେବା କଥା ତ ପୃଥକ୍ କଥା। ମୋତେ ଯାହାସବୁ ଦିଆଯାଇଛି, ତାହା ପ୍ରସନ୍ନତାପୂର୍ବକ ଦିଆଯାଇ ନାହିଁ। ମୁଁ ତ ମୋ ବାହୁବଳରେ ବଳପୂର୍ବକ ସବୁକିଛି ନେଇ ଆସିଛି। ଓଲଟି କନ ପୁଅକୁ ସେ ମୋତେ ଧରି ନେବାକୁ ପଠାଇଥିଲେ।"

ପ୍ରେମପୂର୍ଣ୍ଣ କ୍ଷୋଭ ପ୍ରକାଶ କରି ରୁକ୍ମିଣୀ କହିଲେ—"ଦେଖନ୍ତୁ! ଆପଣ ଏବେ ମୋ ବାପ ନାମ ଧରିଲେଣି। ଏକଥା ଆଦୌ ପ୍ରଶଂସନୀୟ ନୁହେଁ। ଲୋକେ

ଅନ୍ୟ ଉପରେ ଦୋଷ ବୋଝ ଲଦି ଦିଅନ୍ତି ଓ ନିଜ ଉପରୁ ସବୁ ଦୋଷତକ ଖସାଇ ଦିଅନ୍ତି । ସେମାନଙ୍କୁ ନିଜ ଦୋଷ ଦେଖାଯାଏ ନାହିଁ । ମୋ ପିତାତ କିଛି ଦେଇ ନଥିଲେ ; କିନ୍ତୁ ନନ୍ଦେଇ ଯେତେବେଳେ ସୁଭଦ୍ରା ନାଙ୍କୁ ଉଡ଼ାଇ ନେଲେ, ସେତେବେଳେ ଆପଣମାନେ କ'ଣ ଦେଇଥିଲେ ?"

ଭଗବାନ୍ ସଙ୍ଗେ ସଙ୍ଗେ କହିଲେ—"ଆମେ କିଛି ଦେଇ ନଥିଲୁ, ଏହା ତୁମେ କହୁଛ କିପରି ? ଆମେ ରଥ, ଘୋଡ଼ା, ସାରଥୀ ଆଦି ହିବ.ହି ପୂର୍ବରୁହିଁ ଦେଇଥିଲୁ ।"

ରୁକ୍ମିଣୀ କହିଲେ—"ତୁମ ସହିତ କଥାରେତ ବ୍ରହ୍ମା ହାରିଯିବେ । ଏବେ ଯାହା ଇଚ୍ଛା, ତାହା ତୁମ ମିତ୍ରଙ୍କୁ ମାଗୁଥାଅ । ତାଙ୍କ ଖଣ୍ଡିଆ ପୋଟଳିଟାକୁ ନେଇ ଆସ । ସତ କଥା କହିଲେତ ଗୋସେଇଁ ଚିଡ଼ନ୍ତି ।"

ସୂତ କହିଲେ—ମୁନିଗଣ ! ଭଗବାନ୍ ଯେତେବେଳେ ବାରମ୍ବାର ଭେଟି ସମ୍ବନ୍ଧରେ ପଚାରିଲେ ଓ କହିଲେ ମୋତେ ପ୍ରେମରେ ଦିଆଯାଇଥିବା ପାନ ପତ୍ରଟିଏ ବି ମୋତେ ଭଲ ଲାଗେ, ସେତେବେଳେ ସୁଦାମା ମନରେ ଭାବିଲେ, ଏହି ଖୁଦ ପୁଡ଼ିଆକୁ ବାହାର କରି ଭଗବାନଙ୍କ ଆଗରେ ରଖିଦେବି । କିନ୍ତୁ ଯେତେବେଳେ ପତିପତ୍ନୀ ଦୁହିଁଙ୍କ ମଧ୍ୟରେ ଏତେ ଧୂକ୍ତତର୍କ ହେଲା, ସେତେବେଳେ ପୁଣି ତାଙ୍କର ବିଚାର ବଦଳିଗଲା । ସେ ଭାବିଲେ, ଏବେ ଯଦି ମୁଁ ପୁଡ଼ିଆ ବାହାର କରିବି, ତାହାହେଲେ ଏ ରାଜକନ୍ୟା ଖେଁ ଖେଁ ହୋଇ ହସି କହିବେ ଯେ, "ଏହାହିଁ ତ ତୁମ ମିତ୍ରଙ୍କ ଭେଟି ।" ସେହି ଲଜ୍ଜାରେ ସେ ପୁଡ଼ିଆକୁ ଆଉ କାଖ ସନ୍ଧିରୁ କାଢ଼ିଲେ ନାହିଁ ବରଂ ଜୋରରେ ଜାକି ଧରିଲେ ।

ଭଗବାନ ତ ସମସ୍ତଙ୍କ ଅନ୍ତଃକରଣରେ ସାକ୍ଷାତ୍ ସାକ୍ଷୀ ସ୍ୱରୂପ ବିଦ୍ୟମାନ । ତାଙ୍କୁ ଅବା ସୁଦାମାଙ୍କ ଆଗମନର କାରଣ, ସ୍ତ୍ରୀ ଦେଇଥିବା ଖୁଦ ଭଜା ପୁଡ଼ିଆ କଥା ଅଜଣା ରହିଲା କିପରି ? ତେଣୁ ସେ ଚିନ୍ତା କଲେ ସୁଦାମା ପ୍ରକୃତରେ ମୋର ନିଷ୍କାମ ଭକ୍ତ । ସେ ଧନ ଆଶାରେ ପୂର୍ବରୁ କେବେହେଲେ ମୋତେ ଚିନ୍ତା କରୁ ନ ଥିଲେ କି ଏବେ ମଧ କରୁ ନାହାନ୍ତି । ଯଦି ଚ ସେ ତାଙ୍କର ପତିବ୍ରତା ପତ୍ନୀଙ୍କ ଅନୁରୋଧରେ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ମୋ ପାଖକୁ ଆସିଛନ୍ତି, ତାଙ୍କର ଧନ ସମ୍ପତ୍ତି ପାଇଁ ଟିକିଏ ହେଲେ ବି ଆଗ୍ରହ ନାହିଁ । ଏହି ଖୁଦ ଭଜା ମଧ୍ୟରେ ତାଙ୍କ ପତ୍ନୀଙ୍କର ଧନର କାମନା ଭରି ରହିଛି । ତେଣୁ ସେହି ଲଜ୍ଜାରେ ସେ ତାହା ମୋତେ ଦେଇ ନାହାନ୍ତି । ଖୁଦଭଜା ଦେଇଦେବାର ଅର୍ଥ ହେଉଛି ମୋତେ ଯାଚଞ୍ଜା କରିବା, ଏହା ସେ ଭଲ ଭାବରେ

ଉପଲବ୍ଧି କରୁଛନ୍ତି । ତେଣୁ ସେହି ଯାଚଞ୍ଚା ଜନିତ ଲଜ୍ଜାରେ ସେ ଦେଉନାହାନ୍ତି । ଆଚ୍ଛା ଠିକ୍ ଅଛି । ସେ ଯଦି ସ୍ୱଇଚ୍ଛାରେ ନ ଦେଉଛନ୍ତି, ତାହାହେଲେ ମୁଁ ତାଙ୍କଠାରୁ ଛଡ଼ାଇ ସେହି ଭେଟିଟିକ ଗ୍ରହଣ କରିବି ଓ ତାହା ବଦଳରେ ଏପରି ସମ୍ପତ୍ତି ଦେବି, ଯାହା କି ସ୍ୱର୍ଗର ଦେବତାଙ୍କ ପାଇଁ ଦୁର୍ଲଭ ।''

ଏହି ସବୁ କଥା ଚିନ୍ତା କରି ଭଗବାନ୍ କହିଲେ—''ଆଚ୍ଛା, ମିତ୍ର ! ଭାଉଜ କିଛି ନ ଦେଇଥିଲେ ନାହିଁ ପଛେ, ସେଥିନେଇ କିଛି ଚିନ୍ତା ନାହିଁ, ଆପଣ ମୋର ଏହି ଚିତ୍ରଟିକୁ ଲକ୍ଷ୍ୟ କରନ୍ତୁ ତ । ତାହା କି ସୁନ୍ଦର ଦିଶୁଛି ? କେତେ ସୁନ୍ଦର କରି ଚିତ୍ରକର ତାହା ଆଙ୍କିଛି ?'' ଏହା ଶୁଣି ସୁଦାମା ସେହି ଚିତ୍ରଟିକୁ ଦେଖିବାକୁ ଲାଗିଲେ । ଚିତ୍ର ଦେଖୁ ଦେଖୁ ତାଙ୍କ ଚିତ୍ତ ତନ୍ମୟ ହୋଇଗଲା । ସେହି ଅବସରରେ ମଇଳା ଛିଣ୍ଡା ପୁରୁଣା ବସ୍ତ୍ର ଟୁକୁରାରେ ବନ୍ଧା ହୋଇଥିବା ଭେଟିକୁ ଭଗବାନ କୌଶଳର ସହିତ ବାହାର କରିନେଲେ ଓ ହସି ହସି କହିବାକୁ ଲାଗିଲେ—''ମିତ୍ର ! ଆପଣ ତ କହୁଥିଲେ ଯେ ଭାଉଜ ମୋ ପାଇଁ କିଛି ପଠାଇ ନାହାନ୍ତି, ତାହାହେଲେ ଏ ପୁଡ଼ିଆରେ କ'ଣ ?''

ସୁଦାମା କହିଲେ—''ନା, ମହାରାଜ ! ସେ କିଛି ନୁହେଁ, ଏହା କହି ଯେତେବେଳେ ସେ ପୁଡ଼ିଆଟି ଭଗବାନଙ୍କଠାରୁ ନେବାପାଇଁ ହାତ ବଢ଼ାଇ ତାହା ଧରି ପକାଇଲେ, ଭଗବାନ ସଙ୍ଗେ ସଙ୍ଗେ ତାଙ୍କ ହାତରୁ ଝିଙ୍କି ନେଲେ । ଏହାଦ୍ୱାରା ପୁଡ଼ିଆଟି ଫାଟିଗଲା ଓ ଖୁଦ୍ ବୁଣିପିବାକୁ ଲାଗିଲା । ଭଗବାନ ଅତି ଆନନ୍ଦରେ ହସି ହସି କହିଲେ—''ଆରେ, ହେ ! ଇଏ ତ ଖୁଦଭଜା ! ପୂର୍ବାଞ୍ଚଳ ଲୋକେ ତ ଦହି ଚୁଡ଼ାକୁ ଖୁବ ଆଗ୍ରହରେ ଖାଆନ୍ତି । ମୋର ଖୁଦଭଜା କିନ୍ତୁ ଅତ୍ୟନ୍ତ ପ୍ରିୟ ଖାଦ୍ୟ । ପୁନଶ୍ଚ ତାହା ମୋ ମିତ୍ର ମୋ ପାଇଁ ଆଣିଛନ୍ତି । ଏଥିରେ ଆଉ କହିବାର କିଛି ନାହିଁ । ଆହା ! ଆପଣ ତ ଖୁବ୍ ସୁନ୍ଦର ଦ୍ରବ୍ୟ ଆଣିଛନ୍ତି ! ଭାଉଜ ମୋ ପାଇଁ ଅତି ଉତ୍ତମ ଉପହାର ପଠାଇଛନ୍ତି । କେବଳ ମୁଁ ଏହା ଖାଇ ତୃପ୍ତ ହେବି ନାହିଁ ଯେ, ମୋ ଆଶ୍ରୟରେ ରହୁଥିବା ସମସ୍ତ ବ୍ରହ୍ମାଣ୍ଡ ତୃପ୍ତ ହୋଇଯିବ । ଏଥିରେ ତ ସମସ୍ତ ବିଶ୍ୱର ପେଟ ଭରିଯିବ ।'' ଏହା କହି ସଙ୍ଗେ ସଙ୍ଗେ ଭଗବାନ ମୁଠିଏ ଖୁଦ ଆଗ ଚୋବାଇ ପକାଇଲେ । ଯେତେବେଳେ ସେ ଆଉ ମୁଠିଏ ନେଇ ପାଟିରେ ପକାଇବାକୁ ଯାଆନ୍ତି, ସେତେବେଳେ ରୁକ୍ମିଣୀ ଭୟ କଲେ ଯେ, ଗୋଟିଏ ମୁଠାରେ ତ ଇଏ ସମସ୍ତ ସ୍ୱର୍ଗ ସ୍ୱ ସମ୍ପତ୍ତି ଦେଇଦେବେ, ଅନ୍ୟ ମୁଠା ଯଦି ଇଏ ଖାଇ ଦିଅନ୍ତି, ତାହାହେଲେ ମୋତେ (ଲକ୍ଷ୍ମୀଙ୍କୁ) ଉଠାଇ ମଧ୍ୟ ତାଙ୍କୁ ସମର୍ପଣ କରିଦେବେ । ତେଣୁ ସେ ଧାଇଁ ଯାଇ ତାଙ୍କ ହାତକୁ ଅଧିକ ଯିବାପାଇଁ ମାଡ ବସିଲେ ଓ କହିଲେ—''ମହାରାଜ ! ଆପଣ ବଡ଼ ସ୍ୱାର୍ଥପର । ମୋ ବଡ଼ ଯାଆ ପଠାଇଥିବା ଜିନିଷ ଆପଣ ଏକା ଏକା ଉଡ଼ାଇ ଦେବାକୁ ବସିଛନ୍ତି ? ପୁରୁଷଙ୍କର ଭ

କିଛି ଧ୍ୟାନ ଦେବେ ନାହିଁ, ମୋ ପାଖକୁ ଯେଉଁ ଖାଦ୍ୟ ପଦାର୍ଥ ଆସେ, ମୁଁ କିଛି ଗ୍ରହଣ କରି ଅବଶିଷ୍ଟ ଅନ୍ୟମାନଙ୍କୁ ବାଣ୍ଟିଦିଏ । ଏଥିରୁ ଅନ୍ତତଃ ଗୁରୁ ମୁଠିଏ ଖୁଦଭଜା ନିକଟରେ ଥିବା ଲୋକମାନଙ୍କୁ ତ ଦେବ । ଏବେ ଯେତିକ ଅଛି ସେତକ ଆପଣ ଆଉ ପାଟିକୁ ପକାଇ ଦିଅନ୍ତୁ ନାହିଁ, ଯେତିକ ଖାଇଲେଣି ସେତିକ ଆପଣଙ୍କୁ ଯଥେଷ୍ଟ ।"

ଭଗବାନ ହସି ହସି କହିଲେ—"ଏ ପର୍ଯ୍ୟନ୍ତ ତ ତୁମେ ଚୁପ ରହିଥିଲ, ଆଉ ଏବେ ଯାଆଙ୍କ ଭେଟି ଉପରେ ନିଜର ଅଧିକାର ଦାବି କରୁଅଛ ? ଦିଅ, ଛାଡ଼ିଦିଅ ମୋ ହାତ । ମୁଁ ସତ କହୁଛି, ଏ ଖୁଦ ଭଜା ଯେତେ ସ୍ୱାଦ ନା, ଏପରି ସ୍ୱାଦ ମୁଁ ଆଜି ପର୍ଯ୍ୟନ୍ତ କୌଣସି ପଦାର୍ଥରୁ ପାଇ ନଥିଲି । ଆଜି ମୁଁ ସବୁତକ ଏକା ଏକା ଉଡ଼ାଇ ଦେବ ।"

ରୁକ୍ମିଣୀ ଆଗ୍ରହ ପ୍ରକାଶ କରି କହିଲେ, ସେଇଥି ପାଇଁ ତ ମୁଁ କହୁଛି ଯେ, ସ୍ୱାଦିଷ୍ଟ ପଦାର୍ଥକୁ ଏକା ଏକା ଖାଇବା ଉଚିତ୍ ନୁହେଁ ।" ହେ ବିଶ୍ୱମ୍ଭର ! ଆପଣ ଯେତିକ ଖୁଦ ଖାଇଦେଲେଣି, ସେତିକରେ ମନୁଷ୍ୟଙ୍କୁ ଇହଲୋକ ଓ ପରଲୋକରେ ସବୁ ସମ୍ପତ୍ତିର ଭୋଗ କରିବା ପାଇଁ ପର୍ଯ୍ୟାପ୍ତ । ଆଉ ଅଧିକ ଖାଇବାଇ ଏତେ ଉଦାରପଣ ଦେଖାଇଲେ ମୋତେ ବି ତାଙ୍କ ଅଧୀନ କରିଦେବେ । ଟିକିଏ ଚିନ୍ତା କରି ଦେଖନ୍ତୁ ।

ଏହା ଶୁଣି ଭଗବାନ ଅଟକି ଗଲେ । ଅବଶିଷ୍ଟ ଖୁଦ ଭଜାତକ ରୁକ୍ମିଣୀ ନିଜ ହାତକୁ ନେଇଗଲେ । ସେ ତହିଁରୁ ମୁଠି ମୁଠିଟା କରି ଖୁଦ ଭଜା ଦାସୀ ସମସ୍ତଙ୍କ ପାଖକୁ ପଠାଇ ଦେଲେ । ଭଗବାନ ପଚାରିଲେ—"ହେ ମିତ୍ରବର ! ଏଥିରେ ଆପଣ ଅମୃତ ମିଶାଇ ଆଣିଥିଲେ ନା ଏହାକୁ ଅମୃତରେ ବୁଡ଼ାଇ ଆଣିଥିଲେ ? ଏପରି ସ୍ୱାଦିଷ୍ଟ ଖୁଦଭଜା ତ ମୁଁ କେବେହେଲେ ଖାଇନାହିଁ ।"

ସୁଦାମା ସେତେବେଳେ ଲଜ୍ଜାରେ ମୁହଁ ତଳକୁ କରି ବସିଥିଲେ । ଆଖିରେ ଲୁହ ଭରିଯାଉଥିଲା । ସେ କିଛି ଉତ୍ତର ଦେଲେ ନାହିଁ । ଭଗବାନ ତାଙ୍କୁ ଏମିତେମିତି କଥା କହି ତାଙ୍କ ସଂକୋଚ ଛଡ଼ାଇଲେ । ଏହାପରେ ଭଗବାନ ତାଙ୍କୁ ନେଇ ନିଜ ମହଲ ଦେଖାଇଲେ । ବଗିଚାରେ ନେଇ ବୁଲାଇଲେ ଓ ତାଙ୍କର ସମସ୍ତ ପ୍ରକାର ଆଦର ସତ୍କାର କଲେ ।

ସୂତ କହିଲେ—"ମୁନିଗଣ ! ଭଗବାନ ଏହିପରି ସାଧାରଣ ଖୁଦ ଭଜା ଛଡ଼ାଇ ଖାଇ ସୁଦାମାଙ୍କୁ ତାଙ୍କ ଅଜ୍ଞାତରେ ସବୁକିଛି ଦେଇଦେଲେ । ଏବେ ସୁଦାମା ଯେପରି ନିଜ ଘରକୁ ଫେରିଗଲେ, ସେହି କଥା ମୁଁ ଆପଣମାନଙ୍କୁ ପରବର୍ତ୍ତୀ ଅଧ୍ୟାୟରେ କହିବ ।"

## ଛପ୍ପୟ

ଦଯ୍ୟେ ରୁକମିନୀ କହୂକ ପ୍ରେମମଯ୍ୟ ହରିକୂଁ ତାନେ ।
ତନକୁଁ ସୂନକେଂ ସ୍ୱପ୍ନ ଊଠୁ ସହସେ ସକୁଚନେ ॥
ଇତ ଉତ ଚଉ ବଁଟାଇ ବଗଲ ଦେଖେଂ ତଉସ ଖୀଂଚେ ।
ଖାଯ୍ୟେ ମୁଠ୍ଠୀ ତୁରତ କହେଂ ଯ୍ୟେ ଅମୃତ ସୀଂଚେ ॥
ଲଗେ ବଦାବନ ଦୂସରୀ, ଲଯ୍ୟୋ ରୁକମିନୀ ପକଡ଼ କର ।
କହେଂ—"ଜଗେ ଜା କୃପାନିଧି, ମୋହୂକୁଁ କଛୁ ଦେଉବର ॥



# ସୁଦାମାଙ୍କର ବିଦାୟ

**ଶ୍ରୋଭୂତେ ବିଶ୍ୱଭବେନ ସ୍ୱସୁଖେନାଭିନନ୍ଦିତଃ ।**
**ଜଗାମ ସ୍ୱାଲୟଂ ତାତ ପଥ୍ୟନୁବ୍ରଜ୍ୟ ନନ୍ଦିତଃ ॥ ***

(ଶ୍ରୀ ଭା : ୧୦ ସ୍କ: ୮୧ ଅ: ୧୩ ଶ୍ଳୋକ)

## ଛପ୍‌ପୟ

ତନ୍ଦୁଲ ମୁଟ୍‌ଠୀ ଏକ ଖାୟ ସବ ସମ୍ପତ୍ତି ଦୀନ୍ହୀ ।
ମୋହୁଁ ନ ଅବ ଦେଁନ ଆପନେ ଇଚ୍ଛା କୀନ୍ହୀ ॥
ୟୋଂ ହରି ସବ କଛୁ ଦୟୋ ନ ଦ୍ୱିଜକୁଁ ପ୍ରକଟ ଦଖାୟୋ ।
ହୋତ ପ୍ରାତ ବିପ୍ର ପୁଛି ନିଜ ନଗର ସିଧାୟୋ ॥
କଛୁକ ଦୂର ପହୁଁଚାଇକେ, ଆୟେ ହରି ହିୟ ଲାୟ କେଂ ।
ସଦା କରେ ଅତି ବିନୟ ତେଂ, ଅତି ହୀ ନେହ ଜନାୟ କେଂ ॥

ସ୍ନେହ ଯେପରି ହୋଇଥାଉ ନା କାହିଁକି, ଯଦି ସ୍ଥିତି ଅନ୍ୟପ୍ରକାର ହୋଇଥାଏ, ତାହାହେଲେ କ୍ଷୁଦ୍ର ସ୍ଥିତିର ମନୁଷ୍ୟ ସବଦା ନିଜକୁ ନିଜେ ସଙ୍କୋଚ ବୋଧ କରେ । ନିଜର ଅନ୍ତରାତ୍ମାର ସାକ୍ଷୀ ତ ସେ ନିଜେ । କେଉଁଠି ରହିବାର ସ୍ୱତନ୍ତ୍ରତା ତ କେଉଁଠି ହୃଦୟରେ ଦ୍ୱିଧାବୋଧ । ଏଥିପାଇଁ ଅନ୍ୟ କାହାରିକୁ ପଚାରିବାକୁ ପଡ଼େ ନାହିଁ । ନିଜର ହୃଦୟ ହିଁ ସାକ୍ଷୀ ଦେଇଦିଏ ।

---

* ଏମନ୍ତେ ପାହିଲା ରଜନୀ । ଗୋବିନ୍ଦ ହୀନବସ୍ତ୍ର ଘେନି ॥
ବିପ୍ରେ କହଇ ଅବଧାନ । ପାଳନ୍ତି ପିନ୍ଧାଇ ବସନ ॥
ଆନନ୍ଦେ ଆଲିଙ୍ଗନ କରି । ସ୍ତବେ ବ୍ରାହ୍ମଣ ପାଦ ଧରି ॥
ଅନୁଗମନ କରୁ ଦୂରେ । ବିପ୍ର ପେଷିଲେ ନିଜପୁରେ ॥

( ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୮୭ ଅ )

ସୂତ କହିଲେ—"ମୁନିଗଣ ! ଦ୍ୱାରକାରେ ଭଗବାନଙ୍କର ଅପାର ବୈଭବ ଥିଲା । ସମସ୍ତ ଋଦ୍ଧି-ସିଦ୍ଧି ସେଠାରେ ହାତଯୋଡ଼ି ଭଗବାନଙ୍କ ଆଜ୍ଞାକୁ ପ୍ରତୀକ୍ଷା କରି ଠିଆ ହୋଇଥିଲେ । ଷୋଳ ସହସ୍ର ରାଣୀଙ୍କ ନୂପୁର ଶବ୍ଦରେ ଚତୁର୍ଦ୍ଦିଗ ମୁଖରିତ ହେଉଥିଲା । ସୁଦାମା ଦେଖିଲେ ଏଠାରେ ବୈଭବ ଅନିର୍ବଚନୀୟ । ସତ୍ୟଲୋକ ଏହି ସ୍ଥାନରୁ ଅତ୍ୟନ୍ତ ପତିତ ମନେକଲେ । ସେଦିନ ସେ ଶେଷ ସମୟରେ ହିଁ ଏଠାରେ ପହଞ୍ଚିଥିଲେ । ଦିନସାରା ରହିଲେ । ରାତି ହେବାରୁ ଭଗବାନଙ୍କ ମହଲରେ ଯାଇ ଶୟନ କଲେ । ଏଠାରେ କହି ସେ ଏପରି ନୂତନ ନୂତନ ବସ୍ତୁ ଆହାର କଲେ, ଯାହା କି ସେ ପୂର୍ବରୁ କେବେ ଦେଖି ନଥିଲେ କି ନାଁ ବି ଶୁଣି ନଥିଲେ । ଏଭଳି ପେୟ ବସ୍ତୁ ପାନ କଲେ, ଯାହାକି ଅମୃତୋପମ ସ୍ୱାଦଯୁକ୍ତ ଓ ହୃଦୟମୋଦକାରୀ । ସେ ଏପରି ଅନୁଭବ କଲେ, ଯେ ସେ ଭୂଲୋକରେ ଆଉ ନାହାନ୍ତି, ସାକ୍ଷାତ୍ ସ୍ୱର୍ଗରେ ନିବାସ କରୁଛନ୍ତି ।

ପ୍ରାତଃକାଳ ହେବାରୁ ତାଙ୍କୁ ଜଣାପଡ଼ିଲା, ସତେ ଯେପରି କିଏ ତାଙ୍କର ସ୍ୱତନ୍ତ୍ରତା ଅପହରଣ କରିନେଇଛି । ସ୍ୱ କୁଟୀରରେ ସେ ଯେପରି ଭଗବାନଙ୍କ ସହିତ ମୁକ୍ତ ସ୍ୱରରେ କଥାବାର୍ତ୍ତା ହେଉଥିଲେ ସେପରି ଖୋଲା କଥାବାର୍ତ୍ତା ଏଠାରେ ହୋଇପାରୁ ନାହାନ୍ତି । ଯଦି ଚ ଭଗବାନ ତାଙ୍କର ସର୍ବାଧିକ ଆଦର ସତ୍କାର କଲେ, ତଥାପି ତାଙ୍କ ମନରେ ସର୍ବଦା ସଙ୍କୋଚ ଓ ଭୟ । ସେ ଚିନ୍ତା କରୁଥାଆନ୍ତି, "ମୋପରି ଦରିଦ୍ର ଏପରି ସ୍ୱର୍ଗୀୟ ସୁଖ ଭୋଗ କରିବାର ଅଧିକାରୀ ନୁହେଁ । ସର୍ବାନ୍ତର୍ଯ୍ୟାମୀ ପ୍ରଭୁ ମୋର ସେବା କରିବା ଅର୍ଥ ମୋ ମୁଣ୍ଡରେ ପାପ ବୋଝ ଲଦିଦେବା । ମୁଁ ଯେ ପର୍ଯ୍ୟନ୍ତ ଏଠାରେ ରହିଥିବି, ଭଗବାନ ମୋର ସେବା ଯତ୍ନ କରିବା ଛାଡ଼ିବେ ନାହିଁ କିମ୍ବା ମନାକଲେ ବି ମାନିବେ ନାହିଁ । ତାଙ୍କଠାରୁ ସେବା ନେଲେ ମୋର ମୃତ୍ୟୁ ହିଁ ହୋଇଯିବ । ତେଣୁ ମୁଁ ଆଉ ଏଠାରେ ନ ରହି ଶୀଘ୍ର ଘରକୁ ଫେରିଯିବି ।" ଏହିପ୍ରକାର ଚିନ୍ତା କରି ସେ ଶ୍ୟାମସୁନ୍ଦରଙ୍କୁ କହିଲେ—"ଭଗବାନ ! ଏବେ ମୋତେ ଘରକୁ ଯିବାକୁ ଆଜ୍ଞା ଦିଅନ୍ତୁ ।"

ଭଗବାନ ଅତ୍ୟନ୍ତ ମମତାର ସହିତ କହିଲେ—"ଭାଇ ! ଯିବାପାଇଁ କାହିଁକି ଆପଣ ଏତେ ବ୍ୟସ୍ତ ହୋଇପଡ଼ୁଛନ୍ତି ? ଅନେକ ଦିନ ପରେ ତ ସାକ୍ଷାତ ହେଲା, ଅନ୍ତତଃ ଆଉ ଦୁଇ ଚାରିଦିନ ରହିଯାଆନ୍ତୁ ।"

ସୁଦାମା କହିଲେ—"ରହିବାରେ କିଛି କଥା ନଥିଲା, ଇଏ ଯେମିତି ଘର, ସିଏ ବି ସେମିତି ଘର; କିନ୍ତୁ ସେ ଘରେ ବ୍ରାହ୍ମଣୀ ଏକା । ସେ ବ୍ୟସ୍ତ ହେଉଥିବ । ତେଣୁ ମୋର ଘରକୁ ଯିବା ଆବଶ୍ୟକ । ତାହା ନ ହୋଇଥିଲେ ମୁଁ ଆପଣଙ୍କ କଥାକୁ ସ୍ୱୀକାର କରନ୍ତି ।"

ଏହା ଶୁଣି ଭଗବାନ ଚୁପ ହୋଇଗଲେ । ତାଙ୍କ ନେତ୍ରରୁ ପ୍ରେମାଶ୍ରୁ ବହିବାକୁ ଲାଗିଲା । ସୁଦାମା ନୂତନ ବସ୍ତ୍ର ଶାଲ ଇତ୍ୟାଦି ପାଲଟି ରଖି ନିଜର ଫଟା ପୁରୁଣା ବସ୍ତ୍ର ପିନ୍ଧିଲେ । ପୁରୁଣା ପଗଡ଼ି ମୁଣ୍ଡରେ ବାନ୍ଧିଲେ ଓ ବାଡ଼ିଟିକୁ ଧରି ବାହାରି ପଡ଼ିଲେ । ଭଗବାନ ମଧ୍ୟ ତାଙ୍କ ପଛେ ପଛେ ତାଙ୍କୁ ବଳେଇ ଦେବାକୁ ଗ୍ଲଲେ । ସହସ୍ର ସହସ୍ର ସେବକ ଓ ଅନ୍ୟ ନଗର ଲୋକମାନେ ତାଙ୍କ ସଙ୍ଗେ ସଙ୍ଗେ ଗ୍ଲଲେ । ଅନ୍ୟ ସମସ୍ତଙ୍କୁ ଲେଉଟାଇ ଦେଲେ । ନିଜେ ମିତ୍ରଙ୍କ ସଙ୍ଗେ ପାଦରେ ଗ୍ଲି ଗ୍ଲି ଗଲେ । ସୁଦାମା ବାରମ୍ବାର କହୁଥାଆନ୍ତି—"ଶ୍ୟାମସୁନ୍ଦର ! ଆପଣ ଏବେ ଫେରି ଯାଆନ୍ତୁ ।" କିନ୍ତୁ ଭଗବାନ ଫେରୁ ନଥାନ୍ତି । ନଗର ବାହାରେ ଏକ ଝଙ୍କାଳିଆ ଗଛ ଛାଇରେ ସୁଦାମା ବସି ପଡ଼ିଲେ ଓ କହିଲେ—"ବାସୁଦେବ ! ଦେଖ ଭାଇ ! ଯିଏ ଆଉଥରେ ଆସିବାକୁ ଆଶା କରିଥାଏ, ତାଙ୍କୁ ବେଶୀ ଦୂରପର୍ଯ୍ୟନ୍ତ ବଳାଇଦେବାକୁ ଆସିବା ଉଚିତ୍ ନୁହେଁ ।"

ଏହା ଶୁଣି ଶ୍ୟାମସୁନ୍ଦର ସୁଦାମାଙ୍କ ଚରଣରେ ପ୍ରଣାମ କଲେ । ସୁଦାମା ମଧ୍ୟ କାନ୍ଦି କାନ୍ଦି ତାଙ୍କୁ ଗାଢ଼ ଆଲିଙ୍ଗନ କଲେ । ଏହାପରେ ଉଭୟେ ମନ ଦୁଃଖରେ ଜଣେ ଜଣଙ୍କଠାରୁ ବିଦାୟ ନେଲେ । ଭଗବାନ ଦ୍ୱାରକା ପୁରୀକୁ ଫେରି ଆସିଲେ ଓ ସୁଦାମା ନିଜ ଘରକୁ ଫେରିଲେ ।

ବାଟରେ ନିଜର ଦରିଦ୍ରତା ଓ କୃପଣତା ପାଇଁ ସୁଦାମାଙ୍କ ମନରେ ବାରମ୍ବାର ଗ୍ଲାନି ଜାତ ହେଉଥାଏ । ସେ ଭାବୁଥାଆନ୍ତି, ଦେଖ ! ଭଗବାନ କିପରି ବ୍ରହ୍ମଣ୍ୟଦେବ, କିପରି ଉଦାର, ତାଙ୍କ ନିକଟକୁ ମୁଁ ଭିକ୍ଷାଧନ ଆଶାରେ ଯାଇଥିଲି । ତାଙ୍କୁ ଧନ ମାଗିବାକୁ ତ ମୋର ଆଦୌ ସାହସ ହେଲା ନାହିଁ, ସେ ମଧ୍ୟ ନିଜେ ନିଜ ଆଡ଼ୁ ମୋତେ କିଛି ଦେଲେ ନାହିଁ । ନ ଦିଅନ୍ତୁ ! ସେଥିରେ ମୋର ଦୁଃଖ କରିବାର କିଛି ନାହିଁ । ମୋ ପତ୍ନୀ ଅବଶ୍ୟ ଏଥିପାଇଁ ହତାଶ ହେବ । ସେ ମୋ ବାଟକୁ ଗ୍ଲହିଁ କେତେ ଆଶା କରି ବସିଥିବ ଓ ଭାବୁଥିବ ଯେ ମୁଁ ଅପର୍ଯ୍ୟାପ୍ତ ଧନ ନେଇ ଘରକୁ ଫେରୁଥିବି । ସେ ବଡ଼ ଆଶା କରିଥିବ, ମୁଁ ଧନ ନେଇ ପହଞ୍ଚିଲେ ଗୋଟିଏ ଘର ତିଆରି ହେବ, ବସ୍ତ୍ର ଆଦି କିଣା ହେବ ଓ ଆଭୂଷଣ ଗଢ଼ା ହେବ । ଗୋଟିଏ ଗାଈ ମଧ୍ୟ କିଣା ହେବ । ଏବେ ମୁଁ ଖାଲି ହାତରେ ତା ଆଗରେ ଯାଇ ଯେତେବେଳେ ପହଞ୍ଚିବି, ସେ ଶୋକରେ କାତର ହୋଇଉଠିବ ।

ପୁନଶ୍ଚ ଚିନ୍ତା କରିବାକୁ ଲାଗିଲେ ଯେ; ମୋର ତ ଜନ୍ମ ସଫଳ ହୋଇଗଲା । ମୁଁ ଭଗବାନଙ୍କୁ ଦର୍ଶନ କଲି, ଏହାଠାରୁ ବଳି ଆଉ ଲାଭ କ'ଣ ହୋଇପାରେ । ମୁଁ କେବଳ ଶୁଣିଥିଲି ଯେ, ଭଗବାନ, ବ୍ରହ୍ମଣ୍ୟଦେବ । କିନ୍ତୁ ଆଜି ତ ତାହା ପ୍ରତ୍ୟକ୍ଷରେ ଦେଖିଲି ।

ତା' ନ ହୋଇଥିଲେ ମୋ ପରି ଭିକାରି ବ୍ରାହ୍ମଣ କେଉଁଠି, ଲକ୍ଷ୍ମୀପତି କେଉଁଠି, ମୁଁ କ'ଣ କେବେ ତାଙ୍କୁ ସାକ୍ଷାତ କରିବା ସମ୍ଭବ ହୋଇଥାଆନ୍ତା ? ଯାହାଙ୍କ ବକ୍ଷସ୍ଥଳରେ ସାକ୍ଷାତ୍ ଭଗବତୀ କମଳା ବିଦ୍ୟମାନ ରହନ୍ତି, ମୋ ପରି ମଳିନ ବସନଧାରୀ ଭିକାରି ବ୍ରାହ୍ମଣଙ୍କୁ ବକ୍ଷସ୍ଥଳରେ ନିଜର ସହୋଦର ଭାଇ ଭଳି ସେ ଆଲିଙ୍ଗନ କଲେ । ଯେଉଁ ପଲଙ୍କ ଉପରେ ସେ ତାଙ୍କ ପ୍ରିୟାଙ୍କ ବ୍ୟତୀତ ଅନ୍ୟ କାହାକୁ ବସାନ୍ତି ନାହିଁ, ସେହି ପଲଙ୍କ ଉପରେ ନିଜ ପାଖରେ ମୋତେ କେତେ ଆଦରରେ ବସାଇଲେ । ମୋତେ ପଥଶ୍ରମୀ ଦେଖି ଲକ୍ଷ୍ମୀ ସ୍ୱରୂପା ତାଙ୍କର ପରମ ପ୍ରିୟା ଓ ପାଟରାଣୀ ଭଗବତୀ ରୁକ୍ମିଣୀ ନିଜର କୋମଳ କର କମଳରେ ଯେତେ ବ୍ୟଜନ କଲେ । ମୋ ଉପରେ ଚାମର ଢୁଳାଇଲେ । ଯାହାଙ୍କ ଚରଣାରବିନ୍ଦର ପାଦୋଦକରେ ତ୍ରିଭୁବନ ପବିତ୍ର ହୁଏ, ଯେଉଁ ପ୍ରଭୁଙ୍କର ପାଦନଖ କୋଣରୁ ଭଗବତୀ ତ୍ରିପଥଗା ଗଙ୍ଗା ବାହାରିଛନ୍ତି, ସେହି ବିଶ୍ୱମ୍ଭର ସ୍ୱୟଂ ଶ୍ରଦ୍ଧାର ସହିତ ମୋ ଭଳି ଅକିଞ୍ଚନର ପାଦ ଧୋଇଦେଲେ ଓ ସେହି ଜଳକୁ ପ୍ରେମପୂର୍ବକ ନିଜ ଶିରରେ ଚଢ଼ାଇଲେ । ନିଜର କୋମଳ କରରେ ମଳଯୁକ୍ତ ବିଣ୍ଡି ଓ ଫାଟ ହୋଇଥିବା ପାଦକୁ ମୋଡ଼ି ଘଷି ଦେଲେ । ସେ ନିଜ ଇଷ୍ଟଦେବଙ୍କ ଠାରୁ ବଳି ମୋର ଆଦର ସତ୍କାର କଲେ ।

ଏବେ ମୋର ଏକ ଶଙ୍କା ଉପୁଜୁଛି ଯେ, ଭଗବାନଙ୍କ ଚରଣାରବିନ୍ଦ ପୂଜନ କରି ତ ପ୍ରାଣୀ ନିଜର ସମସ୍ତ ମନୋକାମନା ପୂର୍ଣ୍ଣ କରି ପାରନ୍ତି । ଏପରି ଦୁର୍ଲଭରୁ ଦୁର୍ଲଭତର ବସ୍ତୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ପୁରରେ ଅଛି ନାହିଁ, ଯାହାକି ଭଗବାନଙ୍କୁ ସେବା କରିବାଦ୍ୱାରା ପ୍ରାପ୍ତ ନ ହୁଏ । ଅଣିମାଦି ଐଶ୍ୱର୍ଯ୍ୟ ଏପରି କି ମୋକ୍ଷ ମଧ୍ୟ ତାଙ୍କ ଚରଣ ସେବାରେ ମିଳିଯାଏ । ତଥାପି ସେ ମୋତେ କାହିଁକି କିଛି ଧନ ଦେଲେ ନାହିଁ ? ଯଦି ତ ଧନ ପାଇବା ପାଇଁ ମୋର ଆନ୍ତରିକ ଇଚ୍ଛା ନଥିଲା, ତଥାପି ମୋ ପତ୍ନୀଙ୍କର ତ ଇଚ୍ଛା ଥିଲା ? ସେ ତ ଘଟ ଘଟକୁ ଜାଣନ୍ତି, ମୋ ପତ୍ନୀ ତ ମୋତେ କେବଳ ଧନ ପାଇଁ ତାଙ୍କ ପାଖକୁ ପଠାଇଥିଲା । ସେହି କାରଣରୁ ତ ସେ ଯାହା ହେଲେ କିଛି ଅର୍ଥ ଦେଇ ଥାଆନ୍ତେ ? କିନ୍ତୁ ତା' ପାଇଁ ମଧ୍ୟ ପ୍ରଭୁ କିଛି ବି ଦେଲେ ନାହିଁ ? ହଁ, ଏଥିରେ କିଛି ରହସ୍ୟ ଥାଇପାରେ, ତାଙ୍କର କୃପାଳୁତା ହୁଏତ ଏ ଘଟଣାରେ ଗୋପନ ଥାଇପାରେ ।"

ଏହିପରି ଚିନ୍ତା କରି କରି ସେ ଘରକୁ ଫେରୁଥାଆନ୍ତି । ସେହି ସମୟରେ ଘୋର ଜଙ୍ଗଲ ମଧ୍ୟରେ ଜଣେ ବଡ଼ ଶେଠ ତାଙ୍କ ଆଡ଼କୁ ଆସୁଥିବାର ସେ ଦେଖି-ପାରିଲେ । ଆନର୍ତ୍ତ ଦେଶର ଜଙ୍ଗଲ ଡାକୁ ସେତେବେଳେ ଭାରି ଉପଦ୍ରବ କରୁଥିଲେ । ସେମାନେ ଆସି ସେହି ଶେଠକୁ ଘେରିଗଲେ ଓ ତାହାର ସମସ୍ତ ଧନ ଲୁଟିନେଇ ତାକୁ ମାରିଦେଲେ । ସୁଦାମା ଏ ସବୁ ଦେଖୁଥିଲେ । ତାଙ୍କ ଆଡ଼କୁ କେହିହେଲେ ଚାହିଁଲେ

ନାହିଁ । ସମସ୍ତେ କୁହା କେହି ହେଉଥିଲେ—"ଏଇଟା ଗୋଟେ ଭିକାରି । ଏହାକୁ କିଛି ଅନ୍ନ ଦେଇଦିଅ ।" ଏହା କହି ସେହି ଡାକୁମାନେ ସୁଦାମାଙ୍କୁ କିଛି ଅନ୍ନଦେଇ ଚାଲିଗଲେ ।

ସେତେବେଳେ ସୁଦାମା କହିଲେ—"ଓହୋ ! ଏହା ମୁଁ ଏବେ ବୁଝିପାରିଲି । ଯଦି କରୁଣାମୟ ଭଗବାନ ମୋତେ ଧନ ଦେଇ ଥାଆନ୍ତେ, ତାହା ହେଲେ ବାଟରେ ଏମାନେ ମୋଠାରୁ ତାହା ଲୁଟି ନେଇ ଯାଇ ଥାଆନ୍ତେ । ଭଗବାନ ତାହା ଆଗରୁ ଚିନ୍ତା କରି ମୋତେ କିଛି ନ ଦେଇ ଭଲ କରିଛନ୍ତି । ପାଖରେ ଧନ ଥିଲେ ମୁଁ ମୋ ଜୀବନ ପାଇ ନ ଥାନ୍ତି । ପୁନଶ୍ଚ ଯଦି କେହି ଲୁଟି ନେଇ ନ ଥାନ୍ତେ ଓ ମୁଁ ସମସ୍ତ ଧନ ନେଇ ଘରେ ନିର୍ବିଘ୍ନରେ ପହଞ୍ଚି ଥାଆନ୍ତି, ତଥାପି ମୁଁ ଏ ଜନ୍ମରେ ନିର୍ଧନ ହୋଇଥିବା କାରଣରୁ ଧନ ପାଇଥିଲେ ଉନ୍ମତ୍ତ ହୋଇଯିବି, ଏହା ଭାବି ଭଗବାନ ମୋତେ ଧନ ଦେଲେ ନାହିଁ । ଆହୁରି ମଧ୍ୟ ସେ ଭାବିଥିଲେ ଏ ପର୍ଯ୍ୟନ୍ତ ଯିଏ ମୋତେ ସ୍ମରଣ କରି ଆସିଛି, ମୁଁ ଯଦି ଧନ ରତ୍ନ ତାକୁ ଦେଇଦିଏ ତାହାହେଲେ ସେ ଧନ ପାଇଲେ ମୋତେ ଆଉ ସ୍ମରଣ କରିବ ନାହିଁ ।" ବାସ୍ତବରେ ଧନଲବ୍ଧ ହେଲେ ମନୁଷ୍ୟର ରଜୋଗୁଣ ବଢ଼ିଯାଏ । ବିଷୟ ସୁଖରେ ଅନୁରାଗ ବଢ଼େ । ଲୋକ ଭଗବାନଙ୍କୁ ଭୁଲିଯାଏ । ଧନରେ ଏହି ସବୁଦୋଷ ଥିବାର ଜାଣି ଦୟାସିନ୍ଧୁ ଶ୍ୟାମସୁନ୍ଦର ମୋତେ ଧନ ନ ଦେଇ ମୋର ବହୁତ ଉପକାର କରିଛନ୍ତି, ଏହା ହିଁ ତାଙ୍କର ମୋ ଉପରେ କୃପା । ଯାହା ପାଖରେ ଭଗବାନଙ୍କ ସ୍ମରଣ ରୂପକ ଧନ ଅଛି, ତାହାର ଅନ୍ୟ ତୁଚ୍ଛ ଧନର କି ଆବଶ୍ୟକ ? ଯାହା ପାଖରେ ଭଗବାନଙ୍କ ସ୍ମରଣ ରୂପକ ଧନ ନାହିଁ, ତାକୁ ଯେତେ ଧନ ମିଳିଲେ ମଧ୍ୟ ତାହା କେଉଁ କାର୍ଯ୍ୟରେ ଆସିବ ?"

ସୂତ କହିଲେ —"ମୁନିଗଣ ! ଏଣେ ସୁଦାମା ତ ବାଟରେ ଏହି ସବୁ କଥା ଚିନ୍ତା କରି ଘରକୁ ଫେରୁଥିଲେ, ତେଣେ ଯୋଗମାୟା ଓ ବିଶ୍ୱକର୍ମାଙ୍କୁ ଭଗବାନ ଆଜ୍ଞା ଦେଇ ସୁଦାମାଙ୍କ ଘରକୁ ଇନ୍ଦ୍ରଭବନଠାରୁ ଅଧିକ ସୁନ୍ଦର କରି ନିର୍ମାଣ କରାଇ ଦେଲେ । ସେଠାରେ ସମସ୍ତ ସମୃଦ୍ଧି ଭରିଦେଲେ । ଏବେ ସୁଦାମା ଯେପରି ନିଜର ସମୃଦ୍ଧିଶାଳୀ ଘର ଓ ଅତୁଳ ବୈଭବକୁ ଦେଖି ବିସ୍ମିତ ହେବେ, ତାହା ମୁଁ ବର୍ଣ୍ଣନା କରୁଛି ।"

## ଛପ୍‌ପୟ

ମଗ ମହିଁ ସୋଚତ ଜାତ ଶ୍ୟାମ ଆଦର ଅତି କୀନ୍ହୋ ।
କନ୍ତୁ ନ ଏକ ଛଦାମ ବ୍ରାହ୍ମନୀ କୁଁ ଧନ ଦୀନ୍ହୋ ।।

ନହିଁ ବସ୍ତ୍ରୀ ଭଲ କଥ୍ରୀ ଅରଥ ତେଁ ଅନରଥ ହୋବେ ।
ଦ୍ରବ୍ୟ ପାଇକେଂ ପୁରୁଷ ମନୁଜତା ଉଜୁତା ଖୋବେ ॥
ସୋଚତ-ସୋଚତ ନଗର ଢିଗ, ପହୁଁଚ ଲଖେ ବିସ୍ମୟ୍ଯ କରନ ।
ନରଖି ଅସନ, ପଟ, ଗଜ, ତୁରଙ୍ଗ, ବହୁ ସମ୍ପତ୍ତି ମଣିମୟ୍ଯ ଭବନ ॥

—o—

## ସୁଦାମା ଚରିତର ସମାପ୍ତି

ତସ୍ୟୈବ ମେ ସୌହୃଦ ସଖ୍ୟମୈତ୍ରୀ
ଦାସ୍ୟଂ ପୁନର୍ଜନ୍ମନି ଜନ୍ମନି ସ୍ୟାତ୍ ।
ମହାନୁଭାବେନ ଗୁଣାଲୟେନ
ବିଷଜ୍ଜତସ୍ତତ୍ ପୁରୁଷ ପ୍ରସଙ୍ଗଃ ॥ *

(ଶ୍ରୀ ଭା : ୧୦ମ ସ୍କ : ୮୧ ଅ : ୩୬ ଶ୍ଳୋକ)

### ଛପ୍ପୟ୍ଯ

ଦ୍ରବ୍ୟ ଅପସବ ବନୀ ବସ୍ତ୍ର ଭୂଷନ ତେଁ ସଜ୍ଜିତ ।
ବହୁ ଦାସିନ ତେଂ ଘିରୀ କହାରୀ ନାରୀ ହରଷିତ ॥
ସ୍ୱରଗସରସ ସମ୍ପତ୍ତି ସକଲ ଶ୍ରୀହରିକୀ ଜାନୀ ।
ସମୁଝି ଗୟେ ସବ ରହସ କୃପା ଯଦୁବରକୀ ମାନୀ ॥
ସୁମିରନ କରି କରି କୃପାକୋ, ପୁଲକିତ ତନୁ ବିନତୀ କରେଂ ।
ଜନମ ଜନମ ହରି ସଖା ବନ, ଏସେ ହୀ ମମ ଦୁଖ ହରେଂ ॥

---

* ବୋଲଇ ହୋଇ କୃତକୃତ୍ୟ । ଭଜପାଳେ ଦେଉ ବେଳ ହସ୍ତ ॥
କୃଷ୍ଣ ଚରଣେ ମୋର ଚିତ୍ତ । ବସୁଲେ ବହୁ ଅବିରତ ॥
ମିତ୍ର ସୁହୃଦ ଦାସ ପଣେ । ଘଟିବ ଅଭୟ ଚରଣେ ॥
ଅନେକ ଯୋନି ମଧ୍ୟେ ଜାତ । ହୋଇ ଘଟିବ ଅବିରତ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୮୭ ଅ.)

ଯେତେ ଅଧିକ ଲୁଚାଇ ସାହାଯ୍ୟ କରାଯାଏ, ତାହାର ମହତ୍ତ୍ୱ ସେତେ ଅଧିକ ହୁଏ । ଅତ୍ୟନ୍ତ ପ୍ରେମରେ ଟିକିଏ ହେଲେ ଦେଖାଇ ହେବା ଭାବ ପ୍ରକାଶ ପାଏ ନାହିଁ । ଯେଉଁଥିରେ ଯେତେ ଅଧିକ ଦେଖାଇ ହେବା ସହାନୁଭୂତି ରହେ, ସେଥିରେ ସେତେ କମ୍ ପ୍ରେମ ବା ଆନ୍ତରିକତା ପ୍ରମାଣିତ ହୁଏ । ଧାର୍ମିକ ପ୍ରେମରେ ଗୋପନ କରିବାର ଭାବନା ରହେ । ଆମ ପ୍ରେମକୁ ଆମର ପ୍ରେମାସ୍ପଦ ଜାଣି ପାରନ୍ତି ନାହିଁ । ଆମ ସେବାକୁ ବୁଝି ପାରନ୍ତି ନାହିଁ । ଆମ ସହାନୁଭୂତି ତାଙ୍କ ଦୃଷ୍ଟିରେ ହଠାତ୍ ଆସିପାରେ ନାହିଁ । ଶିଶୁ ପିଲା ଘୁମରେ ଶୋଇଯାଏ, ମାତା ତାକୁ ଉଠାଇ କୋଳରେ ବସାଇ ଦୁଧ ପିଆଏ । ପିଲା ପ୍ରାତଃ କାଳରେ ଏହା ଭାବ ଜାଣେ ଯେ, ମୁଁ ଘୁମରେ ଦୁଧ ପିଇ ନାହିଁ । ମାତା ହସିକରି କହେ—"ଏବେ ନେ ପିଇ ଦେ ।" ସେ ମା'ର ଏହି ଭାବ ଜାଣିପାରେ ନାହିଁ ଯେ ମା କହୁଛି—"ମୁଁ ଘୁମରେ ଦୁଧ ପିଆଇଥିଲି ! ଅନେକ ପ୍ରେମୀ ଲୋକ ଏପରି ଭାଇତାରେ ନିଜର ସାହାଯ୍ୟ ବସ୍ତୁକୁ ପଠାଇ ଥାଆନ୍ତି ଯେ, ତାହା କେଉଁଠୁ ଆସିଲା ପ୍ରେମାସ୍ପଦ ଜାଣି ପାରନ୍ତି ନାହିଁ । ଯେପରି ଦେବତା ପରୋକ୍ଷ ପ୍ରିୟ ହୁଅନ୍ତି, ସେହିପରି ଆଦାନ ପ୍ରଦାନ ଯେତେ ଲୁଚାଇ ପରୋକ୍ଷରେ କରାଯିବ, ତାହାର ମହତ୍ତ୍ୱ ସେତେ ବଢ଼ିବ । ଯେଉଁଠି ବିଜ୍ଞାପନ ରହୁଛି, ଦେଖାଇହେବା ଭାବ ରହୁଛି, ଢେଙ୍କି ପିଟାଯାଉଛି, ପ୍ରକାଶିତ କରାଯାଉଛି, ସେଠାରେ ସ୍ୱାର୍ଥ ରହୁଛି, କୀର୍ତ୍ତିର ଇଚ୍ଛା ରହୁଛି, ଖ୍ୟାତିର ଭାବନା ରହୁଛି ଓ ଦମ୍ଭ ରହୁଛି । ପ୍ରେମରେ କିନ୍ତୁ ଏ ସବୁ ବସ୍ତୁ ଦୂର ।

ସୂତ କହିଲେ—"ମୁନିଗଣ ! ସୁଦାମା ବାଟରେ ଅନେକ କଥା ଚିନ୍ତା କରି କରି ଓ ଭଗବାନଙ୍କର ଅପୂର୍ବ ପ୍ରେମ ସ୍ମରଣ କରି କରି ଚାଲୁଥାଆନ୍ତି । ଚାଲି ଚାଲି ସେ ଆସି ନିଜ ଘର ନିକଟରେ ପହଞ୍ଚିଗଲେ । ସେ କିଛି ଦୂରରୁ ଦେଖିଲେ ଯେ ତାଙ୍କର ଖଣ୍ଡିଆ ଚାଳ ଓ କୁଡ଼ିଆ ଘର ତ କେଉଁଠି ଦିଶୁନାହିଁ ? ସେହି ସ୍ଥାନରେ କ'ଣ ଏକ ବିଶାଳ ଭବନ ଠିଆ ହୋଇଛି ? ସେହି ସାତମହଲା ଭବନଟି ତାହାର ସୂର୍ଯ୍ୟସମ ଦୀପ୍ତିମୟ, ପୂର୍ଣ୍ଣଚନ୍ଦ୍ର ଭଳି ଶୋଭା ଓ ପ୍ରଜ୍ୱଳିତ ଅଗ୍ନି ଭଳି ଦେଦୀପ୍ୟମାନ ହେଉଅଛି ? ସେଥିରେ ଗୋଟି ଗୋଟି ହୋଇ ଭବ୍ୟ ଭବନ ନିର୍ମିତ ହୋଇଛି । ତାହା ନିକଟରେ ଫଳ ଓ ପୁଷ୍ପର ଉଦ୍ୟାନରେ ଫଳପୁଷ୍ପ ଭରି ରହିଛି ? ଉଦ୍ୟାନ ମଧ୍ୟରେ ମାର୍ବଲ ପ୍ରସ୍ତରରେ ଆରାମ ଚଉକି ନିର୍ମିତ ହୋଇଛି । ସେହି ଉପବନ ମଧ୍ୟରେ ବିଶାଳ ଭବନଟି ଅତ୍ୟନ୍ତ ଶୋଭାଯୁକ୍ତ । ତା ନିକଟରେ ସୁନ୍ଦର ସ୍ୱଚ୍ଛ ଶୀତଳ ଜଳ ପରିପୂର୍ଣ୍ଣ କେତେକ ପୁଷ୍କରିଣୀ ଶୋଭା ପାଉଛି ? ସେଥିରେ ହଂସ, ସାରସ, ଚକ୍ରବାକ ଓ ଅନ୍ୟାନ୍ୟ ଜଳପକ୍ଷୀ ସନ୍ତରଣ କରୁଛନ୍ତି ଏବଂ କୁମୁଦ, ଅମ୍ଭୋଜ, କହ୍ଲାର ଓ ଉତ୍ପଳ ଆଦି ନାନା ପ୍ରକାର କମଳ ଫୁଟି ଅଛନ୍ତି ? ଚତୁର୍ଦ୍ଦିଗ ଦିବ୍ୟ ସୁବାସରେ ଭରି ଯାଉଛି । ସୁନ୍ଦର ସ୍ୱଚ୍ଛ ବସ୍ତ୍ର ପିନ୍ଧି ସହସ୍ର ଦାସ ଦାସୀ କର୍ଣ୍ଣରେ ମଣିମୟ କନକ କୁଣ୍ଡଳ ଧାରଣ କରି ଇତସ୍ତତଃ ଚଳବୁଲ କରୁଛନ୍ତି ?

ଯେପରି ସ୍ୱର୍ଗରେ ଅପ୍‌ସରାଗଣ ବିହାର କରନ୍ତି, ସେହିପରି ସେଠାରେ ଅତି ସୁକୁମାରୀ, ସୁନ୍ଦରୀ, ମୃଗନୟନା ଦାସୀମାନେ ନିଜ ନିଜର ନୁପୁର ଝଙ୍କାରରେ ସେହି ବିଶାଳ ଭବନକୁ ମୁଖରିତ କରି ଚଳ ପ୍ରଚଳ ହେଉଛନ୍ତି ? ଏଠାରେ ଏପରି ଘର କରି କିଏ ତେବେ ରହିଲା ? ସୁଦାମା ଭାବୁଛନ୍ତି—"ମୁଁ ସ୍ୱପ୍ନ ଦେଖୁନାହିଁ ତ ?

ଏତେ ବୈଭବଶାଳୀ ସେହି ବିଶାଳ ମଣିମୟ ଭବନକୁ ଦେଖି ଓ ସେ ସ୍ଥାନର ଅଭୂତପୂର୍ବ ଐଶ୍ୱର୍ଯ୍ୟ ଦେଖି ସୁଦାମା ଆବାକାବା ହୋଇଗଲେ । ସେ ଅତ୍ୟନ୍ତ ବିସ୍ମିତ ହୋଇ ଚତୁର୍ଦ୍ଦିଗକୁ ଚାହିଁବାକୁ ଲାଗିଲେ । ସେ ଆଖି ମଳି ମଳି ବାରମ୍ବାର ଚାହିଁ ଚିନ୍ତା କଲେ—"ନା, ଏହା ସ୍ୱପ୍ନ ନୁହେଁ ମୁଁ ତ ଜାଗ୍ରତ ଅଛି ।" ତାହାହେଲେ ମୁଁ ବାଟଭୁଲି ଅନ୍ୟ କୌଣସି ରାଜାଙ୍କ ରାଜ୍ୟ ନିକଟରେ ଆସି ପହଞ୍ଚି ଯାଇଛି । କିନ୍ତୁ ଏ ଭୂଲୋକରେ ତ କୌଣସି ରାଜାଙ୍କର ଏପରି ଐଶ୍ୱର୍ଯ୍ୟମୟ ଭବନ ଥିବାର ମୁଁ ଶୁଣି ନାହିଁ । ପୁନଶ୍ଚ ସେ ଚିନ୍ତା କଲେ—"ମୁଁ ପ୍ରକୃତରେ ବାଟ ଭୁଲି ନାହିଁ । ମୋ ଘରର ପୂର୍ବ ଦିଗରେ ଥିବା ଶିବ ମନ୍ଦିର ସେହିପରି ରହିଛି, ବଟବୃକ୍ଷ ପୂର୍ବପରି ରହିଛି । ପଶ୍ଚିମ ଦିଗରେ ସେହି କ୍ଷେତ ସବୁ ପୂର୍ବଭଳି ରହିଛି, ସିଏ ରାମା ଭଡ଼ଭୁଜା । ଇଏ ମୋ ପଡ଼ୋଶୀ ସୋମଦତ୍ତ । ଏମାନେ ତ ତା ପିଲାଛୁଆ । ଏହାତ ମୋର ଜନ୍ମସ୍ଥାନ; କିନ୍ତୁ ବୋଧହୁଏ ମୁଁ ଚାଲିଯିବା ପରେ ମୋର ପତ୍ନୀକୁ କେହି ଏଠାରୁ ତଡ଼ିଦେଇ, ମୋ କୁଟୀରକୁ ଭାଙ୍ଗି ମହଲ ଗଢ଼ିଛି । ଏହା ହେଉଛି ମୋ ଲୋଭର ପରିଣାମ । ଯିଏ ଅଧାକୁ ଛାଡ଼ି ପୂରାକୁ ଲୋଭ କରେ, ସେ ଅଧାକୁ ବି ହରାଇ ବସେ । ମୁଁ ଭାବିପାରୁ ନାହିଁ ଯେ ମୋ ସ୍ତ୍ରୀ ପ୍ରତାଡ଼ିତ ହୋଇ ନ ଥିବ ବା କାହିଁକି ? ଏବେ ବିପଦ ତାକୁ କହିବାକୁ ମୋତେ ସୁଯୋଗ ମିଳିଗଲା । ମୁଁ ଏବେ ତାକୁ ପାଇବି କେଉଁଠି ? କିଏ ଏବେ ମୋତେ ତା ଖବର ଦେବ ? ଏଠାରେ ତ ଏତେ ପହରାବାଲା ଯେ, ସେମାନେ ତ ମୋତେ ଭିତରକୁ ଛାଡ଼ିବେ ନାହିଁ । ନିର୍ଧନ ବ୍ରାହ୍ମଣ ପ୍ରତି କାହାରି ଦୟା ନ ଥାଏ । ମୋର ପୁଅ ଖୁବ୍ ସାନ ଥିଲା । କେତେ ଦିନ ହେଲା ସେ କିଛି ଖାଇ ନ ଥିବ । ତା ଅବସ୍ଥା କି ଦୟନୀୟ ହୋଇ ନ ଥିବ । ମୋ ସ୍ତ୍ରୀ ତାକୁ କେଉଁଠାରେ ନେଇ ରଖିଥିବ । ହାୟ ! ଯେତେବେଳେ ବିପଦ ଆସେ ସେତେବେଳେ ତା'ର ସମସ୍ତ ସାଥୀଙ୍କୁ ସଙ୍ଗରେ ନେଇ ଆସେ । ଏପର୍ଯ୍ୟନ୍ତ ମୁଁ ଦାରିଦ୍ର୍ୟ ଦୁଃଖ ଭୋଗ କରୁଥିଲି । ଏବେ ମୋ ହାତରୁ ଘରଟି ବି ଚାଲିଗଲା । ଏବେ ମୁଁ କରିବି କ'ଣ ? କେଉଁଠି ଯାଇ ମୁଣ୍ଡ ଗୁଞ୍ଜିବି ? କାହାକୁ ଅବା ପଚାରିବି ।"

ଦୂତ କହିଲେ—"ମୁନିଗଣ ! ସୁଦାମା ସେଠାରେ ଠିଆ ହୋଇ ଏହିପରି ଚିନ୍ତା କରୁଥାଆନ୍ତି । ସେ ଆସି ପହଞ୍ଚି ଗଲେଣି ଜାଣି କେହି ତାଙ୍କ ଘରେ ଜଣାଇ ଦେବାମାତ୍ରେ ସେହି ଦେବତାଙ୍କଭଳି ପରମ ତେଜସ୍ୱୀ, ଅତ୍ୟନ୍ତ ରୂପବାନ୍ ସହସ୍ର ନରନାରୀ ଉତ୍ସାହର ସହିତ ଗୀତ ବଜାଇ କରି ତାଙ୍କୁ ପାଛୋଟି ନେବାପାଇଁ ଆଗେଇ

ଆସିଲେ ଓ ପ୍ରଣାମ କରି କହିଲେ—"ମହାରାଜ ! ବିଜେ କରନ୍ତୁ, ମହାରାଜ ! ବିଜେ କରନ୍ତୁ ।"

ବ୍ରାହ୍ମଣ ଚିନ୍ତା କଲେ—ଏମାନେ ସମସ୍ତେ କାହିଁକି ମୋର ଏତେ ଆଦର ସତ୍କାର କରୁଅଛନ୍ତି ? ସେ ଜଣେ ଲୋକଙ୍କୁ ପଚାରିଲେ—"ଭାଇ ! ମୋତେ କେଉଁଠାକୁ ଯିବାକୁ କହୁଛନ୍ତି ?" ଲୋକଟି ନମ୍ର ଭାବ ସହିତ କହିଲା—"ମହାରାଜ ! ଅନ୍ତଃପୁରରେ ଥିବା ଆମର ପ୍ରଭୁ ପତ୍ନୀଙ୍କ ସମୀପକୁ ବିଜେ କରନ୍ତୁ ।"

ସୁଦାମା ଚିନ୍ତାକଲେ—"ପ୍ରଭୁପତ୍ନୀ ବୋଧହୁଏ କୌଣସି ଧର୍ମପରାୟଣ ରାଣୀ ହୋଇଥିବେ । ମୋତେ ବ୍ରାହ୍ମଣ ମନେକରି କୌଣସି ସେବାଧର୍ମ କରିବାକୁ ଇଚ୍ଛା କରୁଥିବେ । ତାଙ୍କର ଏଠାରେ ଆଜ କୌଣସି ପର୍ବ କିମ୍ବା ଉତ୍ସବ ଅନୁଷ୍ଠିତ ହେବାର ଥିବ । ସେ କହିଲେ—"ଆଚ୍ଛା, ଠିକ୍ ଅଛି, ଚାଲନ୍ତୁ, ଆମ୍ଭେ ସେଠାରେ ପ୍ରସାଦ ସେବନ କରିବା । ଆମ୍ଭଙ୍କୁ ଅବଶ୍ୟ କିଛି ଦାନ ଦକ୍ଷିଣା ମିଳିଯିବ । ତାହାହେଲେ ଆମ୍ଭେ ଆମର ପତ୍ନୀଙ୍କୁ କେଉଁଠି ଖୋଜି ତାକୁ ସେସବୁ ଦେଇଦେବା । ଏହାଦ୍ୱାରା ସେ ଆଉ କହି ପାରିବେ ନାହିଁ ଯେ, ମୁଁ ରିକ୍ତ ହସ୍ତରେ ଫେରିଆସିଛି ।" ଏହି କଥା ଚିନ୍ତାକରି ସେ ସମସ୍ତଙ୍କ ସହିତ ଅନ୍ତଃପୁର ଆଡ଼କୁ ଚାଲିଲେ ।

ଯେତେବେଳେ ସୁଦାମାଙ୍କର ପତ୍ନୀ ନିଜର ପତିଙ୍କର ଶୁଭାଗମନ ସମ୍ବାଦ ଶୁଣିଲେ, ସେ କଲ୍ୟାଣ ଆରତି କରିବା ପାଇଁ ସମସ୍ତ ସାମଗ୍ରୀ ପ୍ରସ୍ତୁତକରି ଦାସ-ଦାସୀମାନଙ୍କ ଗହଣରେ ଅନ୍ତଃପୁରର ଦ୍ୱାରଦେଶକୁ ଆସିଲେ । ସୁଦାମା ଏତେ ସୁନ୍ଦରୀ ସ୍ତ୍ରୀକୁ ଦେଖି ଭାବିଲେ ଇଏ କୌଣସି ଏକ ରାଣୀ ଅଟନ୍ତି । ତେଣୁ ସେ ନିଜର ଦୃଷ୍ଟି ଫେରାଇ ଆଣି ତଳକୁ ଚାହିଁଲେ । ସୁଦାମାପତ୍ନୀ ପତିଙ୍କ ଉପସ୍ଥିତ ଜନିତ ପ୍ରସନ୍ନତାରେ ଅତି ଉତ୍ସାହର ସହିତ ଭବନ ମଧ୍ୟରୁ ଏପରି ବାହାରି ଆସୁଥାଆନ୍ତି, ଯେତେ ଯେପରି କମଳ ବନରୁ ସାକ୍ଷାତ୍ ଲକ୍ଷ୍ମୀ ଦେବୀ ନାରାୟଣଙ୍କ ଦର୍ଶନ ପାଇଁ ବାହାରି ଆସୁଛନ୍ତି । ପତିଙ୍କୁ ଦର୍ଶନ କରି ପତିବ୍ରତାଙ୍କ ନେତ୍ରରୁ ଝର ଝର ହୋଇ ପ୍ରେମାଶ୍ରୁ ଝରିବାକୁ ଲାଗିଲା । ଆନନ୍ଦରେ ତାଙ୍କ ନେତ୍ର ବନ୍ଦ ହୋଇଗଲା । ସେ ଅଧୋମୁଖ ହୋଇ ପତିଙ୍କ ପାଦପଦ୍ମରେ ପ୍ରଣାମ କଲେ ଓ ମନ ମଧ୍ୟରେ ତାଙ୍କୁ ଗାଢ଼ ଆଲିଙ୍ଗନ କଲେ । ତାହାପରେ ଅବରୁଦ୍ଧ କଣ୍ଠରେ ତାଙ୍କୁ "ପ୍ରାଣନାଥ" ବୋଲି ସମ୍ବୋଧନ କଲେ ।"

ସୁଦାମା ହଠାତ୍ ଚମକି ପଡ଼ିଲେ ଯେ, ଏ କି ପ୍ରକାର ରାଣୀ ? ଇଏ ମୋଠାରୁ କ'ଣ ଆଶା କରୁଛନ୍ତି ? ଇଏ ତ କ'ଣ ମୋତେ ପତିଙ୍କ ଭଳି ସମ୍ବୋଧନ କଲେଣି ? ଏହାଙ୍କ ମନରେ ତ କୌଣସି ପାପ ଉଦ୍ଦେଶ୍ୟ ନାହିଁ ? ଏହିସବୁ କଥା ସୁଦାମା ଚିନ୍ତା କରୁଥାଆନ୍ତି । ତାଙ୍କର ମନୋଗତ ଭାବକୁ ବୁଝିପାରି ବ୍ରାହ୍ମଣୀ କହିଲେ—"ଦେବ !

ଆପଣ ଏତେ ବିସ୍ମିତ କ'ଣ ହେଉଛନ୍ତି ? ଏ ଘର ସବୁ ଆପଣଙ୍କର । ମୁଁ ସବୁ ଆପଣଙ୍କର ଚରଣ ଦାସୀ ।"

ସଙ୍ଗେ ସଙ୍ଗେ ସୁଦାମା ତାଙ୍କ କଣ୍ଠରୁ ତାଙ୍କୁ ନିଜର ସ୍ତ୍ରୀ ବୋଲି ଜାଣିପାରିଲେ । ସେ ଆଖି ଉଠାଇ ଚାହିଁଲେ ଓ ଯାହା ଦେଖିଲେ, ସେଥିରେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ ! ତାଙ୍କ ସ୍ତ୍ରୀଙ୍କ କଣ୍ଠରେ ସୁବର୍ଣ୍ଣର ହାର, ମଣିମୁକ୍ତାର ଆଭୂଷଣରେ ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗ ସୁସଜ୍ଜିତ, ସହସ୍ର ଦାସୀ ତାଙ୍କ ସେବାରେ ନିଯୁକ୍ତ । ସେ ଚିନ୍ତା କରିବାକୁ ଲାଗିଲେ—"ତାଙ୍କର ଏତେ ପରିବର୍ତ୍ତନ କିପରି ହେଲା ? ଇଏ ତ ଦାରିଦ୍ର୍ୟଗ୍ରସ୍ତଙ୍କ ଭଳି ଶ୍ରୀହୀନ ଦେଖା ଯାଉଥିଲେ; କିନ୍ତୁ ଏବେ ତ ଇଏ ସାକ୍ଷାତ୍ ମୂର୍ତ୍ତିମନ୍ତ ଲକ୍ଷ୍ମୀଙ୍କ ପରି ଦେଖାଯାଉଛନ୍ତି ? ସେ ଏତେବେଳେ ବୁଝି ପାରିଲେ ଯେ ଏ ସବୁ ଭଗବାନଙ୍କ ଲୀଳା ପ୍ରସୂତ ।"

ସେତିକିବେଳେ ତାଙ୍କ ପତ୍ନୀ ଆଗ୍ରହ ପୂର୍ବକ କହିଲେ "ସ୍ୱାମୀ ! ଅନ୍ତଃପୁରକୁ ଆସନ୍ତୁ ! ଆପଣଙ୍କ ଘରର ଶୋଭା ଦେଖନ୍ତୁ ! ପ୍ରଭୁପ୍ରଦତ୍ତ ପ୍ରସାଦକୁ ସ୍ୱୀକାର କରନ୍ତୁ ।"

ଏହା ଶୁଣି ସୁଦାମା ଅତ୍ୟନ୍ତ ପ୍ରସନ୍ନ ହୋଇ ପତ୍ନୀଙ୍କ ସହିତ ନିଜର ସମୃଦ୍ଧିଶାଳୀ ଭବନ ଭିତରକୁ ଗଲେ । ଦେଖିଲେ ସେହି ଭବନ ଇନ୍ଦ୍ରଭବନ ସଦୃଶ ସୁବିସ୍ତୃତ, ସୁନ୍ଦର ଓ ଶୋଭାମୟ । ସେଥିରେ ସହସ୍ର ମଣିମୟ ସ୍ତମ୍ଭ ରହିଛି । ପ୍ରତ୍ୟେକ ଭବନ ଦର୍ପଣ ପରି ସ୍ୱଚ୍ଛ, ବିଭିନ୍ନ ରଙ୍ଗଯୁକ୍ତ ଓ ନିର୍ମଳ । ସେଥିରେ ସୁଖଦ, ସୁନ୍ଦର ଭାବରେ ହାତୀଦାନ୍ତ ପଲଙ୍କରେ ସୁବର୍ଣ୍ଣ ଖଚିତ ହୋଇ ସଜା ହୋଇଥିବା ଶଯ୍ୟା, ଯାହାକି ଦୁଗ୍ଧଫେନ ସମାନ କୋମଳ ଓ ଆରାମଦାୟକ । ସ୍ଥାନେ ସ୍ଥାନେ ସୁବର୍ଣ୍ଣ ଖଚିତ ପଙ୍ଖା, ଘର ଚଟାଣରେ ବିଭିନ୍ନ ରଙ୍ଗର ଗାଲିଚା, ଗୁଚ୍ଛ ତଳକୁ ଝୁଲୁଥିବା ଚାନ୍ଦନୀ, ଯାହାକି ସ୍ୱର୍ଣ୍ଣ ମାଳା ମୋତିରେ ସଜା ହୋଇ ଝିଲିମିଲି କରୁଥିଲା । ସ୍ଥାନେ ସ୍ଥାନେ ମଣିମୟ ସିଂହାସନ, ବିଭିନ୍ନ କାନ୍ଥ ଓ ଚଟାଣରେ ଇନ୍ଦ୍ରନୀଳମଣି, ଯାହାର ପ୍ରକାଶରେ କି ଚତୁର୍ଦ୍ଦିଗ ଝଲସି ଉଠୁଥିଲା । ଭବନଟି ଯେପରି ସୁନ୍ଦର, ସ୍ୱଚ୍ଛ ଓ ଝଲମଲ ହୋଇ ଝଟକୁ ଥିଲା, ସେହିପରି ସୁନ୍ଦରୀ ରମଣୀଗଣ ସେଠାରେ ରହି ସର୍ବଦା ସେବାରତ ଥିଲେ ।

ସୂତ କହିଲେ—"ମୁନିଗଣ ! ସେହି ସବ ଦ୍ରବ୍ୟ ସମ୍ପତ୍ତି ଯୁକ୍ତ ଭବନକୁ ଦେଖି ତଥା ବିନା ପ୍ରବଳ ପୁରୁଷାର୍ଥରେ ମିଳିଯାଇଥିବା ନିଜର ଅତୁଳନୀୟ ସମ୍ପତ୍ତିକୁ ଦେଖି ସୁଦାମା ମନେ ମନେ ଭାବିଲେ—"ଦେଖ, ମୁଁ ତ ଜନ୍ମରୁ ଦରିଦ୍ର ଥିଲି, ଭାଗ୍ୟହୀନ ଥିଲି । ମୋତେ ଏତେ ସମ୍ପତ୍ତି ମିଳିବା ଅତି ଦୁର୍ଲଭ । ଏ ସମସ୍ତ ଯଦୁନନ୍ଦନ ଶ୍ୟାମସୁନ୍ଦରଙ୍କର କୃପା । ସେ ମୋ ପ୍ରତି ଦୟା କରି ଏହି ଦୁର୍ଲଭ ବସ୍ତୁ ଦାନ କରିଅଛନ୍ତି ।"

ଏହା ଶୁଣି ଶୌନକ ପଚାରିଲେ—"ସୂତ ମହାଶୟ ! ଆମେ ଗୋଟିଏ କଥା ବୁଝି ପାରୁ ନାହୁଁ ଯେ, ଭଗବାନ୍ ଦ୍ୱାରକାରେ ତ ସୁଦାମାଙ୍କୁ କିଛି ଦେଇ ନଥିଲେ ।

ପୁନଶ୍ଚ ଏଠାରେ ତାଙ୍କ ଅଜାଣତରେ ଏତେ ସମ୍ପତ୍ତି ଦେଲେ । ଯେବେ ଦେବାର ଥିଲା, ତାହାହେଲେ ସେଠାରେ କିଛି ଦେଇଥିଲେ ସୁଦାମା ବାଟରେ ଆଉ ଏତେ ଚିନ୍ତିତ ହୋଇ ନଥାନ୍ତେ ?"

ସୂତ କହିଲେ—"ମହାରାଜ ! ଦ୍ୱାରକାରେ ଧନ ନ ଦେବାର ଅନେକ କାରଣ ଅଛି । ପ୍ରଥମ କାରଣ ହେଲା, କୌଣସି ଆତ୍ମସମ୍ମାନବିଶିଷ୍ଟ ମନସ୍ୱୀ ପୁରୁଷଙ୍କୁ ତାଙ୍କର ମିତ୍ର ସଖା ସମ୍ବନ୍ଧିତ ସୁଦାମାଙ୍କୁ ପ୍ରତ୍ୟକ୍ଷ ସହାୟତା କରିଥିଲେ ସୁଦାମାଙ୍କୁ ଲଜ୍ଜା ଲାଗିଥାଆନ୍ତା । ସେ ନିଜକୁ ଏକପ୍ରକାର ଶ୍ରେଷ୍ଠ ବୋଲି ମନେ କରିଥାଆନ୍ତେ । ତାଙ୍କ ଆତ୍ମ ସମ୍ମାନରେ ବାଧା ପଡ଼ିଥାଆନ୍ତା । ଏଥିପାଇଁ ସଜ୍ଜନ ପୁରୁଷ ପ୍ରତ୍ୟକ୍ଷ ସହାୟତା ନ କରି ପ୍ରକାରାନ୍ତରରେ ସାହାଯ୍ୟ କରନ୍ତି । ବିବାହ ସମୟରେ ପିଲାଙ୍କୁ କିଛି ଦିଆଯାଇଥାଏ । ପ୍ରଥ ଝିଅଙ୍କ ବିବାହ କାଳରେ ତାଙ୍କୁ କୌଣସି ଆଭୂଷଣ ଆଦି ଦିଆଯାଏ । ବୋହୂକୁ ବୋହୂ ଦେଖା ଦିଆଯାଏ । ସାରକଥା ହେଲା, କୌଣସି ନା କୌଣସି ପ୍ରକାରର ସହାୟତା ତ ତାଙ୍କ ଘରେ ପହଞ୍ଚିବା ପୂର୍ବରୁ ଦିଆଯାଇ ଥାଆନ୍ତା; କିନ୍ତୁ ତାଙ୍କୁ ପ୍ରତ୍ୟକ୍ଷ ନେବା ସମୟରେ ଯେପରି ଲଜ୍ଜାବୋଧ ନ ହେବ ସେଥିପାଇଁ ଭଗବାନ୍ ଦ୍ୱାରକାରେ ପ୍ରତ୍ୟକ୍ଷ କିଛି ନ ଦେଇ ପରୋକ୍ଷ ରୂପେ ସମସ୍ତ ସମ୍ପତ୍ତି ତାଙ୍କ ଘରକୁ ପଠାଇ ଦେଇଥିଲେ ।

ଅନ୍ୟ କାରଣ ହେଲା, ପ୍ରତ୍ୟକ୍ଷ ଦାନ ଦେବା ସମୟରେ ଗ୍ରହୀତା ନିଜର କୃତଜ୍ଞତା ପ୍ରକାଶ କରିଥାଏ । ସଜ୍ଜନ ପୁରୁଷ ଅନ୍ୟକୁ କୃତଜ୍ଞ ଦେଖି ଲଜ୍ଜିତ ହୁଅନ୍ତି । ତେଣୁ ପ୍ରତ୍ୟକ୍ଷ ଦେବାରେ ସ୍ୱୟଂ ଭଗବାନଙ୍କୁ ମଧ୍ୟ ଲଜ୍ଜା ଲାଗିଲା । ସେ ଏହା ତ ଜାଣିଥିଲେ ଯେ, ଧନ ଇଚ୍ଛାରେ ସୁଦାମା ଆସିଛନ୍ତି । ଯଦି ସେ ସେଠାରେ ବିପୁଳ ଧନ ଦେଇଥାନ୍ତେ, ତାହାହେଲେ କୃତଜ୍ଞତାର ସହିତ ତାଙ୍କ ଶିର ନଇଁ ଯାଇଥାଆନ୍ତା । ସେହି ସମୟରେ ମୈତ୍ରୀରେ ଏକ ସଙ୍କୋଚ ଉତ୍ପନ୍ନ ହୋଇଥାଆନ୍ତା । ସେ ସାଧୁତା କାରଣରୁ ଦୀନତା ମିଶ୍ରିତ ନିଜର କୃତଜ୍ଞତା ପ୍ରକାଶ କରିଥାଆନ୍ତେ । ତେଣୁ ତାଙ୍କୁ ବଡ଼ ଲଜ୍ଜା ଲାଗିଥାଆନ୍ତା । ପୁନଶ୍ଚ ଏହାଦ୍ୱାରା ନିଜର ମିତ୍ରତା ସମ୍ବନ୍ଧ ହୁଏତ ନ ରହି ଦାତା ଓ ଗ୍ରହୀତା ସମ୍ବନ୍ଧ ହୋଇଯାଇଥାଆନ୍ତା, ଯାହାକି ମିତ୍ରତା ଦୃଷ୍ଟିରେ ଅତ୍ୟନ୍ତ ତୁଚ୍ଛ । ସେହି ସଙ୍କୋଚ କାରଣରୁ ସେ ପ୍ରତ୍ୟକ୍ଷରେ କିଛି ଦେଇ ନଥିଲେ ।

ତୃତୀୟ କାରଣ ହେଲା—'ବସ୍ତୁରେ ପ୍ରିୟତା ନଥାଏ । ତାହାର ଉତ୍କଣ୍ଠ ପ୍ରତୀକ୍ଷାରେ ପ୍ରସନ୍ନତା ବର୍ଦ୍ଧମାନ । ମନେ କରନ୍ତୁ ଜଣେ କୋଟିପତିଙ୍କର ପ୍ରତ୍ୟହ ଲକ୍ଷ ଲକ୍ଷ ଟଙ୍କା କାରବାର ହେଉଛି, ସେଥିରେ କିନ୍ତୁ ତାଙ୍କର ପ୍ରସନ୍ନତା ନଥାଏ । କାରଣ ତାହା ତ ତାଙ୍କର ନିତ୍ୟ ନୈମିତ୍ତିକ ବ୍ୟବସାୟ । ଅନ୍ୟ ଜଣେ ଲୋକ ଟିଏ କି ଗୁଣ୍ଡି ଥାଏ

ମୋତେ ଦଶଟଙ୍କା ମିଳି ଯାଆନ୍ତା କି, କିନ୍ତୁ ତାହା ତାଙ୍କୁ ସହଜରେ ମିଳେ ନାହିଁ । ତେବେ ସେ ଅତ୍ୟନ୍ତ ନିରାଶ ହୋଇଗଲେ । ସହସା ତାଙ୍କୁ ହଜାର ହଜାର ଟଙ୍କା କେଉଁଠୁ ମିଳିଗଲା । ସେହି ସମୟରେ ତାଙ୍କର ଯେଉଁ ପ୍ରସନ୍ନତା ହୁଏ, ତାହା ବର୍ଣ୍ଣନାତୀତ । ସୁଦାମାଙ୍କର ପୂର୍ଣ୍ଣ ଆଶା ଥିଲା, ଏତେ ବଡ଼ ଲୋକଙ୍କ ଦ୍ୱାରରୁ ସେ କଦାପି ଖାଲି ହାତରେ ଫେରିବେ ନାହିଁ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା କିଛି ନା କିଛି ଶ୍ୟାମସୁନ୍ଦର ତାଙ୍କୁ ନିଶ୍ଚୟ ଦେବେ । କିନ୍ତୁ ତାଙ୍କର ଆଶା ଓ ବିଶ୍ୱାସ ପ୍ରତିକୂଳ ହେବାର ସେ ପ୍ରଥମେ ଦେଖିଲେ । ଭଗବାନ ତାଙ୍କୁ କିଛି ଦେଲେ ନାହିଁ । ସବୁ ଆଶା ତାଙ୍କର ତୁଟି ଯିବାରୁ ସେ ଭାବିଲେ— "ଏତେ ବଡ଼ ଲୋକର ଦ୍ୱାରରୁ ମୁଁ ଶୂନ୍ୟ ହସ୍ତରେ ଫେରିଲି, ମୋତେ କିଛି ହେଲେ ମିଳିଲା ନାହିଁ ? ମୋ ଭାଗ୍ୟରେ ଧନ ନାହିଁ । ମୋତେ ଏହିପରି ଦାରିଦ୍ର୍ୟ ଜୀବନ କାଟିବାକୁ ହିଁ ପଡ଼ିବ । ସବୁଆଡ଼ୁ ନିରାଶ ହୋଇପଡ଼ି ଥିବା ଅବସ୍ଥାରେ ତାଙ୍କୁ ସହସା ଏତେ ବଡ଼ ସମ୍ପତ୍ତି ମିଳି ଯିବାରୁ ତାଙ୍କୁ ଏଠାରେ ଯେଉଁ ସୁଖ ମିଳିଲା, ଦ୍ୱାରକାରେ ପାଇଥିଲେ ସେ ସୁଖ ଓ ଆନନ୍ଦ ଏତେ ପରିମାଣରେ ମିଳି ନଥାନ୍ତା ।

ଚତୁର୍ଥ କାରଣ ହେଲା—ଗୁପ୍ତ ଦାନର ମାହାତ୍ମ୍ୟ ସବୁଠାରୁ ଅଧିକ । ଲୋକ ଲଜ୍ଜା ଓ ଫଳ ଆଡ଼ ରଖି ଯଦି କିଛି ଧନ ଗୁପ୍ତରେ ଦାନ କରନ୍ତି, ତାହା ହିଁ ଶ୍ରେଷ୍ଠ ଦାନ । ଏହି କଥା କେବଳ ଦାତା ହିଁ ବୁଝିପାରନ୍ତି, ଗ୍ରହୀତା ବୁଝି ପାରନ୍ତି ନାହିଁ । ଶ୍ରେଷ୍ଠ ପୁରୁଷ-ମାନେ ଏହି ପ୍ରକାର ଦାନ ଦିଅନ୍ତି । କୃଷକ ନିଜ ଘରେ ଶୋଇ ରହିଥାଏ, ଇନ୍ଦ୍ର ରାତିରେ ଆସି ତା କ୍ଷେତକୁ ଜଳରେ ଭରି ଦିଅନ୍ତି । ବୁଣା ଯାଇଥିବା ଶସ୍ୟ ଲକ ଲକ ଦିଶେ ଓ ଗଜା ବାହାରେ । କୃଷକ ତାହା ଦେଖି ଆନନ୍ଦିତ ହୁଏ । ଶ୍ରେଷ୍ଠମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ ଏହି ପ୍ରକାର ସୁଦାମାଙ୍କ ହାତରେ ଦେବାକୁ ସଙ୍କୋଚ କରିଥିଲେ । ସେ ଦ୍ୱାରକାରେ ଥାଇ ମଧ୍ୟ ସୁଦାମାଙ୍କ ଘରକୁ ଋଦ୍ଧି-ସିଦ୍ଧିମୟ କରିଦେଲେ ।

ପଞ୍ଚମ କାରଣ ହେଲା—ସୁଦାମାଙ୍କର ଇଚ୍ଛା ତ ଶ୍ରୀକୃଷ୍ଣଙ୍କୁ ଧନ ମାଗିବା ପାଇଁ ପ୍ରଥମରୁ ନଥିଲା । ତାଙ୍କର ପତ୍ନୀ ହିଁ ଧନ ଚାହୁଁଥିଲେ । କିନ୍ତୁ ଭଗବାନ ଶ୍ରୀକୃଷ୍ଣ ତ ବାଞ୍ଛା-କଳ୍ପତରୁ, ତାଙ୍କର ଭକ୍ତ ତାଙ୍କୁ ଯେପରି ଭଜନ କରନ୍ତି, ସେ ତାଙ୍କୁ ସେପରି ଫଳ ଦିଅନ୍ତି । ସୁଦାମା ଅକିଞ୍ଚନ ହୋଇ ରହିବାକୁ ଚାହୁଁଥିଲେ । ଏଥିପାଇଁ ସେ ଭଗବାନଙ୍କୁ ଧନ ଯାଚଞ୍ଚା କରିବାକୁ ଚାହୁଁ ନଥିଲେ । ତେଣୁ ଭଗବାନ ମଧ୍ୟ ତାଙ୍କୁ ଧନ ଦେଲେ ନାହିଁ । ତାଙ୍କର ପତ୍ନୀ ଧନ ଚାହୁଁଥିଲେ, ଏଥିପାଇଁ ସେ ତାଙ୍କ ପାଖକୁ ଧନରତ୍ନ ପଠାଇ ଦେଲେ । ପତିପତ୍ନୀ ଏକ । ତାଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ତେଣୁ ଉଭୟେ ସେ ଧନ ଉପଭୋଗ ଓ ଉପଯୋଗ କଲେ ।

ପ୍ରତ୍ୟକ୍ଷ ଧନ ନ ଦେବାର ଏହିପରି ଅନେକ କାରଣ ଅଛି । ଆଉ ଗୋଟିଏ କାରଣ ହେଲା, ଭଗବାନଙ୍କୁ ଲଜ୍ଜା ଲାଗିଲା ଯେ, ଏହି ସାମାନ୍ୟ ଧନ ମୁଁ ସୁଦାମାଙ୍କ

କାହିଁକି ଦେବ, ମୋର ଭକ୍ତଙ୍କୁ ତ ମୁଁ ଅଖିଳ ବ୍ରହ୍ମାଣ୍ଡ ଦେଇପାରେ, ନିଜକୁ ମଧ୍ୟ ସମର୍ପି ଦେଇପାରେ, ତଥାପି ତାହା ମଧ୍ୟ ଯଥେଷ୍ଟ ନୁହେଁ । ଭଗବାନ ତ ଜାଣୁଥିଲେ ମୁଁ ତାଙ୍କୁ କିଛି ଦେଇ ନାହିଁ । ଏଣେ ସୁଦାମା ଏତେ ଧନ ସମ୍ପତ୍ତି ପାଇ ଆଶ୍ଚର୍ଯ୍ୟ ହୋଇ-ଯାଇଥିଲେ । ସେ ଭାବୁଥିଲେ—"ଦେଖ, ଭଗବାନ୍ କିପରି ବ୍ରହ୍ମଣ୍ୟଦେବ, ମୁଁ ମୁଠିଏ ମାତ୍ର ଖୁଦ ଭଜା ଦେଲି, ତାହାକୁ ସେ କେତେ ପ୍ରେମରେ ସଙ୍ଗେ ସଙ୍ଗେ ଖାଇଗଲେ ? ମୋତେ କେତେ ପ୍ରଶଂସା କଲେ, ଖୁଦର ସ୍ୱାଦ କହି କହି ଆନନ୍ଦରେ ଅଧୀର ହୋଇ-ପଡ଼ିଲେ । ଏହାର ବଦଳରେ ସେ ଏତେ ସମ୍ପତ୍ତି ଦେଇ ମଧ୍ୟ କିଛି ହେଲେ ଦେଇ ନାହାନ୍ତି ବୋଲି ଅନୁଭବ କରୁଛନ୍ତି ।"

ମୋର ତାଙ୍କଠାରେ ଏତିକି ପ୍ରାର୍ଥନା ଯେ, "ଜନ୍ମ ଜନ୍ମାନ୍ତରରେ ସେ ମୋତେ ତାଙ୍କ ପାଦପଦ୍ମରେ ପ୍ରୀତି ରହିବାର କୃପା କରନ୍ତୁ । ମୋ ମନରେ ତାଙ୍କ ପ୍ରତି ସୌହାର୍ଦ୍ଦ୍ୟ ଭାବ ରହୁ । ଏହିପରି ସେ ମୋତେ ନିଜର ଉଚ୍ଛାତିଉଚ୍ଚ ଦାସ, ସଖା, ମିତ୍ର ଓ ବନ୍ଧୁ ଜ୍ଞାନ କରନ୍ତୁ । ମୁଁ ଏହିପରି ଜନ୍ମ ଜନ୍ମାନ୍ତରରେ ଦରିଦ୍ର ହୋଇ ରହେ; କିନ୍ତୁ ତାଙ୍କ ଭକ୍ତ ହୋଇଥାଏ । ଏହିପରି ସେ ମୋ ଉପରେ କୃପା ଦୃଷ୍ଟି କରୁଥାଆନ୍ତୁ । ମୋର ସେହି ଅଚ୍ୟୁତଙ୍କ ଚରଣରେ ଅନୁରାଗ ରହୁ, ତାଙ୍କ ଭକ୍ତମାନଙ୍କର ସଙ୍ଗ ଲାଭ ହେଉଥାଉ ।

ଭଗବାନ ଏପର୍ଯ୍ୟନ୍ତ ମୋତେ ଦରିଦ୍ର ରଖିଥିଲେ, ତେଣୁ ମୋ ଉପରେ ସେ ବଡ଼ କୃପା କରିଥିଲେ । ଯେପରି ମା' ନିଜ ପାଖରେ ଭଲ ଭଲ ପିଠେଇ ଆଦି ରଖିଥିଲେ ମଧ୍ୟ ସେ ନିଜ ରୋଗୀ ପୁଅକୁ ପୁଷ୍ଟିକର ଖାଦ୍ୟ ଦିଅନ୍ତି ନାହିଁ । କାରଣ ପୁଷ୍ଟିକର ଖାଦ୍ୟ ସୁସ୍ଥ ଲୋକଙ୍କ ସ୍ୱାସ୍ଥ୍ୟ ବୃଦ୍ଧି କରାଏ; କିନ୍ତୁ ତାହା ରୋଗୀ ଖାଇଲେ ତାହାର ରୋଗ ବୃଦ୍ଧି କରାଏ । ସେହିପରି ଯିଏ ବୁଦ୍ଧିମାନ ନୁହନ୍ତି, ଯାହାଙ୍କର ବୁଦ୍ଧି ପରିପକ୍ୱ ନ ହୋଇଛି, ଏପରି ଭକ୍ତଙ୍କୁ ଭଗବାନ ଧନ ଦିଅନ୍ତି ନାହିଁ । କାରଣ ଧନୀ ପୁରୁଷ ଧନମଦରେ ମାତାଲ ହୋଇ ନାନା ପ୍ରକାର ଅନର୍ଥ ସୃଷ୍ଟି କରନ୍ତି । ତାଙ୍କଠାରେ ମନୁଷ୍ୟତା ରହେ ନାହିଁ । ସେମାନଙ୍କର ନୈତିକ ପତନ ଘଟେ । ଏହି ଧନର ଦୁଷ୍ପରିଣାମକୁ ଦେଖି ସେ ଭକ୍ତଙ୍କୁ ଦରିଦ୍ର କରି ରଖନ୍ତି । ଯେତେବେଳେ ସେ ଦାରିଦ୍ର୍ୟର ଘୋର ଦୁଃଖ ସହି ମଧ୍ୟ ତାଙ୍କର ବୁଦ୍ଧି ବିଚଳିତ ନ ହୁଏ, ପାପକର୍ମ କରି ଅର୍ଥ ଉପାର୍ଜନ କରିବାର ଭାବନା ତାଙ୍କର ଜାଗ୍ରତ ନ ହୁଏ ତାହା ହେଲେ ଭଗବାନ ଜାଣିପାରନ୍ତି ଯେ, ଏହି ଭକ୍ତ ହିଁ ଧନ ଲାଭ କଲେ ଅଧିକ ଧର୍ମ, ସଦାଚାର କରି ମୋଠାରେ ମତି ରଖିପାରିବ । ତାହାହେଲେ ସେ ଚାହିଁଲେ ତାଙ୍କୁ ଧନ ଦେଇ ଦିଅନ୍ତି । ଏପର୍ଯ୍ୟନ୍ତ ଭଗବାନ ମୋତେ ପରୀକ୍ଷା କରୁଥିଲେ । ମୋତେ ସେ କିଛି ନ ଦେଇ କେବଳ ଦାରିଦ୍ର୍ୟ, ଦୁଃଖ ଦେଉଥିଲେ । ସେହି ଦୁଃଖ କଷ୍ଟରେ ରହି ମଧ୍ୟ ମୁଁ ତାଙ୍କୁ ସ୍ମରଣ କରୁଥିଲି । ତାଙ୍କର ଅନୁଗ୍ରହରୁ ମୋର ମନ ଅନର୍ଥ ଆଡ଼କୁ ଗଲା ନାହିଁ । ତା ନ ହୋଇଥିଲେ ଦରିଦ୍ରତା-

ବସ୍ତୁତଃ ଅନେକ ଲୋକ ଯେପରି ଅନ୍ୟାୟରେ ଧନ ଉପାର୍ଜ୍ଜନ କରନ୍ତି, ତାହା ମୁଁ ପ୍ରତ୍ୟକ୍ଷରେ ଦେଖିଛି । ଦରିଦ୍ର ଅବସ୍ଥାରେ ସେହି ଅନ୍ୟାୟ ଉପାୟରେ ଅର୍ଥ ଉପାର୍ଜ୍ଜନ କରିବାର ଲୋଭ ସମ୍ବରଣ ସହଜରେ କରିହୁଏ ନାହିଁ । ଭଗବାନ ମୋତେ ଭଲଭାବେ ପରୀକ୍ଷା ନିରୀକ୍ଷା କରି ଏହି ସମ୍ପତ୍ତି ପ୍ରଦାନ କଲେ । ଦେଲେ କି'ଣ, ନ୍ୟାସ ରୂପରେ ରଖିଦେଲେ । ମୋତେ ସେ ମୋ ସେବାର ଅଧିକାର ମଧ୍ୟ ଦେଲେ । ସମସ୍ତ ସମ୍ପତ୍ତିର ଏକମାତ୍ର ସ୍ୱାମୀ ତ ସ୍ୱୟଂ ଶ୍ରୀପତି । ମୁଁ କେବଳ ତାଙ୍କର ଏହି ସବୁ ସମ୍ପତ୍ତିର ରକ୍ଷଣାବେକ୍ଷଣକାରୀ ସେବକ । ମୁଁ ଏହି ସମ୍ପତ୍ତିର ପ୍ରତ୍ୟେକ ଅର୍ଥ ତାଙ୍କରି ପୂଜାରେ ହିଁ ଲଗାଇବି । ତାଙ୍କରି ପ୍ରସାଦ ପାଇ ଏହି ପ୍ରଭୁସେବା ଉପଯୋଗୀ ଶରୀରକୁ ତାଙ୍କ ସେବା ନିମିତ୍ତ ହିଁ ପାଳନ ପୋଷଣ କରିବି ।"

ସୂତ କହିଲେ—"ମୁନିଗଣ ! ଏହିପରି ନିଶ୍ଚୟ କରି ସୁଦାମା ଅନାସକ୍ତ ଭାବରେ ତ୍ୟାଗପୂର୍ବକ ପ୍ରଭୁ ପ୍ରସାଦର ଭାବନାରେ ନିଜ ପତ୍ନୀଙ୍କ ସହିତ ସେହି ବିଷୟର ଉପଭୋଗ କରିବାକୁ ଲାଗିଲେ । ସେ କେବେହେଲେ ନିଜ ଶରୀର ପୁଷ୍ଟି କରିବା ଭାବନାରେ ଭୋଜନ କଲେ ନାହିଁ । ପ୍ରଭୁ ପ୍ରସାଦ ଜ୍ଞାନରେ ସେ ତାହା ସେବନ କଲେ । ଭଗବାନ ଏହିପରି ଏହି ଦରିଦ୍ର ନିର୍ଧନ ବ୍ରାହ୍ମଣ ଉପରେ କୃପାକରି ନିଜର ବ୍ରହ୍ମଣ୍ୟତା ସମସ୍ତଙ୍କ ଆଗରେ ପ୍ରଦର୍ଶନ କଲେ । ଯଦି ତ ଭଗବାନଙ୍କୁ ଅଜିତ ବୋଲି କୁହାଯାଏ, ତାଙ୍କୁ କେହି ହେଲେ ନିଜର ପୁରୁଷାର୍ଥ ବଳରେ ଯଦି ଜିଣିବାକୁ ଚାହେଁ ତାହାହେଲେ ଜୟ କରିପାରେ ନାହିଁ । କିନ୍ତୁ ସେ ଭକ୍ତଙ୍କ ସମ୍ମୁଖରେ ପରାଜିତ ହୋଇଥାନ୍ତି । ଭକ୍ତ ତାଙ୍କୁ ନିଜ ନୟନ ପୁତୁଳାରେ ରଖି ବନ୍ଦୀ କରିଥାଆନ୍ତି । ହୃଦୟରେ ବସାଇ ତାଙ୍କୁ ଅଟକାଇ ଦିଅନ୍ତି । ସେ ମଧ୍ୟ ଅଟକି ଯାଆନ୍ତି ଓ ଭକ୍ତର ଅଧୀନ ହୋଇଯାଆନ୍ତି । ଏଥିପାଇଁ ତାଙ୍କୁ ଭକ୍ତବଶ୍ୟ କୁହାଯାଏ । ସୁଦାମା ନିରନ୍ତର ସେହି ଭକ୍ତବଶ୍ୟ ଭଗବାନଙ୍କୁ ଦୃଢ଼ତାର ସହିତ ଧ୍ୟାନ କରୁଥିଲେ । ଏଥିପାଇଁ ଅବିଦ୍ୟାରୂପିଣୀ ଗ୍ରନ୍ଥି ଛେଦନ କରି ସେ ଶେଷରେ ଭଗବାନଙ୍କ ପରମଧାମକୁ ପ୍ରାପ୍ତ ହୋଇଥିଲେ ।

ଯେଉଁ ବ୍ୟକ୍ତି ବିଶୁଦ୍ଧ ଭାବରେ ଏହି ପରମ ପୁଣ୍ୟପ୍ରଦ ସୁଦାମା ଚରିତରୂପୀ ମଧୁମୟ ଉପାଖ୍ୟାନକୁ କର୍ଣ୍ଣକୁହର ଦ୍ୱାରା ପାନ କରିବେ କିମ୍ବା ବାଣୀଦ୍ୱାରା କହି ଅନ୍ୟକୁ ତୃପ୍ତ କରିବେ ତାଙ୍କୁ ସଙ୍ଗେ ସଙ୍ଗେ ଭଗବାନଙ୍କ ପ୍ରେମ ପ୍ରାପ୍ତ ହେବ ଓ ସେହି ପ୍ରେମର ବେଗରେ ହିଁ ସେ କର୍ମବନ୍ଧନରୁ ବିମୁକ୍ତ ହେବେ । ଏହିପରି ବାଲ୍ୟକାଳରୁ ବିଚ୍ଛେଦ ହୋଇଥିବା ନିଜର ସଖାଙ୍କୁ ସୁଦାମା ଥରେ ମାତ୍ର ସାକ୍ଷାତ କରି ଧନ୍ୟ ହୋଇଗଲେ ।"

ଶୌନକ ପଚାରିଲେ—"ହେ ସୂତ ! ବାଲ୍ୟକାଳର ସଖା ସୁଦାମାଙ୍କୁ ଦର୍ଶନ ଓ ଐଶ୍ୱର୍ଯ୍ୟ ପ୍ରଦାନ କରି ତ ଧନ୍ୟ କରିଦେଲେ; କିନ୍ତୁ ଦୀର୍ଘକାଳ ଧରି ବିରହ ବିଚ୍ଛେଦ

ତାଙ୍କ ସେବା କରୁଥିବା ସେହି ବ୍ରଜବାସୀ ଗୋପୀ ଗୋପାଳଙ୍କୁ କ'ଣ ଭଗବାନ କେବେ ଆଉ ଦର୍ଶନ ଦେଇଥିଲେ ?"

ସୂତ କହିଲେ—"ମହାରାଜ ! ଗୋପ ଗୋପୀଗଣ ତ ଶ୍ରୀକୃଷ୍ଣଙ୍କୁ କିଣିନେଇ ବସୁଦେବଙ୍କଠାରୁ କନ୍ୟା ବଦଳରେ ପାଇଥିଲେ । କନ୍ୟାଙ୍କୁ ତ କଂସ ଶିଳାରେ ପିଟିବାରୁ ସେ ତା ହାତରୁ ଖସି ଯାଇଥିଲେ । ଯେପର୍ଯ୍ୟନ୍ତ ବନ୍ଧା ଦିଆଯାଇଥିବା ବସ୍ତୁର ମୂଲ୍ୟ ନ ମିଳିଥାଏ, ସେ ପର୍ଯ୍ୟନ୍ତ ରଖିଥିବା ବ୍ୟକ୍ତି ତାହା ନେଇ ନ ପାରେ । ଏଥିପାଇଁ ଭଗବାନଙ୍କୁ ତ ବ୍ରଜବାସୀଗଣ କିଣି ନେଇଥିଲେ । ଭଗବାନ ମଧ୍ୟ ସେମାନଙ୍କ ସହିତ ଏପରି ମିଶି ଯାଇଥିଲେ ଯେ, ସେ ବୃନ୍ଦାବନର ସୀମା ବାହାରକୁ ଏକ ପାଦ ବି ଯାଉ ନଥିଲେ । ଅକ୍ରୂର ତାଙ୍କୁ ନେବାକୁ ଆସିବାରୁ ସଂକୋଚବଶତଃ ଅକ୍ରୂର ଘାଟ ପର୍ଯ୍ୟନ୍ତ ତ ସେ ଯାଇଥିଲେ; କିନ୍ତୁ ସେଠାରୁ ଦୁଇ ରୂପ ହୋଇ ନିଜକୁ ସେ ଯମୁନା ଜଳରେ ଗୋପନ ରଖି ବୃନ୍ଦାବନ ଫେରି ଆସିଥିଲେ ଓ ଅନ୍ୟ ରୂପରେ ମଥୁରା ଓ ଦ୍ୱାରକା ଯାଇ ସେଠାରେ ପ୍ରକଟ ଲୀଳା କରିଥିଲେ । ଏବେ ବୃନ୍ଦାବନବାସୀ ଶ୍ରୀକୃଷ୍ଣଙ୍କୁ ଡର ଥିଲା, ଯେପରି ଆଉ ଅକ୍ରୂର ତାଙ୍କୁ ନେବାପାଇଁ ରଥ ନେଇ ନ ଆସୁ । ମୁଁ ବୃନ୍ଦାବନରୁ ଆଉ ଯେପରି କେଉଁଠାକୁ ନ ଯାଏଁ ! ତେଣୁ ଭଗବାନ ଈଶ୍ୱର ରୂପ ରଖି ତ ପ୍ରକଟ ହୋଇଥିଲେ ଓ ଅପ୍ରକଟ ଭାବରେ ଗୋପୀମାନଙ୍କ ସହିତ ନିରନ୍ତର କ୍ରୀଡ଼ାରତ ଥିଲେ ଏବଂ ଏବେ ମଧ୍ୟ ସେବାକୁଞ୍ଜରେ ନିରନ୍ତର କ୍ରୀଡ଼ାରତ ଅଛନ୍ତି । କେହି କେହି ଭାଗ୍ୟବାନ ଭକ୍ତ ଏବେ ବି ତାଙ୍କ ପ୍ରତ୍ୟକ୍ଷ ଦର୍ଶନ ପାଉଛନ୍ତି । ତାଙ୍କ ପରମ ଭକ୍ତ ଉଦ୍ଧବ ମଧ୍ୟ ଗୁପ୍ତ ରୂପରେ ଗୁଳ୍ମ ଲତା ରୂପ ଧାରଣ କରି ବ୍ରଜରେ ବାସ କରୁଛନ୍ତି । ସେ ଅନ୍ୟ ଏକ ରୂପରେ ବଦରୀ ବନରେ ତପସ୍ୟା ମଧ୍ୟ କରୁଛନ୍ତି । ଏଣୁ ପ୍ରକଟ ରୂପରେ ତ ଭଗବାନ ଆଉ ବ୍ରଜଭୂମିକୁ ଆସିନାହାନ୍ତି ! ହଁ, ଥରେ କୁରୁକ୍ଷେତ୍ରରେ ସମସ୍ତ ଗୋପୀ-ଗୋପାଳଙ୍କ ସହିତ ତାଙ୍କର ଭେଟ ହୋଇଥିଲା ।"

ଶୌନକ ପଚାରିଲେ—"ହେ ସୂତ ! ଗୋପୀ-ଗୋପାଳ କାହିଁକି କୁରୁକ୍ଷେତ୍ର ଯାଇଥିଲେ ? ଭଗବାନ କ'ଣ ସେଠାକୁ ଅର୍ଜୁନଙ୍କ ରଥରେ ସାରଥୀ ହେବାକୁ ଆସିଥିଲେ ? ଯୁଦ୍ଧ ସମୟରେ ବ୍ରଜବାସୀଗଣ ସେଠାକୁ ଯିବାର କି ଆବଶ୍ୟକ ପଡ଼ିଥିଲା ?

ସୂତ କହିଲେ—"ନା, ମହାରାଜ ! ଏହି ଭେଟ ଯୁଦ୍ଧ ସମୟରେ ହୋଇ ନଥିଲା । ମହାଭାରତ ଯୁଦ୍ଧର ବହୁ ପୂର୍ବରୁ ବ୍ରଜବାସୀମାନଙ୍କର ଭଗବାନଙ୍କ ସହିତ ସମ୍ମିଳନ ହୋଇଥିଲା । ସୂର୍ଯ୍ୟ ପରାଗ ସମୟରେ କୁରୁକ୍ଷେତ୍ରରେ ଥରେ ସ୍ନାନ କରିବାର ବଡ଼ ଯୋଗ ପଡ଼ିଥିଲା । ଏହାର ମାହାତ୍ମ୍ୟ ମଧ୍ୟ ଥିଲା । ବ୍ରଜବାସୀ ଗୋପ-ଗୋପୀଗଣ ସେହି ସମୟରେ ତୀର୍ଥସ୍ନାନ କରିବାପାଇଁ ସେଠାକୁ ଯାଇଥିଲେ । ଭଗବାନ ଦ୍ୱାରକାପୁରୀରୁ ସେଠାକୁ ସପରିବାର ସ୍ନାନ କରିବାକୁ ବି ଆସିଥିଲେ । ଅବସ୍ଥାନ ହେମ ନନ୍ଦଙ୍କର ଭଗବାନଙ୍କ

ସହିତ ଭେଟ ହୋଇଗଲା । ଏବେ ମୁଁ ସେହି ସୁଖଦ ସମ୍ମିଳନ ସମ୍ବନ୍ଧରେ ବର୍ଣ୍ଣନ କରିବି । ଆପଣମାନେ ତାହା ମନଧ୍ୟାନ ଦେଇ ଶ୍ରବଣ କରନ୍ତୁ ।

## ଛପ୍ପୟ

ପ୍ରଭୁ ପ୍ରସାଦ ସବ ସମୁଝି କରେଂ ବିଷୟନକୋ ସେବନ ।
ମନ ମହିଁ ଧାରେ କୃଷ୍ଣ କରେଂ ତନ ନିତ ପ୍ରଭୁ ଚିନ୍ତନ ॥
ଜଗ ମହିଁ ସବ ସୁଖ ଭୋଗି ଅନ୍ତ ହରି ଲୋକ ସିଧାଲେ ।
ଭୟେ ସୁଦାମା ସଖା ଶ୍ୟାମକେ ଅତିଶୟ ପ୍ୟାରେ ॥
ସୁନେ ସୁଦାମା ଚରିତ ଜୋ, ତେ ନ ପରେଂ ଭବକୂପ ପୁନ ।
ଗୋପନ ସଂଗ ହରି ମିଲନ ଜ୍ୟୋଂ, ଭୟୋ କହୁଁ ଅବ ସୁନହୁ ମୁନ ॥



## କୁରୁକ୍ଷେତ୍ରରେ ବ୍ରଜବାସୀଙ୍କ ସହିତ ଭଗବାନଙ୍କ ଭେଟ

**ଅଥୈକଦା ଦ୍ୱାରବତ୍ୟାଂ ବସତୋ ରାମକୃଷ୍ଣୟୋଃ ।**
**ସୂର୍ଯ୍ୟୋପରାଗଃ ସୁମହାନାସୀତ୍ କଲ୍ପକ୍ଷୟେ ଯଥା ॥**
**ତଂ ଜ୍ଞାତ୍ୱା ମନୁଜା ରାଜନ୍ ପୁରସ୍ତାଦେବ ସର୍ବତଃ ।**
**ସମନ୍ତପଞ୍ଚକଂ କ୍ଷେତ୍ରଂ ଯୟୁଃ ଶ୍ରେୟୋବିଧିତ୍ସୟା ॥** *

(ଶ୍ରୀ ଭା : ୧୦ ସ୍କ. ୮୨ ଅ. ୧-୨ ଶ୍ଳୋକ)

### ଛପ୍‌ପୟ

ସୂର୍ଯ୍ୟ ଗ୍ରହନ ଇଜ ଜାର ପରେଖ୍ୟା ସୁନ ସବ ନର ନାରୀ ।
ଗୟେ ନ୍‌ହାନ କୁରୁକ୍ଷେତ୍ର ସକଲ ଯାଦବ ବନବାରୀ ॥
ଇନତେଂ ଗୋପୀ ଗୋପ ପରବ ପୈ ମିଲ ତହଁ ଆୟେ ।
ଭେଟଂ ପରସ୍ପର ଭଇ ସକଲ ମିଲ ପରମ ସିହାୟେ ॥
ଉଭୟ ଓର ଆନନ୍ଦ ଅତି, ସମୁଦିତ ଯାଦବ ଗୋପଗନ ।
ଖିଲେ୍ୟା କମଲ ମୁଖ ନୟନ ଜଲ, ପୁଲକିତ ତନୁ ଗଦ୍‌ଗଦ ବଚନ ॥

---

* ଅନନ୍ତ ରୂପିଲ ନରହରି । ମନୁଷ୍ୟ ରୂପେ ଅବତରି ॥
ଆନନ୍ଦେ ଦ୍ୱାରବତୀ ପୁରେ । ବିହରେ ନର କଳେବରେ ॥
ଜ୍ୟୋତିଷେ କୃଷ୍ଣ ପାଶେ ଯାଇ । କହିଲେ ଶିରେ କର ଦେଇ ॥
ହେ ନାଥ ଶୁଣ ସାବଧାନେ । ମକର ପାଞ୍ଚଦଶ ଦିନେ ॥
କୃତ୍ତିକ ମୁହୂର୍ତ୍ତ ପ୍ରବେଶେ । ସିଂହିକାସୁତ ରବି ଗ୍ରାସେ ॥
ଦିବସେ ପ୍ରକାଶିବ ଶଶି । ପ୍ରଳୟକାଳ ପ୍ରାୟେ ଦିଶି ॥
ଏମନ୍ତ ଦଇବଜ୍ଞ ବାଣୀ । ଗୋବିନ୍ଦ ସାବଧାନେ ଶୁଣି ॥
ଘୋଷଣ ଦେଲେ ନିଜପୁରେ । ତୀର୍ଥଗମନ ଅନୁସାରେ ॥

(ଭାଗବତ : ଜଗନ୍ନାଥ ଦାସ ୧୦ମ ସ୍କ. ୮୮ ଅ.)

ତୀର୍ଥ ଓ ପର୍ବ ପ୍ରେମୀଗଣଙ୍କ ସହିତ, ବନ୍ଧୁବାନ୍ଧବଙ୍କ ସହିତ ମିଶି କରାଯାଏ । ତାହାହେଲେ ସେହି ତୀର୍ଥ ଓ ପର୍ବରୁ ଆନନ୍ଦ ମିଳେ । ପର୍ବପର୍ବାଣୀରେ ଗଙ୍ଗାଦି ତୀର୍ଥରେ ସ୍ନାନ କରିବାକୁ ପଡ଼େ । ଏହା ଦ୍ୱାରା ପୁଣ୍ୟ ଲାଭ ହେବା ସଙ୍ଗେ ସଙ୍ଗେ ବନ୍ଧୁବାନ୍ଧବ, ସାଙ୍ଗସାଥୀ ଓ ଅନେକ ସୁପରିଚିତ ବ୍ୟକ୍ତିଙ୍କ ସହିତ ମିଳିତ ହେବାର ସୁଯୋଗ ମିଳେ । ନିଜ ପ୍ରିୟ ଲୋକଙ୍କ ସହିତ ଭେଟ ହେବା ସଂସାରରେ ଏକ ସବୁଠାରୁ ବଡ଼ ଲାଭ । ସେମାନେ କେବଳ ମିଳନ ଉଦ୍ଦେଶ୍ୟରେ ସବୁଆଡ଼େ ଯାଇ ନ ଥାନ୍ତି, ସେମାନଙ୍କୁ ଅନେକ ଅତୀତ ଓ ଭବିଷ୍ୟତ କଥା ଚର୍ଚ୍ଚା କରିବାକୁ ପଡ଼ିଥାଏ । ତୀର୍ଥଯାତ୍ରା ପାଇଁ ସମସ୍ତେ ସ୍ୱତନ୍ତ୍ର । ସମସ୍ତେ ଅତ୍ୟନ୍ତ ଉତ୍ସାହର ସହିତ ବିଶେଷ ପର୍ବ ପଡ଼ିଲେ ତୀର୍ଥଯାତ୍ରା କରିଥାଆନ୍ତି । ସେଠାରେ ଏକ ସଙ୍ଗେ ଦୁଇଟି କାର୍ଯ୍ୟ ହୋଇଥାଏ । ପ୍ରଥମତଃ ବନ୍ଧୁ ଦର୍ଶନ ଓ ଦ୍ୱିତୀୟରେ ତୀର୍ଥବ୍ରତ ପାଳନ । ତୀର୍ଥରେ ସନ୍ଥ ମହାତ୍ମାମାନଙ୍କ ଦର୍ଶନ ମଧ୍ୟ ହୋଇଥାଏ । ଅତି ପ୍ରିୟ ଲୋକଙ୍କ ଦର୍ଶନ ମିଳିବା ତୀର୍ଥ ଦର୍ଶନର ପ୍ରତ୍ୟକ୍ଷ ଫଳ ମିଳିବା ସହିତ ସମାନ ।

ସୂତ କହିଲେ—"ମୁନିଗଣ ! ଯେପର୍ଯ୍ୟନ୍ତ ମହାରାଜ ଯୁଧିଷ୍ଠିରଙ୍କର ଯଜ୍ଞ ହୋଇ ନଥିଲା, ଏହା ତାହା ପୂର୍ବର ଘଟଣା । ସେହି ସମୟରେ ସମସ୍ତ ବ୍ରଜବାସୀଙ୍କ ସହିତ ଶ୍ରୀକୃଷ୍ଣଙ୍କର କୁରୁକ୍ଷେତ୍ରରେ ଭେଟ ହୋଇଥିଲା । ଯେତେବେଳେ ବଳରାମଙ୍କ ସହିତ ଭଗବାନ ଆନନ୍ଦରେ ନିବାସ କରୁଥିଲେ, ସେହି ସମୟରେ ଜ୍ୟୋତିଷମାନେ କହିଲେ—"ମହାରାଜ ! ଏବେ ତ ପୂର୍ଣ୍ଣଗ୍ରାସ ସୂର୍ଯ୍ୟପରାଗ ପଡ଼ିବ । ଯେପରି କଳ୍ପପ୍ରଳୟ କାଳରେ ସୂର୍ଯ୍ୟ ଅଦୃଶ୍ୟ ହୋଇଯାଆନ୍ତି, ଏବେ ସେହିପରି ଅମାବାସ୍ୟାରେ ପରାଗ ପଡ଼ୁଥିବାରୁ ସୂର୍ଯ୍ୟ ସେଦିନ ଅଦୃଶ୍ୟ ହୋଇଯିବେ । ଏହି ଅବସରରେ କୁରୁକ୍ଷେତ୍ର ତୀର୍ଥରେ ପରାଗ ସ୍ନାନ ଯୋଗ ପଡ଼ିବ । ଏହାର ବଡ଼ ମାହାତ୍ମ୍ୟ ରହିଛି ।"

ଭଗବାନ କହିଲେ—"ଆଚ୍ଛା, ଠିକ୍ ଅଛି । ଆମେ କୁରୁକ୍ଷେତ୍ରରେ ହିଁ ପରାଗ ସ୍ନାନ କରିବା ।"

ଏହି କଥା ରୁକ୍ମିଣୀ ଶୁଣିବାକୁ ପାଇଲେ । ତେଣୁ ସେ କହିଲେ—"ପ୍ରାଣନାଥ ! ମୋତେ ବି ସେଠାକୁ ସଙ୍ଗରେ ନେଇ ଚାଲନ୍ତୁ । ଆପଣଙ୍କ ସହିତ ମୁଁ ମଧ୍ୟ ସେହି ତୀର୍ଥସ୍ନାନ କରିବି । ଉଭୟେ ମିଶି ତୀର୍ଥସ୍ନାନ କରିବାରେ ଅତ୍ୟନ୍ତ ପୁଣ୍ୟ ହୁଏ ।"

ଭଗବାନ କହିଲେ—"ତାହାହେଲେ ଠିକ୍ ଅଛି, ତୁମେ ବି ମୋ ସଙ୍ଗେ ଚାଲ । ଏହି କଥା ସଙ୍ଗେ ସଙ୍ଗେ ଦ୍ୱାରକାର ପ୍ରତି ମହଲରେ ପ୍ରଚାରିତ ହୋଇଗଲା । ସମସ୍ତେ ଭଗବାନଙ୍କ ସହିତ ତୀର୍ଥସ୍ନାନ କରିବା ପାଇଁ ଯିବାକୁ ଆଗ୍ରହ ପ୍ରକାଶ କଲେ । ତେଣୁ ଭଗବାନ କହିଲେ ସମସ୍ତେ ଚାଲ, ମୋର କୌଣସି ଆପତ୍ତି ନାହିଁ । ତାଙ୍କ ପିତା

ବସୁଦେବ, ମାତା ଦେବକୀ, ଭାଇ ବଳଦେବ ଆଦି ସମସ୍ତଙ୍କୁ ନେବା ମଧ୍ୟ ଅବଶ୍ୟକ । ସିଏ ବି ଏକଥା ଶୁଣିଲେ ସେ ସ୍ନାନ କରିବା ପାଇଁ ଯିବାକୁ ବାହାରିଲେ । ସମସ୍ତଙ୍କର ଇଚ୍ଛା ହେଲା ତୀର୍ଥସ୍ନାନ କରି ପୁଣ୍ୟ ଅର୍ଜନ କରିବେ । ଅକ୍ରୂର, ଉଗ୍ରସେନ, ଗଦ, ପ୍ରଦ୍ୟୁମ୍ନ ଶାମ୍ବ ଓ ଅନ୍ୟାନ୍ୟ ଯାଦବଗଣ ଭଗବାନଙ୍କ ଅନୁମତିରେ ପବିତ୍ର ସ୍ନାନ କରିବାକୁ ଯିବାପାଇଁ ବାହାରିଲେ । ସମସ୍ତେ ଯିବାକୁ ପ୍ରସ୍ତୁତ ହୋଇଗଲାରୁ ଭଗବାନ କହିଲେ— ଆରେ ଭାଇ ! ଯଦି ସମସ୍ତେ ଚାଲିଯିବା, ତାହାହେଲେ କିଏ ଦ୍ୱାରକାପୁରୀକୁ ରକ୍ଷା କରିବ ? କେତେକ ଲୋକ ଅନ୍ତତଃ ଦ୍ୱାରକାପୁରୀକୁ ଜଗି ରହିବାର ଅଛି ।"

ଏହା ଶୁଣି ସମସ୍ତେ ପରସ୍ପର ମଧ୍ୟରେ, ତୁମେ ରହ, ସେ ରହୁ ଏହିପରି କଥା-ବାର୍ତ୍ତା ହେଲେ । ଜଣେ ଅନ୍ୟ ଜଣଙ୍କୁ ଏହିପରି କହିବାକୁ ଲାଗିଲେ । ଏହା ଦେଖି ଭଗବାନ କହିଲେ—"ଦେଖ, ସେନାପତି କୃତବର୍ମା ତ ଏଠାରେ ରହିବା ଏକାନ୍ତ ଆବଶ୍ୟକ । ସିଏ ହିଁ ତ ରକ୍ଷାଧିକାରୀ । ତାଙ୍କୁ ସାହାଯ୍ୟ କରିବା ପାଇଁ ସୁଚନ୍ଦ୍ର, ଶୁକ, ସାରଣ ଓ ଅନିରୁଦ୍ଧ ରହନ୍ତୁ । ଏହି ବୀରମାନେ ଯଦି ରହିବେ, ତାହାହେଲେ ଦ୍ୱାରକା ପ୍ରତି କୌଣସି ବିପଦର ଆଶଙ୍କା ନାହିଁ । କେହି ହେଲେ ଦ୍ୱାରକା ଆଡ଼କୁ ଆଖି ଉଠାଇ ଦେଖି ପାରିବେ ବି ନାହିଁ ।"

ଏବେ ଆଉ କାହାର କିଛି କହିବାର ନଥିଲା । ଯେତେବେଳେ ଭଗବାନ ଆଜ୍ଞା ଦେଇଦେଲେ, ସେତେବେଳେ ତାଙ୍କ ଆଜ୍ଞା ପାଳନ କରାଗଲା । ଅନ୍ୟମାନେ ଖୁବ୍ ଆଡ଼ମ୍ବର ସହକାରେ ଠାଟ ବାଟ ନେଇ ପବିତ୍ର ସ୍ନାନ କରିବାକୁ ଗଲେ । ସେମାନେ ଯଥା ସମୟରେ ସେହି ପରମ ପବିତ୍ର କୁରୁକ୍ଷେତ୍ରରେ ପହଞ୍ଚି ଗଲେ, ଯେଉଁଠାରେ କି ପରଶୁରାମ ଏକୋଇଶ ଥର କ୍ଷତ୍ରିୟଙ୍କୁ ମାରି ରାଜାମାନଙ୍କ ରକ୍ତରେ ବହୁତ ବଡ଼ ବଡ଼ କୁଣ୍ଡ ଭରି ଦେଇଥିଲେ । ଯଦି ତ ସେ ଅବତାର ଥିଲେ, ତଥାପି ପାପ ପୁଣ୍ୟରୁ ନିର୍ମୁକ୍ତ ଥିଲେ । ସେ ଯେଉଁ କ୍ଷତ୍ରିୟ ବଧ କରିଥିଲେ, ତାହା ଭୂଭାର ଦୂର କରିବା ଉଦ୍ଦେଶ୍ୟରେ କରିଥିଲେ । ଏଥିପାଇଁ ସେ ସିନ୍ଧୁ ଆଜ୍ଞା ଶିରୋଧାର୍ଯ୍ୟ କରି ପାପରେ ନିର୍ଲିପ୍ତ ହୋଇଥିଲେ ମଧ୍ୟ କେବଳ ଲୋକଶିକ୍ଷା ପାଇଁ ସାଧାରଣ ଲୋକଙ୍କ ଭଳି ବହୁତ ପ୍ରାୟଶ୍ଚିତ ଯଜ୍ଞ କରିଥିଲେ । ଏହି କ୍ଷେତ୍ରକୁ ପରମ ପବିତ୍ର କ୍ଷେତ୍ର ଜାଣି ପରଶୁରାମ ଏଠାରେ ଯଜ୍ଞ କରିଥିଲେ । ସମସ୍ତ ପବିତ୍ର ତୀର୍ଥ ଏହି କୁରୁକ୍ଷେତ୍ରରେ ଅବସ୍ଥିତ । ଏଠାରେ ସୂର୍ଯ୍ୟ ପରାଗ ସମୟରେ ସ୍ନାନ କଲେ ମହାପୁଣ୍ୟ ହୁଏ ବୋଲି କିମ୍ବଦନ୍ତୀ ଅଛି । ଏବେ ମଧ୍ୟ ସୂର୍ଯ୍ୟ ପରାଗ କାଳରେ ଲକ୍ଷ ଲକ୍ଷ ନରନାରୀ ଆସି ସ୍ନାନ କରୁଅଛନ୍ତି ।

ସେହି ସମୟରେ ପବିତ୍ର ସ୍ନାନ ଯୋଗ କଥା ଶୁଣି ସବୁ ରାଜ୍ୟରୁ ବହୁଲୋକ ତୀର୍ଥ ସ୍ନାନ କରିବାକୁ ଆସିଥିଲେ । ଅନେକ ରାଜା ନିଜ ନିଜ ପରିବାର ସହିତ ସେଠାରେ

ଆସି ରହିଥିଲେ । ସମସ୍ତ ଯାଦବ ସେମାନଙ୍କ କଣ୍ଠରେ ଦିବ୍ୟ ସୁବର୍ଣ୍ଣର ହାର ପିନ୍ଧିଥିଲେ । ମଣିମୟ ମହା ମୂଲ୍ୟବାନ ହାର ପିନ୍ଧି ସେମାନେ ଅତ୍ୟନ୍ତ ଶୋଭା ପାଉଥିଲେ । ସେମାନେ ଦିବ୍ୟ ବସ୍ତ୍ର ଓ ଦିବ୍ୟ ଆଭୂଷଣ ପିନ୍ଧି କବଚ ଧାରଣ କରି ରଥରେ ବସି ନିଜ ନିଜ ପରିବାର ସହିତ ଦେବତାଙ୍କ ପରି ଶୋଭା ପାଉଥିଲେ । ତୀର୍ଥର ଅନତି ଦୂରରେ ବୃକ୍ଷ ଗୁଳ୍ମ ତଳେ ସେମାନେ ଡେରାପକାଇ ରହିଥିଲେ । ସେଠାରୁ ସମସ୍ତେ ଯାଇ ତୀର୍ଥ ସ୍ନାନ କଲେ । ତୀର୍ଥ ଯାତ୍ରାର ନିୟମ ହେଉଛି, ଯେଉଁ ଦିନ ତୀର୍ଥରେ ପହଞ୍ଚିବ, ସେଦିନ ଉପବାସ କରିବାକୁ ହେବ । ଏଥିପାଇଁ ସମସ୍ତେ ପ୍ରଥମ ଦିନ ଉପବାସ କରିଥିଲେ । ସେ ଦିନ ଦଶହରା ଭିଡ଼ ହୋଇଥିଲା । କେହି କାହାରି ଖବର ରଖି ପାରୁ ନ ଥିଲେ । ଯାଦବମାନେ ସମସ୍ତେ ଧନୀ ଥିଲେ । ସମସ୍ତେ ପରଶୁରାମ କୁଣ୍ଡରେ ଶାସ୍ତ୍ରୀୟ ବିଧିରେ ସ୍ନାନ କଲେ । ବ୍ରାହ୍ମଣଙ୍କୁ ଉତ୍ତମ ମିଷ୍ଟାନ୍ନ ଭୋଜନ ଦେଲେ । ସେମାନଙ୍କୁ ରେଶମୀ ବସ୍ତ୍ର, ସୁଚନ୍ଦନ ପୁଷ୍ପମାଳା ଓ ସୁବର୍ଣ୍ଣ ହାରରେ ବିଭୂଷିତ ହୋଇଥିବା ସୁନ୍ଦର ଶାନ୍ତ ସ୍ୱଭାବର ଗାଈମାନ ଦାନ କଲେ । ସମସ୍ତ କର୍ମ ଶେଷ କରି ସମସ୍ତେ ହାତଯୋଡ଼ି ଏହା ପ୍ରାର୍ଥନା କଲେ ଯେ, ଭଗବାନ ଶ୍ରୀକୃଷ୍ଣଙ୍କଠାରେ ଆମ୍ଭମାନଙ୍କର ଭକ୍ତି ଅତୁଟ ରହୁ ।"

ବ୍ରାହ୍ମଣ ଭୋଜନ କରାଇ ସେମାନଙ୍କୁ ଯଥେଷ୍ଟ ଦାନ ଦକ୍ଷିଣା ଦେଇ ସମସ୍ତେ ଭଗବାନଙ୍କ ଆଜ୍ଞାରେ ଭୋଜନ କଲେ ଓ ଶୀତଳ ବୃକ୍ଷଗୁଳ୍ମ ତଳେ ବିଶ୍ରାମ କଲେ । ତାହାପରେ ସମସ୍ତେ ଭାବିଲେ ଯେ ଯେଉଁ ବନ୍ଧୁ ବାନ୍ଧବ ଜ୍ଞାତି କୁଟୁମ୍ବମାନେ ଏଠାକୁ ଆସିଛନ୍ତି, ସେମାନଙ୍କୁ କିପରି ସାକ୍ଷାତ କରିବେ । ସେମାନେ ଦେଖିଲେ ସହସ୍ର ରାଜା ତୀର୍ଥ ସ୍ନାନ କରିବା ପାଇଁ ବିଭିନ୍ନ ରାଜ୍ୟରୁ ଆସିଛନ୍ତି ଓ ଯୋଜନ ବ୍ୟାପୀ ସେମାନଙ୍କ ଡେରା ପଡ଼ିଛି । ସେମାନଙ୍କ ମଧ୍ୟରୁ ଅନେକ ଯାଦବଗଣଙ୍କର ବନ୍ଧୁ ବାନ୍ଧବ ଥିଲେ । ଅନେକ ନିଜ ପକ୍ଷର ଥିଲେ ଓ ଅନେକ ବିପକ୍ଷୀୟ ଥିଲେ ।

କୌରବ ପାଣ୍ଡବଗଣ ମଧ୍ୟ ତୀର୍ଥ ସ୍ନାନ କରିବାକୁ ଆସିଥିଲେ । ସେମାନେ କିଛିଦିନ ପୂର୍ବରୁ ଏଠାକୁ ଆସିଥିଲେ । କୁରୁକ୍ଷେତ୍ର ତାଙ୍କ ରାଜ୍ୟ ଅନ୍ତର୍ଗତ ଥିଲା । ତେଣୁ ସେଠାରେ ସେମାନେ ମେଳାର ବନ୍ଦୋବସ୍ତ କରିଥିଲେ । କୌରବଙ୍କ ସହିତ ସେମାନଙ୍କ ପତ୍ନୀଗଣ ମଧ୍ୟ ଥିଲେ । ମହାରାଣୀ କୁନ୍ତୀ ମଧ୍ୟ ନିଜ ପୁତ୍ରମାନଙ୍କ ସହିତ ସେଠାକୁ ଆସିଥିଲେ । ସେମାନେ ଯେତେବେଳେ ନିଜର ଭାଇ, ବନ୍ଧୁ, ମାତା, ପିତା ଓ ଅନ୍ୟାନ୍ୟ ସଖା ସୋଦରମାନେ ସେଠାକୁ ଆସିଥିବା ବିଷୟ ଶୁଣିଲେ, ସେତେବେଳେ ସଙ୍ଗେ ସଙ୍ଗେ ପାଲିଙ୍କିରେ ବସି ଯାଦବଙ୍କ ଦେଖିବାକୁ ଆସିଲେ । ଯେତେବେଳେ ଭଗବାନ ସେଠାରେ ନିଜ ପିଉସୀଙ୍କୁ ଦେଖିଲେ, ସେତେବେଳେ ତାଙ୍କ ପାଦ ଛୁଇଁ ପ୍ରଣାମ କଲେ । କୁନ୍ତୀ ମଧ୍ୟ ଭଗବାନଙ୍କ ଶିର ଆଘ୍ରାଣ ପୂର୍ବକ ତାଙ୍କୁ କୋଳାଗତ କଲେ ଓ ଆଶୀର୍ବାଦ ଦେଲେ । ପୁନଶ୍ଚ ସେ ନିଜର ଭାଇ ବସୁଦେବ ଓ ଭାଉଜ ଦେବକୀଙ୍କ ସହିତ ମିଳିତ ହେଲେ । ସମସ୍ତେ କୁନ୍ତୀଙ୍କର ଆଦର ସତ୍କାର କଲେ । ବହୁଦିନ ପରେ ନିଜର ଭାଇ ବସୁଦେବଙ୍କୁ

ଦେଖି କୁନ୍ତୀଙ୍କ ହୃଦୟ ଆନନ୍ଦରେ ଭରିଗଲା । ସେ କାନ୍ଦି କାନ୍ଦି ଲୋଚନରୁ ଲୋତକ ଝରାଇଲେ । ବସୁଦେବ ତାଙ୍କୁ ଅତ୍ୟନ୍ତ ସ୍ନେହରେ କହିଲେ—"ଭଉଣୀ ! ଏଠାରେ ଏପରି କାନ୍ଦିବା ଉଚିତ୍ ନୁହେଁ ।"

କୁନ୍ତୀ କହିଲେ—"ଭାଇ ! ମୁଁ ମୋ ଭାଗ୍ୟକୁ ନିନ୍ଦା କରୁଛି ! ମୋ ପରି ହତଭାଗିନୀ ଆଉ କେହି ନ ଥିବେ । ମୁଁ ଯେତେବେଳେ ଛୋଟ ହୋଇଥିଲି, ସେତେବେଳେ ମୋତେ ମାତାପିତାଙ୍କୁ ଛାଡ଼ି ଅନ୍ୟ ସ୍ଥାନରେ ରହିବାକୁ ପଡ଼ିଥିଲା । ଗୋଟିଏ ସ୍ଥାନରେ ଜନ୍ମ ହୋଇ ଅନ୍ୟ ପିତାମାନଙ୍କ ପାଖରେ ପାଳିତ ହେଲି । ଏଠାକୁ ବଧୂ ହୋଇ ଆସିଲି ଯେ, ଏଠାରେ ମଧ୍ୟ ରାଜ ସୁଖ ଭୋଗ କରି ପାରିଲି ନାହିଁ । ଘୋର ଅରଣ୍ୟ ଦୁର୍ଗମ ପର୍ବତରେ ଆମେ ମୁନିଋଷିଙ୍କ ଭଳି ଜୀବନ କଟାଇଲୁ । ସେଠାରେ ମଧ୍ୟ ମୋ ଭାଗ୍ୟ ଖରାପ ହୋଇଥିବାରୁ ବିଧବା ହେବାକୁ ପଡ଼ିଲା । ଏତେ ଛୋଟ ଛୋଟ ପିଲାଙ୍କୁ ମୋତେ ପାଳନ କରିବାକୁ ପଡ଼ିଲା । ପୁନଶ୍ଚ ମୋ ଉପରେ ବିପତ୍ତିର ବୋଝ ଲଦା ହୋଇଗଲା । ଆପଣ ମୋ ବିପତ୍ତି ସମୟରେ ମଧ୍ୟ ସାହା ହେଲେ ନାହିଁ । ଏଥିପାଇଁ ଅବଶ୍ୟ ମୁଁ ଆପଣଙ୍କ ଦୋଷ ଦେଉ ନାହିଁ । ଆପଣ ତ ସାଧୁ ସ୍ୱଭାବର ଅଟନ୍ତି । ମୋର ଭାଗ୍ୟ ବଡ଼ ଖରାପ ଥିଲା । ଏତେ ସଜ୍ଜନ ଭାଇ ବନ୍ଧୁ ଥାଇ ମଧ୍ୟ ତୁମ୍ଭେମାନେ ମୋତେ ଭୁଲିଗଲ । ମୋର ଦୁଃଖକୁ ଉପେକ୍ଷା କଲ । ଶାସ୍ତ୍ରକାର ଏଥିପାଇଁ କହିଛନ୍ତି—"ବିଧାତା ଯାହାକୁ ବାମ ହୁଏ, ତାହାର ପିତା ମାତା, ଭ୍ରାତା, ସୁତ, ସୁହୃଦ ଓ ସମସ୍ତ ସ୍ୱଜନ ତାକୁ ଭୁଲି ଯାଆନ୍ତି । କେହିହେଲେ ପଦେ କଥା ବି କହନ୍ତି ନାହିଁ । ମୋର ଭାଗ୍ୟ ଖରାପ ନ ହୋଇଥିଲେ ତୁମ୍ଭମାନଙ୍କ ପରି ସର୍ବ ସମର୍ଥ ଭାଇ ବନ୍ଧୁ ଥାଇ ମଧ୍ୟ ମୋ ଦୁଃଖ ଦୂର ହୋଇ ପାରିଲା ନାହିଁ । ମୁଁ କ'ଣ ତୁମର ସହୋଦର ଭଉଣୀ ନୁହେଁ ? ତୁମ୍ଭ ସହାନୁଭୂତିର ଅଧିକାରିଣୀ ନୁହେଁ ?"

ନିଜ ଭଉଣୀ କୁନ୍ତୀର ଏପରି ମର୍ମସ୍ପର୍ଶୀ କରୁଣ କାହାଣୀ ଶୁଣି ବସୁଦେବ କହିଲେ—"ଭଉଣି ! ତୁମେ ଏପରି ଦୁଃଖ କରନାହିଁ । ଏ ସଂସାରରେ କେହି କାହାକୁ ଦୁଃଖ ଦେଇ ପାରେ ନାହିଁ କିମ୍ବା କେହି କାହା ଦୁଃଖ ନେଇ ପାରେ ନାହିଁ । ଆମେ ସମସ୍ତେ କ୍ରୀଡ଼ନକ । ସେ ଯାହାକୁ ଯେଉଁଠି ଥୋଇ ରଖି ଦିଅନ୍ତି, ସେ ସେହିଠାରେ ରହେ । ସେ ଯାହା ସଙ୍ଗେ ଖେଳିବାକୁ ଚାହାନ୍ତି, ତାହା ସହିତ ଖେଳନ୍ତି । ଆମେ ସମସ୍ତେ ଅବଶ । ପରବଶ ହୋଇ ଆମେ ଯନ୍ତ୍ରଭଳି କାର୍ଯ୍ୟ କରୁଅଛୁ । ଯନ୍ତ୍ରୀର ଯେପରି ଇଚ୍ଛା ସେ ଆମକୁ ସେପରି ନାନା ପ୍ରକାର କର୍ମରେ ପ୍ରବୃତ୍ତ କରୁଛି । ଏହା ପ୍ରକୃତ ସତ କଥା ଯେ, ଆମେ ସମସ୍ତେ ଏ ପର୍ଯ୍ୟନ୍ତ ଏ ପରିସ୍ଥିତିରେ ଥାଇଁ, ଇଚ୍ଛା ଥିଲେ ମଧ୍ୟ ମୁଁ ତୁମ୍ଭମାନଙ୍କ ପ୍ରତି କ୍ରିୟାତ୍ମକ ସହାନୁଭୂତି ପ୍ରଦର୍ଶନ କରି ପାରିଲି ନାହିଁ ।"

କୁନ୍ତୀ କହିଲେ—"ହଁ, ଭାଇ ! ଏ ସବୁ ତ ଭାଗ୍ୟର ଖେଳ । ତାହା ନ ହୋଇଥିଲେ ମୋର ସହୋଦର ଭାଇ ସର୍ବ ସମର୍ଥ ହୋଇ ମଧ୍ୟ ମୋତେ କିପରି ଭୁଲି

ଯାଇ ଥାଆନ୍ତେ । ଏଥିରେ ଭାଗ୍ୟ ବ୍ୟତୀତ ଅନ୍ୟ କାହାରିକୁ ଦୋଷ ଦିଆଯାଇ ନ ପାରେ ।”

ବସୁଦେବ କହିଲେ—“ଆଚ୍ଛା, ଭ୍ରାତ ନନ୍ଦ ! ମୁଁ ଏପରି କେଉଁ ସମୟରେ ଭଲ ସ୍ଥିତିରେ ରହିଲି ଯେ ତୋତେ ସାହାଯ୍ୟ କରିବାକୁ ଆସି ପାରିଲି ନାହିଁ ? ଯେଉଁ ଦିନଠାରୁ ତୋର ଭାଇନା ଆସିଲେଣି, ସେହିଦିନରୁ ତ ତୁ ଜାଣୁ କଂସ ଆମକୁ କ୍ଳେଶ ଦେଇ ଦେଇ ଆସିଛି । ଆମର ଜାତି ଭାଇବନ୍ଧୁ, ବନ୍ଧୁ ଦେଶରେ ଲୁଚିଛପି ରହି ଦିନ କାଟୁଛନ୍ତି । ଆମେ ସର୍ବଦା କୃଷ୍ଣଙ୍କୁ ରକ୍ଷାକରିବାର ଚିନ୍ତାରେ ବ୍ୟସ୍ତଥିଲୁ, ଯଦିଚ ଆମେ ତାଙ୍କୁ ଆମ ନନ୍ଦ ଗୋକୁଳର ନନ୍ଦ ଘରେ ଲୁଚାଇ ରଖିଥିଲୁ, ତଥାପି ତ ଭୟ ଲାଗି ରହିଥିଲା । କୌଣସି ପ୍ରକାରେ ଦୁଷ୍ଟ କଂସକୁ କୃଷ୍ଣ ମାରିଲା । ପୁନଶ୍ଚ ତାହାର ଶ୍ୱଶୁର ଜରାସନ୍ଧ ଆମ ପଛରେ ଲାଗିଗଲା । ସତର ଥର ଅଗଣିତ ସେନାନେଇ ସେ ଆମ୍ଭମାନଙ୍କ ଉପରେ ଆକ୍ରମଣ କଲା । ଅଠର ଥର ବେଳକୁ ଆମେ ଆମ ପୈତୃକ ରାଜ୍ୟଛାଡ଼ି ଦ୍ୱାରକା ପଳାଇ ଆସିଲୁ । ଦ୍ୱାରକାକୁ ଆସି ମଧ୍ୟ ଏହି ଅଳ୍ପ କେତେଦିନ ହେଲା ଟିକିଏ ନିଃଶ୍ୱାସ ନେଉଛୁ । ଏଠାରେ ଈଶ୍ୱରଙ୍କ କୃପାରୁ ତୁମ୍ଭମାନଙ୍କ ସହିତ ହଠାତ୍ ଭେଟ ହୋଇଗଲା । ଏବେ ତୁ ଯାହା କହିବୁ ମୁଁ ତାହା କରିବାକୁ ପ୍ରସ୍ତୁତ ଅଛି । ଏ ସବୁ ଆମ ଭାଗ୍ୟର ବିଡ଼ମ୍ବନା । କିଏ ଅବା କାହାକୁ ସାହାଯ୍ୟ କରିପାରିବ ? ଯାହାକୁ ସାପ କାମୁଡ଼ି ଧରିଛି, ସେ କିପରି ଅନ୍ୟକୁ ସର୍ପ କବଳରୁ ରକ୍ଷା କରିବାକୁ ସକ୍ଷମ ହେବ ?”

ସୂତ କହିଲେ—“ମୁନିଗଣ ! ଭାଇ ଭଉଣୀ ଦୁହେଁ ଏହିପରି ନିଜ ନିଜର କ୍ଷୋଭ ପ୍ରକାଶ କରି ଦୁଃଖଦାୟକ ଘଟଣା କଥାବାର୍ତ୍ତା ହେଉଥିବା ସମୟରେ ସେବକ ଆସି ସମ୍ବାଦ ଦେଲା—“ବାହାରର ବହୁତ ରାଜା ମହାରାଜାଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଛନ୍ତି !” ଏହା ଶୁଣିବା ମାତ୍ରେ ବସୁଦେବ ସଙ୍ଗେ ସଙ୍ଗେ ଉଠି ବାହାରକୁ ଆସିଲେ । ବାହାରକୁ ଆସି ଦେଖିଲେ ଯେ ବହୁତ ରାଜା, ରାଜପୁତ୍ର ସପରିବାର ମହାରାଜା ଉଗ୍ରସେନ ଓ ସମସ୍ତ ଯାଦବଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଅଛନ୍ତି । ସେମାନଙ୍କ ମଧ୍ୟରେ ଭୀଷ୍ମ ପିତାମହ, ଦ୍ରୋଣାଚାର୍ଯ୍ୟ, ଗାନ୍ଧାରୀ, ଦୁର୍ଯ୍ୟୋଧନାଦି କୌରବଗଣ ଓ ମହାରାଜ ଧୃତରାଷ୍ଟ୍ର, ପାଣ୍ଡବ, ସଞ୍ଜୟ, ବିଦୁର, କୃପାଚାର୍ଯ୍ୟ କୁନ୍ତୀଭୋଜ, ବିରାଟ, ଭୀଷ୍ମକ, ନଗ୍ନଜିତ୍, ପୁରୁଜିତ ଦ୍ରୁପଦ, ଶଲ୍ୟ, ଧୃଷ୍ଟକେତୁ, କାଶୀରାଜ, ଦମଘୋଷ, ବିଶାଳାକ୍ଷ, ଯୁଧାମନ୍ୟୁ, ସୁଶର୍ମା, ବାହ୍ଲିକ ଆଦି ମୁଖ୍ୟ ରାଜନ୍ୟବର୍ଗ ସେମାନଙ୍କ ପରିବାର ସହିତ ଆସିଥିଲେ । ଏମାନଙ୍କ ବ୍ୟତୀତ ଆହୁରି ଅନେକ ରାଜା ବାସୁଦେବ ଓ ବଳରାମଙ୍କୁ ଦର୍ଶନ କରିବାକୁ ଆସିଥିଲେ । ଭଗବାନ୍ ଶ୍ରୀକୃଷ୍ଣ ମେଳାରେ ଆସି ପହଞ୍ଚିବା ମାତ୍ରେ ଚାରିଆଡ଼େ ହୁଲ୍ଲୁର ହୋଇଗଲା । ଲକ୍ଷ ଲକ୍ଷ ନରନାରୀ ନିତ୍ୟ ଦର୍ଶନକୁ ଆସୁଥିଲେ । ପ୍ରାୟ ପ୍ରତ୍ୟେକ ରାଜା ରାଣୀମାନଙ୍କୁ ସଙ୍ଗରେ ଆଣିଥିଲେ । ସମସ୍ତେ ଭଗବାନ ଶ୍ରୀକୃଷ୍ଣଙ୍କୁ

ଦର୍ଶନ କରି ପରମ ବିସ୍ମିତ ହେଲେ । ସ୍ତ୍ରୀଲୋକମାନେ ତ ଭିତରକୁ ସ୍ତ୍ରୀଲୋକମାନଙ୍କ ନିକଟକୁ ଚାଲିଗଲେ ! ପୁରୁଷମାନଙ୍କୁ ବଳରାମଙ୍କ ସହିତ ଭଗବାନ ବାସୁଦେବ ହାର୍ଦ୍ଦିକ ସ୍ୱାଗତ କଲେ । ସେମାନଙ୍କୁ ନିଜ ନିଜର ଯୋଗ୍ୟତା ଅନୁସାରେ ଆସନ ଦେଲେ ଓ ମଧୁର ବଚନରେ ଓ ପୂଜା ସାମଗ୍ରୀରେ ସେମାନଙ୍କର ସ୍ୱାଗତ ସତ୍କାର କଲେ । ଭଗବାନ ଅଚ୍ୟୁତଙ୍କର ଦେବଦୁର୍ଲଭ ଦର୍ଶନ ଲାଭକରି ସମସ୍ତେ ପରମ ସନ୍ତୁଷ୍ଟ ହେଲେ । ସେମାନେ ନିଜ ନିଜର କୃତଜ୍ଞତା ପ୍ରକାଶ କରି ଓ ଯାଦବଗଣଙ୍କର ସୌଭାଗ୍ୟର ପ୍ରଶଂସା କରି ଉଗ୍ରସେନଙ୍କୁ କହିବାକୁ ଲାଗିଲେ—"ହେ ଯାଦବେନ୍ଦ୍ର ! ଏହିପରି ସଂସାରରେ ତ ନିତ୍ୟ ଅସଂଖ୍ୟ ଜୀବ ଜନ୍ମ ନେଉଛନ୍ତି; କିନ୍ତୁ ବାସ୍ତବରେ କହିବାକୁ ଗଲେ ଆପଣଙ୍କ ପରି ଲୋକ ଜନ୍ମନେବା ସାର୍ଥକ । ମାନବ ଜନ୍ମର ଫଳ ତ ଆପଣ ପାଇଗଲେ ।

ଉଗ୍ରସେନ କହିଲେ—"ରାଜନ୍ୟବର୍ଗ ! ମୁଁ ଆପଣମାନଙ୍କ ଆଗରେ କିବା ଲୋକ ! ସମୁଦ୍ର ମଝିରେ ବାସକରି କୌଣସି ପ୍ରକାରେ ମୁଁ ଦିନ କାଟୁଛି ।"

ରାଜାମାନେ କହିଲେ—"ମହାରାଜ ! ସମସ୍ତେତ ଦିନ କାଟୁଛନ୍ତି । କିନ୍ତୁ ପ୍ରଭେଦ ଏତିକି ଯେ, ଆମ୍ଭେମାନେ ବିଷୟର କୀଟ ହୋଇ ସମୟ କାଟୁଛୁ । ଆପଣଙ୍କ ଭାଗ୍ୟ ସମ୍ବନ୍ଧରେ କହିବା ବାହୁଲ୍ୟ ହେବ । ଯେଉଁ ଶ୍ୟାମସୁନ୍ଦରଙ୍କ ଦର୍ଶନ ବଡ଼ ବଡ଼ ଯୋଗୀ ଋଷିମାନଙ୍କ ପାଇଁ ଦୁର୍ଲଭ, ସେହି ଅଚ୍ୟୁତ, ଅଖିଳେଶ ଭଗବାନ ବାସୁଦେବଙ୍କୁ ଆପଣମାନେ ନିରନ୍ତର ଦର୍ଶନ କରୁଛନ୍ତି । ଭଗବାନଙ୍କ ପ୍ରତ୍ୟକ୍ଷ ଦର୍ଶନ, ସ୍ପର୍ଶ ଓ ଏକ ସଙ୍ଗେ ବାସ ସମ୍ବନ୍ଧରେ ତ କିଛି କୁହାଯାଇ ନପାରେ । ବେଦରେ ଯାହାଙ୍କର କୀର୍ତ୍ତି ଗାନ କରାଯାଇଛି, ସେହି ଦେବ ଗାନକରି ମନୁଷ୍ୟ ଏ ଭବସାଗର ପାରହୋଇ ଯାଉଛନ୍ତି । ଯାହାଙ୍କ ଚରଣରୁ ଭଗବତୀ ଗଙ୍ଗା ବାହାରି ଅଛନ୍ତି ଓ ସେହି ଗଙ୍ଗାଜଳରେ ସ୍ନାନ କରି ଜୀବ ପାପମୁକ୍ତ ହେଉଛନ୍ତି । ଶାସ୍ତ୍ରରେ ବର୍ଣ୍ଣିତ ଯାହାଙ୍କ ଲୀଳାରସ ଆସ୍ୱାଦନ କରି ସାରା ଜଗତବାସୀ ସମ୍ପୂର୍ଣ୍ଣରୂପେ ପବିତ୍ର ହୋଇ ପାରୁଛନ୍ତି, ଆପଣମାନେ ସ୍ୱୟଂ ସେହି ଭଗବାନଙ୍କୁ ନିତ୍ୟ ଦର୍ଶନ କରି ଦିନ କାଟୁଛନ୍ତି । ତେଣୁ ଆପଣମାନଙ୍କଠାରୁ ବଳି ମହା ଭାଗ୍ୟବାନ ଆଉ କିଏ ହୋଇପାରେ ? ବ୍ରହ୍ମାଦି ଦେବ ମଧ୍ୟ ଆପଣମାନଙ୍କ ଭାଗ୍ୟରେ ପ୍ରଶଂସା କରିବାକୁ ସକ୍ଷମ ହୋଇ ନପାରନ୍ତି । ଦେଖନ୍ତୁ କାଳ କ୍ରମରେ ଶକ୍ତିହୀନ, ଭାଗ୍ୟହୀନ ହୋଇଥିବା ଭୂମି ମଧ୍ୟ ଆଜି ଯାହାଙ୍କ ଚରଣକମଳ ସ୍ପର୍ଶରେ ଉର୍ବରା ଓ ସୌଭାଗ୍ୟଶାଳିନୀ ହୋଇ ପାରିଛି, କେବଳ ତାଙ୍କର ଚରଣ ଧୂଳି ପଡ଼ିବା ମାତ୍ରେ ଯେଉଁ ଭୂମିର ସବୁ ପ୍ରକାର ଶକ୍ତି ଆସିଯାଏ, ସବୁ ପ୍ରକାର ପଦାର୍ଥ ଉତ୍ପନ୍ନ କରିବାରେ ସେ ସମର୍ଥ ହୋଇଯାଏ, ସେହି ଚରଣ ଧୂଳିକୁ ଆପଣମାନେ ନିତ୍ୟ ପାଉଛନ୍ତି । ଏଥିପାଇଁ ଆପଣମାନେ ତ ପରମହଂସ ମୁନିମାନଙ୍କଠାରୁ ଶ୍ରେଷ୍ଠ ଅଟନ୍ତି । ଆପଣମାନେ ଯଦିଚ ଗୃହସ୍ଥାଶ୍ରମରେ ଅଛନ୍ତି, ତଥାପି ଆପଣମାନେ ନିର୍ଲିପ୍ତ । ଆପଣମାନଙ୍କ ଘରେ ଛ

ସ୍ୱର୍ଗ ଓ ଅପବର୍ଗର ଦାତା ଦୟାସାଗର ଶ୍ରୀମନ୍ନାରାୟଣ ବିରାଜମାନ । ଏଣୁ ଆପଣମାନଙ୍କଠାରୁ ବଳି ସଂସାରରେ ଆଉ ଭାଗ୍ୟବାନ କିଏ ଅଛୁ ?''

ଉଗ୍ରସେନ କହିଲେ—''ଏ ସବୁ ତ ଆପଣମାନଙ୍କର ଆଶୀର୍ବାଦ । ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପଛରେ ତ ଆମ ସମସ୍ତଙ୍କୁ ଆପଣମାନଙ୍କ ଦର୍ଶନ ମିଳିଗଲା । ତା ନ ହୋଇଥିଲେ ଆମ୍ଭେମାନେ କପରି ରାଜାମାନଙ୍କ ସହିତ ଏକତ୍ର ବସିବାର ଅଧିକାର ପାଇପାରୁ ଥାଆନ୍ତୁ ? ଶ୍ରୀକୃଷ୍ଣ ସର୍ବସମର୍ଥ ଅଟନ୍ତି, ସେ ଯାହା ଚାହାନ୍ତି ତାହା କରିପାରନ୍ତି । ଯାହାଙ୍କର ଯାହା ଆବଶ୍ୟକ ତାହା କରିପାରନ୍ତି ।''

ସୂତ କହିଲେ—''ମୁନିଗଣ ! ରାଜାମାନେ ଏହି ପ୍ରକାର କହୁଥିବା ସମୟରେ ତନ୍ମଧ୍ୟରୁ କେତେକ ଉଗ୍ରସେନଙ୍କ ଅନୁମତି ନେଇ ଭଗବାନଙ୍କ ପାଦପଦ୍ମରେ ପ୍ରଣାମ କରି ଚାଲିଗଲେ । ଯେତେକ ରହିଲେ ସେମାନେ ଯାଦବଙ୍କ ପାଖରେ ଅଟକିଗଲେ ।

ପରିଗସ୍ନାନ ଇଚ୍ଛାରେ ବ୍ରଜରାଜ ନନ୍ଦ ମହାରାଜ ମଧ୍ୟ ନିଜର ସମସ୍ତ ଗୋପାଳ ଓ ଗୋପୀଗଣଙ୍କୁ ସଙ୍ଗରେ ଅଣି କୁରୁକ୍ଷେତ୍ରକୁ ଆସିଥିଲେ । ସେମାନେ ସ୍ନାନ ଦିନ ଆସି ଏଠାରେ ପହଞ୍ଚିଲେ । ତେଣୁ ସଙ୍ଗେ ସଙ୍ଗେ ସବୁ ଶଗଡ଼କୁ କୂଳରେ ରଖି ସ୍ନାନ କରିବାକୁ ଗଲେ । ସ୍ନାନ ସାରି ଆସିବା ପରେ ଏହି ପ୍ରଶ୍ନ ଉଠିଲା ଯେ, ସେମାନେ କେଉଁଠାରେ ଡେରା ପକାଇବେ ? ସେହି ସମୟରେ କେହି ଜଣେ ଶୁଣିବାକୁ ପାଇଲେ ଯେ, ଦ୍ୱାରକାରୁ ଯାଦବମାନେ ଆସିଛନ୍ତି । ବସୁଦେବ, ଶ୍ରୀକୃଷ୍ଣ, ବଳରାମ ଓ ଅନ୍ୟାନ୍ୟ ସମସ୍ତେ ଆସିଛନ୍ତି । ଏହି ସମାଚାରକୁ ଶୁଣି ଯଶୋଦା ପ୍ରେମରେ ବିହ୍ୱଳ ହୋଇପଡ଼ିଲେ । ସେ ନନ୍ଦଙ୍କୁ କହିଲେ —''ବ୍ରଜରାଜ ! ଆଗେ ଚାଲନ୍ତୁ କାହ୍ନୁଆ ଓ ବଳିଆଙ୍କୁ ଦେଖି ଆସିବା । ଆମେ ଏଠାରେ ଯେତେଦିନ ରହିବା, ସେତେଦିନ ତାଙ୍କ ପାଖରେ ରହିବା ।'' ଏହି କଥାକୁ ସମସ୍ତେ ସମର୍ଥନ କଲେ । ନନ୍ଦ ମଧ୍ୟ ଏହାହିଁ ଚାହୁଁଥିଲେ । ତେଣୁ ସେ ଶଗଡ଼ଆଙ୍କୁ ଡକାଇ ଲୋକମାନଙ୍କୁ ଯାଦବଙ୍କ ଡେରା କେଉଁଠି ପଡ଼ିଛି ପଚାରି ଶଗଡ଼ରେ ବସି ସେଠାରେ ଯାଇ ପହଞ୍ଚିଲେ । ସେମାନେ ହଜାର ହଜାର ଶଗଡ଼ରେ ଆସିଥିଲେ । ସେଥିରେ ଆବଶ୍ୟକୀୟ ସମସ୍ତ ଦ୍ରବ୍ୟ ମଧ୍ୟ ଆସିଥିଲା । ଦୂରରୁ ସେମାନଙ୍କ ଶଗଡ଼ଗୁଡ଼ିକୁ ଦେଖି ସମସ୍ତ ଯାଦବ ନିଜ ନିଜ ଡେରାରୁ ବାହାରି ଆସିଲେ । ସେମାନେ ଗୋପୀ ଗୋପାଳମାନଙ୍କୁ ଦେଖି ଏତେ ଆନନ୍ଦିତ ହେଲେ ଯେ, ସତେ ଯେପରି ମୃତ ଦେହରେ ପ୍ରାଣ ପଶିଲେ ମୃତ ବ୍ୟକ୍ତି ନୂତନ ଜୀବନ ଲାଭକରି ଆନନ୍ଦିତ ହୁଏ । ସମସ୍ତେ ଅନେକ ଦିନରୁ ଇଚ୍ଛା କରିଥିଲେ ଯେ, ସେମାନେ ସୁବିଧା ଦେଖି ବ୍ରଜବାସୀ ଗୋପଗୋପୀମାନଙ୍କୁ ଦର୍ଶନ କରିବାକୁ ଯିବେ । ଆଜି ସହସା ସେମାନେ ଗୋପ ଗୋପୀମାନଙ୍କୁ ଦେଖି ଆନନ୍ଦ

ସାଗରରେ ବୁଡ଼ିଗଲେ । ବସୁଦେବ ଧାଇଁ ଯାଇ ନନ୍ଦଙ୍କୁ ଆଲିଙ୍ଗନ କଲେ । ଉଭୟେ ଉଭୟଙ୍କୁ ଦୃଢ଼ ଆଲିଙ୍ଗନ କରି ହୃଦୟରେ ଚାପିଧରିଲେ । ସେହି ସମୟରେ ବସୁଦେବଙ୍କ ନେତ୍ର ସମ୍ମୁଖରେ ସେହି ଦୃଶ୍ୟ ପ୍ରତ୍ୟକ୍ଷରେ ଦେଖାଗଲା ଯେ, ସେଦିନ ସେ କଂସଦ୍ୱାରା ଦିଆଯାଇଥିବା ଦଣ୍ଡଜନିତ କ୍ଲେଶ କାରଣରୁ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ଥିଲେ । ତାଙ୍କୁ ଯେତେବେଳେ ପୁତ୍ରକୁ ରକ୍ଷା କରିବାର ଅନ୍ୟ କୌଣସି ଉପାୟ ଦେଖାଯାଇ ନଥିଲା, ସେତେବେଳେ ସେ ରାତି ଅଧରେ ତାକୁ ନେଇ ନନ୍ଦରାଜାଙ୍କ ବ୍ରଜଧାମ ଗୋକୁଳକୁ ଯାଇଥିଲେ । ଏହିସବୁ ଘଟଣା ସ୍ମରଣ ହେବା ମାତ୍ରେ ବସୁଦେବଙ୍କ ହୃଦୟ ଦ୍ରବିତ ହୋଇ ତାହା ଜଳ ଆକାରରେ ନୟନରୁ ବହିବାକୁ ଲାଗିଲା ।

ଭଗବାନ ରାମ ଓ କୃଷ୍ଣ ସେହି ସମୟରେ ବାହାରେ ବୁଲି ମେଳା ଦେଖୁଥିଲେ । ସେ ଦୁହେଁ ଯେତେବେଳେ ନନ୍ଦଙ୍କର ଆଗମନ ବାର୍ତ୍ତା ଶୁଣି ପାରିଲେ, ସଙ୍ଗେ ସଙ୍ଗେ ଶ୍ରେଷ୍ଠ ପିଲାଙ୍କ ଭଳି ଦୌଡ଼ି ଦୌଡ଼ି କୁଦାମାରି ନନ୍ଦ ତେମ୍ବୁ ନିକଟରେ ଆସି ପହଞ୍ଚିଲେ ଓ ପିତା ନନ୍ଦ ଏବଂ ମାତା ଯଶୋଦାଙ୍କ ଚରଣରେ ଲୋଟିଗଲେ ଏବଂ ରୋଦନ କରିବାକୁ ଲାଗିଲେ । ନିଜର ପିଲାଙ୍କୁ ଏ ପ୍ରକାର କାନ୍ଦୁଥିବାର ଦେଖି ନନ୍ଦ ଯଶୋଦାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ସେ ଦୁହେଁ ଦୁହିଁଙ୍କୁ କୋଳରେ ଧରି ବସିପଡ଼ିଲେ ଏବଂ ହାତରେ ତାଙ୍କ ଲୁହ ପୋଛିବାରେ ଲାଗିଲେ । ସେମାନଙ୍କ ନେତ୍ରରୁ ଅଶ୍ରୁ ଝରି ରାମ ଓ କୃଷ୍ଣଙ୍କର ତନୁ ଭିଜିଗଲା । ସେହି ଦୃଶ୍ୟ ଅତ୍ୟନ୍ତ କରୁଣ ଥିଲା । ସେଠାରେ ଯେତେ ଦର୍ଶକ ଠିଆ ହୋଇଥିଲେ, ସମସ୍ତେ କ୍ରନ୍ଦନ କରିବାକୁ ଲାଗିଲେ । ଭଗବାନ ଶ୍ରୀକୃଷ୍ଣ କିଛି କହିବାକୁ ଚାହୁଁଥିଲେ; କିନ୍ତୁ ତାଙ୍କ କଣ୍ଠ ରୁଦ୍ଧ ହୋଇ ଯାଉଥିବାରୁ କହି ପାରୁ ନଥିଲେ । ନନ୍ଦ ଓ ଯଶୋଦା ସେ ଦୁହିଁଙ୍କୁ ସେହିପରି କୋଳରେ ବସାଇ ହୃଦୟରେ ଜାକି ଧରିଲେ । ଏ ଦୁହେଁ ମଧ୍ୟ ଅବୋଧ ଶିଶୁଙ୍କ ଭଳି କାନ୍ଦୁଆଥାନ୍ତି ଓ ପିତାମାତାଙ୍କୁ ପିଲାଙ୍କପରି କାବୁଡ଼ିଧରି ଥାଆନ୍ତି । ପିତାମାତାଙ୍କର ଯେତେବେଳେ କୋହ ବନ୍ଦ ହେଲା ଓ ଦୁଃଖ ଅଶ୍ରୁ ଟିକ ବନ୍ଦ ହେଲା, ସେତେବେଳେ ସେ ଦୁହେଁ ବିରହଜନିତ ଦୁଃଖ ଅଶ୍ରୁରୂପରେ ବହିସିବାରୁ ପ୍ରେମରେ ବିହ୍ୱଳ ହୋଇ ପଡ଼ିଲେ । ତାହାପରେ ନନ୍ଦ ଗୋପାଳମାନଙ୍କ ସହିତ ପୁରୁଷମାନେ ରହୁଥିବା ତେମ୍ବୁ ଭିତରକୁ ଗଲେ ଓ ଯଶୋଦା ଗୋପିମାନଙ୍କୁ ସଙ୍ଗରେ ନେଇ ଅନ୍ତଃପୁର ତେମ୍ବୁ ମଧ୍ୟରେ ଥିବା ରାଣୀମାନଙ୍କ ପାଖକୁ ଗଲେ । ଏହାପରେ ଯେପରି ଗୋପୀ ଓ ଯାଦବ ପତ୍ନୀଗଣଙ୍କର ଭେଟ ହେଲା, ତାହା ପରବର୍ତ୍ତୀ ଅଧ୍ୟାୟରେ ମୁଁ ବର୍ଣ୍ଣନା କରିବି ।

## ଛପ୍ପୟ

ରାମକୃଷ୍ଣ ନେ ଦୌର ନନ୍ଦ ଯଶୂମତି ପଗ ପକରେ ।
ଶିଶୁ ସମ ଗୋଦ ବଠାଇ ପୁତ୍ର କସି କେ ହିୟ ଜକରେ ॥
ଉମଡ଼ି ନୟନ ଜଲଧାର ବହେ କରୁନା ଘବସନୀ ।
ଭୟେ କଣ୍ଠ ଅବରୁଦ୍ଧ ନ ନିକସୈ ମୁଖତେଂ ବାନୀ ॥
ମାତୃ ପିତାକୀ ଗୋଦମହଁ, ଖେଲତ ଶିଶୁ ସମ ଶ୍ୟାମ ବଲ ।
ପଟ ଭିଗବତ ସିସକତ ଲପିଟି, ପୁନ-ପୁନ ପୋଂଛତ ନୟନ ଜଲ ॥



# ଯଶୋଦାଙ୍କର
# ଦେବକୀ ଓ ରୋହିଣୀ ଆଦିଙ୍କ
# ସହିତ ଭେଟ

ରୋହିଣୀ ଦେବକୀ ଚାଥ ପରିଷ୍ୱଜ୍ୟ ବ୍ରଜେଶ୍ୱରୀମ୍ ।
ସ୍ମରନ୍ତ୍ୟୌ ତତ୍‌କୃତାଂ ମୈତ୍ରୀଂ ବାଷ୍ପକଣ୍ଠ୍ୟୌ ସମୂଚତୁଃ ॥
କା ବିସ୍ମରେତ ବାଂ ମୈତ୍ରୀମନିବୃତ୍ତାଂ ବ୍ରଜେଶ୍ୱରି ।
ଅବାପ୍ୟାପ୍ୟୈନ୍ଦ୍ରମୈଶ୍ୱର୍ଯ୍ୟଂ ଯସ୍ୟା ନେହ ପ୍ରତିକ୍ରିୟା ॥ *

(ଶ୍ରୀ ଭା. ୧୦ ସ୍କ. ୮୨ ଅ. ୩୭-୩୮ ଶ୍ଳୋକ)

## ଛପ୍‌ପୟ

ଶାନ୍ତ ହୁୟୋ ଆବେଗ ଯଶୋଦା ଭୀତର ଆଇଂ ।
ଦୌର ଦେବକୀ ଔର ରୋହିନୀ ହୃଦୟେ ଲଗାଇଂ ॥
କର କର ପିଛଲୀ ୟାଦ ଅଧିକ ଆଦର ଜତାବେଂ ।
'ହୈ ତୁମରୀ ସୁତ ବଧୂ' ସବନକେ ନାମ ବତାବେଂ ॥
ରାମ ଶ୍ୟାମକୀ ବହୁନ କୁଁ, ଲଖି ପ୍ରମୁଦିତ ଯଶୁମତି ଭଇଂ ।
ନାଚୀ ବେଟା ହୋହୁଁ ବହୁ, ମାତୁ ସବନ ଆଶିଷ ଦଇଂ ॥

---

* ଦେବକୀ ରୋହିଣୀ ଆନନ୍ଦେ । ଛନ୍ଦେ ଲଗାଇ ହୃଦ ହୃଦେ ॥
ଗର୍ଭରେ ଆଲିଙ୍ଗନ କରି । ମିତ୍ର ସ୍ୱଭାବେ ବ୍ରଜେଶ୍ୱରୀ ॥
ବିପଦକାଳେ ମିତ୍ର ଗୁଣ । ଶୋକେ ସୁମରି ପୁଣ ପୁଣ ॥
ବୋଲନ୍ତି ଯଶୋଦାକୁ ଚାହିଁ । କସ ଉପମା ଦେବି ମୁହିଁ ॥
ଇନ୍ଦ୍ର ସମ୍ପଦ ସୁଖ ଭୁଞ୍ଜି । ନେ ପାରୁ ତୁମ୍ଭ ଋଣ ଶୁଝି ॥

(ଭାଗବତ : ଜଗନ୍ନାଥ ଦାସ ; ୧୦ମ ସ୍କ. ୮୮ ଅ.)

ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଅଧିକ । ସେମାନଙ୍କ ହୃଦୟ ମଧ୍ୟ ଅଧିକ କୋମଳ । ତେଣୁ ସେମାନେ ଯେତେବେଳେ ପରସ୍ପର ମଧ୍ୟରେ ବହୁ ଦିନ ପରେ ମିଳିତ ହୁଅନ୍ତି, ସେତେବେଳେ ଦହୁ ସମୟ ଧରି ହୃଦୟ ଖୋଲି କଥାବାର୍ତ୍ତା ହୁଅନ୍ତି ଓ କ୍ରନ୍ଦନ ମଧ୍ୟ କରନ୍ତି । ଯଦି ଅନ୍ୟ କେହି ଆସି ତାଙ୍କୁ ବୋଧଶୋଧ କରାଇ ନିବୃତ୍ତ କରନ୍ତି, ତାହାହେଲେ ଯାଇ ସେମାନେ ପୁନଶ୍ଚ ମିଳିତ ହୋଇ ପରସ୍ପରଠାରୁ ପୃଥକ୍ ହୋଇ ଆସନ୍ତି । ତଥାପି ଆଗେଇ ଆସି ଉଭୟେ ଉଭୟଙ୍କର ଲୁହ ପୋଛି ଏଣୁ ତେଣୁ କଥାବାର୍ତ୍ତା ହୁଅନ୍ତି । ଦୁଇ ଶ୍ରେଣୀ କମ୍ପା ସାଙ୍ଗଙ୍କ ମଧ୍ୟରେ ବହୁଦିନ ଧରି ବିଚ୍ଛେଦ ପରେ ଯେଉଁ ମିଳନ ହୁଏ, ତାହା ଏକ ପରମ ଦର୍ଶନୀୟ ଦୃଶ୍ୟ ହୋଇଥାଏ ।

ସୂତ କହିଲେ—"ମୁନିଗଣ ! ନନ୍ଦ ମହାରାଜ ତ ବାହାରେ ରହିଥିଲେ, ଯଶୋଦା ଗୋପିଗଣଙ୍କ ସହିତ ଅନ୍ତଃପୁରର ସ୍ତ୍ରୀଲୋକମାନଙ୍କ ପାଖକୁ ଯାଇଥିଲେ । ଯେତେବେଳେ ଦେବକୀ ଓ ରୋହିଣୀ ଯଶୋଦାଙ୍କ ଆଗମନ ସମାଚାର ଶୁଣିଲେ, ସେତେବେଳେ ସେ ଦୁହେଁ ତାଙ୍କ ନିକଟକୁ ଧାଇଁ ଆସିଲେ । ଦେବକୀ ଯଶୋଦାଙ୍କୁ ଏ ପର୍ଯ୍ୟନ୍ତ ଆଉ ଦେଖି ନଥିଲେ । ରୋହିଣୀ ତ ସେଠାରେ ରହି ଆସିଥିଲେ । ତେଣୁ ପ୍ରଥମେ ରୋହିଣୀ ଯାଇ ଯଶୋଦାଙ୍କୁ ସ୍ୱାଗତ ଜଣାଇଲେ । ପରସ୍ପର ଦର୍ଶନ ମାତ୍ରେ ଆନନ୍ଦରେ ଅଧୀର ହୋଇପଡ଼ିଲେ । ଉଭୟଙ୍କର ପ୍ରେମାଶ୍ରୁ ବହିବାକୁ ଲାଗିଲା । ଉଭୟେ ଗାଢ଼ ଆଲିଙ୍ଗନରେ ଆବଦ୍ଧ ହେଲେ । ଅନେକ ଦିନର ବିରହବ୍ୟଥା ଦୂର କରିବା ପାଇଁ ଦୁହିଁଙ୍କ ଆଲିଙ୍ଗନ ଗାଢ଼ରୁ ଗାଢ଼ତର ହେଲା । ଉଭୟଙ୍କ ଶରୀର ରୋମାଞ୍ଚିତ ହେଲା ଓ ଉଭୟେ ପରମାନନ୍ଦ ସାଗରରେ ନିମଜ୍ଜିତ ହୋଇଗଲେ ।"

ତାହାପରେ ଦେବକୀ ନେତ୍ରରୁ ଲୋତକ ଗଡ଼ାଇ ଯଶୋଦାଙ୍କ ସହିତ ମିଳିତ ହେଲେ । ଉଭୟେ ଯଶୋଦାଙ୍କୁ ଯଥା ଯୋଗ୍ୟ ସମ୍ମାନ ଦେଇ ସୁନ୍ଦର ସୁଖକର ଆସନ ପ୍ରଦାନ କଲେ ଓ ତାଙ୍କ ଆଖିରୁ ଲୁହ ପୋଛି ଦେଲେ । ତାହାପରେ ସଙ୍କୋଚ ଓ ଶିଷ୍ଟାଚାର ସହିତ ଅସ୍ପଷ୍ଟ ବାଣୀରେ ଦେବକୀ ଧୀରେ ଧୀରେ ଯଶୋଦାଙ୍କୁ କହିଲେ— "ବ୍ରଜେଶ୍ୱରୀ ! ଆମେ ଆପଣଙ୍କୁ କ'ଣ ଅବା କହି ନିଜର କୃତଜ୍ଞତା ପ୍ରକାଶ କରିବୁ ? ନାଁ ! ଏହା ସତ କଥା ଯେ, ତୁମେ ଆମର ବହୁତ ଉପକାର କରିଛ, ସେଥିପାଇଁ ଆମେ ତୁମ ପାଖରେ ଋଣୀ । ଆମେ ଏ ଜୀବନରେ ତାହା କଦାପି ପରିଶୋଧ କରିପାରିବୁ ନାହିଁ । ଆମକୁ ଯଦି ଇନ୍ଦ୍ରଙ୍କ ଐଶ୍ୱର୍ଯ୍ୟ ମିଳେ, ତଥାପି ମଧ୍ୟ ଆମେ ତହିଁରେ ତୁମର ପ୍ରତ୍ୟୁପକାର କରିପାରିବୁ ନାହିଁ ।"

ଯଶୋଦା କହିଲେ—"ରାଣୀ ! ଆପଣ ତ ଶିଷ୍ଟାଚାର କଥା କହୁଛନ୍ତି । କିନ୍ତୁ କହିଲେ ଭଲ, ଉପକାର ତ ଅନ୍ୟ କୌଣସି ବାହାର ଲୋକ କରନ୍ତି । ମୁଁ ତ କୌଣସି

ବାହାର ଲୋକ ନୁହେଁ । ତେଣୁ ଘର ଲୋକ ଯେପରି କର୍ତ୍ତବ୍ୟ ପାଳନ କରନ୍ତି, ମୁଁ ତାହା ହିଁ କରୁଛି ।”

ଦେବକୀ କହିଲେ—“ନାନୀ ! ତୁମେ ଯାହା କହିଲ ତାହା ସତ୍ୟ । କିନ୍ତୁ ଘରର ଲୋକ ବିପତ୍ତି ସମୟରେ ଯେଉଁ ସାହାଯ୍ୟ କରନ୍ତି ତାହା କଦାପି ଭୁଲି ହୁଏ ନାହିଁ । ସମ୍ପଦ ସମୟରେ ତ ସମସ୍ତ ବନ୍ଧୁବାନ୍ଧବ ସହାନୁଭୂତି ଦେଖାନ୍ତି; କିନ୍ତୁ ବିପଦ ସମୟରେ ଯିଏ ସାହାଯ୍ୟ କରନ୍ତି, ସେହି ହିଁ ବାସ୍ତବରେ ବନ୍ଧୁ । ଦେଖ ! ତୁମେ ଏପରି ସମୟରେ ଆମକୁ ସାହାଯ୍ୟ କରିଛନ୍ତି ଯେ, ଯେଉଁ ସମୟରେ କି ଆମର କେହି ସାହା ଭରସା ନ ଥିଲେ । ସମସ୍ତ ବନ୍ଧୁବାନ୍ଧବ ଆମକୁ ଛାଡ଼ି ଦୂରେଇ ଯାଇଥିଲେ । ଆମେ ଅସହାୟ ଥିଲୁ, କଂସ ଆମକୁ ବନ୍ଦୀଶାଳାରେ ରଖିଥିଲା । ଯେତେବେଳେ କି ଏ ରାମ, କୃଷ୍ଣ ନିଜର ଜନ୍ମଦାତା ମାତା ପିତାଙ୍କୁ ଆଦୌ ଦେଖି ନଥିଲେ । ସେତେବେଳେ ତୁମେ ଏହାଙ୍କୁ ଅତ୍ୟନ୍ତ ଯତ୍ନର ସହିତ ଲାଳନପାଳନ କରି ଏପରି ରକ୍ଷା କରିଥିଲ, ଯେପରି କି ନୟନର ପିତୁଳି ଦୁଇଟିକୁ ରକ୍ଷା କରାଯାଏ । ତୁମେ ହିଁ ଏହାଙ୍କର ଯଥାର୍ଥରେ ମାତାପିତା । ତୁମେ ହିଁ ତାଙ୍କୁ ଦୁଧ ପିଆଇଛ, କୋଳରେ ଧରିଛ, ଖେଳାଇଛ, ପ୍ରେମପୂର୍ବକ ଲାଳନ-ପାଳନ, ତୋଷଣ ଓ ପୋଷଣ କରିଛ । ତୁମେ ସର୍ବଦା ଏହାଙ୍କର ଅଭ୍ୟୁଦୟ କଥା ଚିନ୍ତା କରିଛ । ତୁମ ଯୋଗୁଁ ହିଁ ଏ ଦୁହେଁ ଆଜି ଏତେ ବଡ଼ ହୋଇପାରିଛନ୍ତି । ବ୍ରଜରେ ରହି ଏ ଦୁହେଁ କଂସ ଆଦିଙ୍କୁ ଭୟ କରି ନାହାନ୍ତି । ତୁମେ କେବେହେଲେ ଏହା ସ୍ୱପ୍ନରେ ଭାବି ନଥିବ ଯେ, ଏ ଦୁହେଁ ତୁମ ନିଜ ପୁତ୍ର ନୁହନ୍ତି । ବନ୍ଧୁଙ୍କ ପୁତ୍ରଙ୍କୁ ତୁମେ ନିଜ ପୁତ୍ର ଭଳି ଲାଳନପାଳନ ଓ ରକ୍ଷା କରିଛ । ଯେଉଁମାନେ କ୍ଷୁଦ୍ର ହୃଦୟ ବ୍ୟକ୍ତି, ସେମାନେ କେବେହେଲେ ଏପରି ଯତ୍ନ ନେଉଥିବା ମୁଁ ବିଶ୍ୱାସ କରେ ନାହିଁ; କିନ୍ତୁ ଉଦାର ଚରିତ ବ୍ୟକ୍ତି ଯାହାର ହୃଦୟ ଅତି ବିଶାଳ, ସେହି ଉତ୍ତମ ବ୍ୟକ୍ତିଙ୍କର ଏପରି ପର ଆପଣା ଭେଦ ଭାବ ନଥାଏ । ଏଥିପାଇଁ ରାମ-କୃଷ୍ଣ ଦୁହେଁ ପ୍ରକୃତରେ ତୁମର ପୁତ୍ର, ତୁମର କୃପାରୁ ହିଁ ଆମେ ତାଙ୍କୁ ଦର୍ଶନ କରିପାରିଲୁ ।”

ଏହା କହି ଦେବକୀ ସମୀପରେ ବସିଥିବା ବୋହୂମାନଙ୍କୁ କହିଲେ—“ବୋହୂମାନେ ! ଏହି ହିଁ ତୁମ୍ଭମାନଙ୍କର ପ୍ରକୃତ ଶାଶୂ । ତୁମ୍ଭେମାନେ ଏହାଙ୍କ ପାଦତଳେ ପ୍ରଣାମ କର ।”

ଏହା ଶୁଣି ସର୍ବ ପ୍ରଥମେ ବଡ଼ ବୋହୂ ରେବତୀ ଯଶୋଦାଙ୍କ ପଦ ପ୍ରକ୍ଷାଳନ କରି ପାଦତଳେ ପ୍ରଣାମ କଲେ । ଯଶୋଦା କହିଲେ, ହଁ ଝିଅ ! ତୁ ଆୟୁଷ୍ମତୀ ହୁଅ । ପୁଅ, ନାତି, ଅଣନାତିରେ ଘର ପୂର୍ଣ୍ଣ ହୋଇଯାଉ ।”

ଦେବକୀ ତାଙ୍କୁ କହିଲେ—“ଇଏ ହେଉଛନ୍ତି ତୁମ ବଡ଼ ପୁଅର ପତ୍ନୀ ।”

ଯଶୋଦା କହିଲେ—"ଇଏ ତାହାହେଲେ ବଳିଆର ସ୍ତ୍ରୀ ? ଇଏ ତ ଖୁବ୍ ସୁନ୍ଦର । ରେବତୀତ ତାଙ୍କ ସ୍ୱାମୀଙ୍କର ନାମ ବଳଦେବ, ବଳରାମ, ସଙ୍କର୍ଷଣ, ଶେଷ, ରାମ ଓ ବଳଦାଉ ବୋଲି ଜାଣିଥିଲେ । କିନ୍ତୁ ବଳିଆ ନାମ ତାଙ୍କୁ ନୂଆ ଲାଗିଲା । ତେଣୁ ସେ ଏହି ନାମ ଶୁଣି ହସିଲେ ।"

ଏହାପରେ ରୁକ୍ମିଣୀ ଆସିଲେ । ରୋହିଣୀ ସ୍ୱୟଂ ଆସି କହିଲେ—"ଇଏ କାହ୍ନୁଆର ବଡ଼ ବୋହୂ ।" ଏହା ଶୁଣି ସବୁ ରାଣୀ ଖିଲ୍ ଖିଲ୍ ହୋଇ ହସି ଉଠିଲେ । ତାଙ୍କ ପଛକୁ ପଛ ସତ୍ୟଭାମା, ଜାମ୍ବବତୀ, ସତ୍ୟା, କାଳିନ୍ଦୀ ଓ ଅନ୍ୟ ଛଅ ରାଣୀ ଆସି ତାଙ୍କ ପାଦ ତଳେ ମୁଣ୍ଡିଆ ମାରି ପାଦସେବା କଲେ । ଯଶୋଦା ପଚାରିଲେ—"ଏହି ଆଠ ବୋହୂ କଣ କାହ୍ନୁଆର ସ୍ତ୍ରୀ ?"

ରୋହିଣୀ ହସି ହସି କହିଲେ—"ଏ ସବୁ ତୁମ କାହ୍ନୁଆର ସ୍ତ୍ରୀ ।"

ଯଶୋଦା ପ୍ରସନ୍ନ ହୋଇ ପଚାରିଲେ—"କ'ଣ କାହ୍ନୁଆ ଏତେ ବିବାହ କରିଛି ?

ରୋହିଣୀ କହିଲେ—"ନାନୀ ! ଏବେ ଦେଖିବ ଆସ, ଏ ତମ୍ବୁ ଭିତରେ ପଛକୁ ପଛ ଧାଡ଼ିବାନ୍ଧି ଯେଉଁ ସ୍ତ୍ରୀ ଲୋକମାନେ କୋଣେ ବାଟ ପର୍ଯ୍ୟନ୍ତ ବସିଛନ୍ତି, ଏମାନେ ସମସ୍ତେ କାହ୍ନୁଆର ସ୍ତ୍ରୀ ଓ ତୁମ ବୋହୂ । ଏ ସବୁ ବୋହୂଙ୍କ ସଂଖ୍ୟା ଷୋଳ ହଜାର ଏକଶହ ଆଠ ।"

ଯଶୋଦା ସନ୍ତୋଷ ପ୍ରକାଶ କରି କହିଲେ—"ଭଲକଥା,ବହୁ ଭାଗ୍ୟ ଥିଲେ ବହୁତ ବୋହୂ ମିଳନ୍ତି ।" ଏହାପରେ ସେ ବୋହୂମାନଙ୍କୁ କହିବାକୁ ଲାଗିଲେ—"ମା' ମାନେ ! ତୁମ ଶାଶୁ ପ୍ରକୃତରେ ମୁଁ ନୁହେଁ, ଦେବକୀ ହିଁ ତୁମ୍ଭମାନଙ୍କର ଶାଶୁ । ତୁମେ ସବୁ ଭଲ ଭାବରେ ତାଙ୍କ ସେବା ଯତ୍ନ କର । ମୁଁ କେବଳ ତୁମ୍ଭମାନଙ୍କ ପତିଙ୍କର ଧାଇ ମା' । ପିଲା ହୋଇଥିବାବେଳେ ମୁଁ ତାଙ୍କୁ ଦୁଧ ପିଆଇଥିଲି । ତୁମ ଶାଶୁଙ୍କର ଅତି କମ୍ ଦୁଧ ହେଉଥିଲା । ସେ ବଡ଼ ହୋଇଗଲାରୁ ନିଜ ମା' ପାଖକୁ ଆସିଲେ । ଏବେ ତୁମ୍ଭେମାନେ ମୋତେ ତୁମ୍ଭମାନଙ୍କ ପିଲାଙ୍କୁ ଖେଳାଇବା ପାଇଁ ଚାକରାଣୀ କରି ରଖିନିଅ । ତୁମ୍ଭମାନଙ୍କ ପିଲାଙ୍କୁ ଓ ବୋହୂଙ୍କ ପିଲାଙ୍କୁ ମୁଁ ଖେଳାଇବି । ତୁମ୍ଭେମାନେ ମୋତେ ଅତି ସାମାନ୍ୟ ଖଣ୍ଡିଏ ଖଣ୍ଡିଏ ରୋଟି ଦେଲେ, ତାହା ଖାଇବାକୁ ମୋର ପେଟ ନାହିଁ ।"

ରୋହିଣୀ କହିଲେ—"ହାୟ ! ନାନୀ ! ତୁମେ ଏପରି କୁହ ନା । ଏ ସମସ୍ତ ବୈଭବତ ତୁମର ।"

ସୂତ କହିଲେ—"ମୁନିଗଣ ! ରୋହିଣୀ ଓ ଦେବକୀ ଯଶୋଦାଙ୍କ ସହିତ ଏହିପରି କଥାବାର୍ତ୍ତା ହେଉଥାଆନ୍ତି, ଗୋପିକାଗଣ ତାହା ଚୁପ୍‌ଚାପ୍ ବସି ଶୁଣୁଥାଆନ୍ତି । ସେମାନେ ଭଗବାନଙ୍କର ରାଜକୁମାରୀ-ପତ୍ନୀମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଉଥାଆନ୍ତି । ଚିନ୍ତା କରୁଥାଆନ୍ତି, ଭଗବାନ ଏହି ରାଜକୁମାରୀଗଣଙ୍କୁ ପାଇ ଆମ୍ଭମାନଙ୍କୁ ଚିରଦିନ ପାଇଁ ଭୁଲି ଗଲେଣି । ଆମ୍ଭେମାନେ ଗ୍ରାମ ଗାଉଁଲି ଗୋପାଳୁଣୀ । ଆମର ରୂପ ଅଛି ନା ଗୁଣ ଅଛି ? ଏମାନେ ସବୁ ରୂପବତୀ, ଗୁଣବତୀ ଓ ଶୀଳବତୀ ଅଟନ୍ତି । ଏମାନେ ନିଜ ସେବାରେ ଶ୍ୟାମସୁନ୍ଦରଙ୍କୁ ବଶକରି ନେଇଛନ୍ତି । ଶ୍ୟାମସୁନ୍ଦର ଆମ୍ଭମାନଙ୍କୁ ଭୁଲି ଯାଇପାରନ୍ତି; କିନ୍ତୁ ଆମ୍ଭେମାନେ ତ ତାଙ୍କୁ କଦାପି ଭୁଲିପାରିବୁ ନାହିଁ । ଚନ୍ଦ୍ରମାଙ୍କ ପାଇଁ କୁମୁଦିନୀ ଅସଂଖ୍ୟ ରହିଛନ୍ତି; କିନ୍ତୁ କୁମୁଦିନୀମାନଙ୍କ ପାଇଁ ତ ଚନ୍ଦ୍ରମା ଏକ । ଆମ୍ଭମାନଙ୍କ ପାଇଁ ତ ଶ୍ୟାମସୁନ୍ଦର ଏକମାତ୍ର ଗତି । ଏଠାରେ ତ ଏତେ ବଡ଼ ଆଟ-ବାଟ, ସିପାହି, ସହିସବାଲା, ଏତେ ଦଳ ଦଳ ରାଣୀ । ସମସ୍ତଙ୍କ ସାମନାରେ ଏମାନେ ପ୍ରେମବାର୍ତ୍ତା ହେଉ ନାହାନ୍ତି । ଆମ୍ଭେମାନେ ତ ସମସ୍ତଙ୍କ ସାମନାରେ ତ କଥା କହିପାରିବୁ ନାହିଁ । ଆମର ମୁହଁ ବି ଖୋଲିପାରିବୁ ନାହିଁ । ସମସ୍ତଙ୍କ ସମ୍ମୁଖରେ ସଙ୍କୋଚ ବୋଧ ହେବ । ପ୍ରେମ, ଭଜନ ଓ ହୃଦ୍‌ଗତ ଭାବ ପ୍ରଦର୍ଶନ ଏକାନ୍ତରେ ହିଁ ଉତ୍ତମ ଭାବରେ ହୋଇଥାଏ । କିନ୍ତୁ ଏଠାରେ ଶ୍ୟାମସୁନ୍ଦରଙ୍କୁ ଆମେ ଏକାନ୍ତରେ କେଉଁଠି ପାଇବା ? ସବୁ ସମୟରେ ତ ଏହାଙ୍କ ପଛେ ପଛେ ପ୍ରହରୀ ବୁଲୁଛନ୍ତି । ଯଦି କେଉଁଠି ଏକାନ୍ତରେ ଶ୍ୟାମସୁନ୍ଦରଙ୍କ ସହିତ ଭେଟ ହୋଇଯାଆନ୍ତା, ତାହାହେଲେ ତାଙ୍କ ସହିତ ଦୁଇପଦ କଥା ହୁଅନ୍ତେ । ନିଜ ନିଜର ଦୁଃଖସୁଖ କଥା ତାଙ୍କୁ କହନ୍ତେ । ତାଙ୍କ ନିଷ୍ଠୁରତା ପାଇଁ ତାଙ୍କୁ ତିରସ୍କାର କରନ୍ତେ । ସେ ଆମ୍ଭମାନଙ୍କୁ ସାମାନ୍ୟ ସୁଖ ପ୍ରଦାନ କରି ଏବେ ଏଠାରେଆସି ରାଜା ହୋଇଛନ୍ତି । ତାଙ୍କର ଖେଳ ଚାଲିଛି, ଆମ୍ଭେମାନେ ତେଣେ ତାଙ୍କୁ ଝୁରି ଝୁରି ମରୁଛୁ । ଆମ୍ଭମାନଙ୍କ ଚିନ୍ତାଜ୍ୱର ସର୍ବଦା ଘାରୁଛି । ଦିନରାତି ତାଙ୍କର ମନୋହର ମୂର୍ତ୍ତି ଆମ ହୃଦୟ ପଟଳରେ ନାଚୁଛି । ତାଙ୍କ ସ୍ମୃତି ଆମ୍ଭମାନଙ୍କୁ ବିକଳ କରି ରଖିଛି । ଯଦି ଏକାନ୍ତରେ କିଛି କଥା ବାର୍ତ୍ତା ହେବାର ସୁଯୋଗ ମିଳିପାରନ୍ତା, ତାହାହେଲେ ହୃଦୟର ଆବେଗ ଦୂର ହୁଅନ୍ତା, ଚିତ୍ତ କେତେକ ପରିମାଣରେ ହାଲୁକା ହୋଇଯାଆନ୍ତା ।

ଗୋପିକାଗଣ ଏହିସବୁ କଥା ଚିନ୍ତା କରୁଥିଲେ । ଘଟଘଟକୁ ଜାଣିପାରୁଥିବା ସର୍ବାନ୍ତର୍ଯ୍ୟାମୀ ପ୍ରଭୁ ସେମାନଙ୍କର ମନୋଭାବ ଜାଣି ପାରିଲେ । ତେଣୁ ସେ ଏକାନ୍ତରେ ଯାଇ ନିଜର ପରମ ପ୍ରେମସ୍ପର୍ଶୀ ଗୋପିକାଗଣଙ୍କ ସହିତ ମିଳିତ ହେଲେ । ଏବେ ଗୋପିକାଗଣଙ୍କ ସହିତ ଶ୍ରୀକୃଷ୍ଣଙ୍କର ଯେପରି ମିଳନ ହେବ ସେହି ପ୍ରସଙ୍ଗ ମୁଁ ବର୍ଣ୍ଣନା କରୁଛି ।

## ଛପ୍ପୟ

ଲଖି ବୈଭବ ବ୍ରଜବାଲ ବହୁତ ମନ ସକୁଚୁବେଂ ।
ସୋଚେଂ—କବ ଏକାନ୍ତ ଠାଁବ ମହୁଁ ହରି କୁଁ ପାବେଂ ॥
ଅତି ରହସ୍ୟମୟ ବାତ ହୋହି ନହିଁ ସବନେ ସମ୍ମୁଖ ।
ନହିଁ ନିକୁଞ୍ଜନ ମାଁହି ମିଲହି ପ୍ରିୟ ତବ ହୋବେ ସୁଖ ॥
ସମୁଝି ସବ ଭଗବାନ ପୁନି, ସବ ତେଂ ନିରଜନ ଥଲ ମିଲେ ।
ଗାଢ଼ାଲିଙ୍ଗନ କରେଯା ହରି, ଚନ୍ଦ୍ରାନନ ସବନକେ ଖିଲେ ॥



# ଗୋପିଗଣଙ୍କର ଭଗବାନଙ୍କ ସହିତ ଭେଟ

**ଗୋପ୍ୟଶ୍ଚ କୃଷ୍ଣମୁପଲଭ୍ୟ ଚିରାଦଭୀଷ୍ଟମ୍,**
**ଯତ୍‌ପ୍ରେକ୍ଷଣେ ଦୃଶିଷୁ ପକ୍ଷ୍ମକୃତଂ ଶପନ୍ତି ।**
**ଦୃଗ୍‌ଭିର୍ହୃଦୀକୃତମଲଂ ପରିରଭ୍ୟ ସର୍ବା—**
**ସ୍ତଦ୍‌ଭାବମାପୁରପି ନିତ୍ୟଯୁଜାଂ ଦୁରାପମ୍ ॥ ***

(ଶ୍ରୀ ଭାଃ ୧୦ ସ୍କଃ ୮୨ ଅଃ ୪୦ ଶ୍ଳୋକ)

## ଛପ୍‌ପୟ

ସକୁଚୀ ସହମୀ ସଖୀ ଶ୍ୟାମ ସଂକୋଚ ଛୁଡ଼ାୟେ ।
ମଧୁର ମଧୁର ମୁସକାଇ କରନ ମୁଖ ଅଧର ଜୁଡ଼ାୟେ ॥
ପୂଛେଂ—କା ବସ ଭଇଂ ନ ହୈଂ ଫିର ବ୍ରଜମହିଁ ଆୟେ ।
କୋ ନହିଁ ଚୂହେଂ କରନ ଲଗ୍ୟନେ ସୋ କରବାୟେ ॥
ହୈ ପ୍ରାରବ୍ଧ ଅଧୀନ ସବ, ସୁଖ ଦୁଖ ଅରୁ ବିଛୁରନ ମିଲନ ।
ସାର ୟହୀ ସଂସାର ମହଁ, ମୋମେଂ ଥିର ହୈ ଜାଇ ମନ ॥

---

* ଶୁଣ ରାଜନ ଚୂଡ଼ାମଣି । ଆନନ୍ଦେ ଗୋପର ତରୁଣୀ ॥
କୃଷ୍ଣଙ୍କୁ ଦେଖି ସୁଖଶ୍ଵେଲେ । ନିରେପି ନୟନ ନିନ୍ଦିଲେ ॥
ନିନ୍ଦା ଉପେକ୍ଷି ଗୋପୀବୃନ୍ଦ । ତାର ଦରଶନେ ଆନନ୍ଦ ॥
କୃଷ୍ଣର ବଦନ ଦେଖନ୍ତି । ଚକ୍ଷୁ ନିମିଷେ ନ ଚାଳନ୍ତି ॥
ଚାହାନ୍ତି କୃଷ୍ଣ ସର୍ବଅଙ୍ଗ । ଅଗ୍ନିକି ଯେସନେ ପତଙ୍ଗ ॥
କୃଷ୍ଣର ରୂପ ପ୍ରିୟଭାବେ । ହୃଦେ ଭରିଲେ ଦୃଷ୍ଟିମାର୍ଗେ ॥
ଆନନ୍ଦ ରୂପ ଭଗବାନ । ଅନ୍ତରେ କଲେ ଆଲିଙ୍ଗନ ॥
ଲଭିଲେ ନିଜ ପ୍ରିୟଭାବ । ଯେ ହୁଏ ଯୋଗିଙ୍କି ଦୁର୍ଲ୍ଲଭ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ : ୮୮ ଅ :)

ଆମେ ଯାହାଙ୍କ ସହିତ ଚିରକାଳ ରହୁଁ, ଯାହାଙ୍କ ସହିତ ସରସ, ସୁଖଦ—କ୍ରୀଡ଼ା କରୁଁ, ସେ ଯଦି ଆମଠାରୁ ପୃଥକ ହୋଇଯାଆନ୍ତି, ତାହାହେଲେ ସେତେବେଳେ ଆମ ହୃଦୟରେ ଯେପରି ପୀଡ଼ା ହୁଏ, ସେ କଥା ଭୁକ୍ତଭୋଗୀ, ଅନୁଭବୀଙ୍କ ବ୍ୟତୀତ ଅନ୍ୟ କେହି ଅନୁଭବ କରି ପାରନ୍ତି ନାହିଁ। ସଂଯୋଗ ବଶତଃ ଯଦି ସେ ଆଉ ଥରେ ମିଳି ଯାଆନ୍ତି ଓ ଏପରି ପରିସ୍ଥିତିରେ ମିଳନ୍ତି ଯେ, ତାଙ୍କ ସହିତ ଖୋଲାଖୋଲି ଭାବେ କଥାବାର୍ତ୍ତା ହୋଇପାରେ ନାହିଁ, ନିଜର ଦୁଃଖ ସୁଖ ତାଙ୍କୁ ଶୁଣାଇ ହୁଏ ନାହିଁ କିମ୍ବା ତାଙ୍କ ଦୁଃଖସୁଖ ଶୁଣି ହୁଏନାହିଁ, ଏପରି ମିଳନଠାରୁ ବରଂ ବିୟୋଗଶ୍ରେଷ୍ଠ। ବିୟୋଗରେ ଏତିକି ସନ୍ତୋଷ ରହେ ଯେ, ସେ ନାହାନ୍ତି; କିନ୍ତୁ ଏପରି ଅଧାପନ୍ତରିଆ ସଂଯୋଗରେ ତ ହୃଦୟ ବିଦାରିତ ହୁଏ। ବାରମ୍ବାର କ୍ରୋଧ ଜାତ ହୁଏ, ଚଡ଼ି ଚଡ଼ି ଲାଗେ। ଚାହିଁ ଗୃହେଁ ତାଙ୍କୁ କଥା ନ କହିବାକୁ। କିନ୍ତୁ ଉପାୟ ମିଳେ ନାହିଁ। ଏହି ଅବସରରେ କୌଣସି ମୁହୂର୍ତ୍ତରେ ଯଦି କିଛି ସମୟ ପାଇଁ ସୁଯୋଗ ମିଳିଯାଏ, ତାହାହେଲେ ନିଜର କ୍ରୋଧ ମେଣ୍ଟାଇ ହୁଏ। ପ୍ରେମର ପଥ ଏପରି ଲଟପଟିଆ ଯେ, ଏଥିରେ ଅନେକ ବିବଶତା, ଅନେକ ସଙ୍କୋଚ ଓ ଅନେକ ବିପଦର ସମ୍ମୁଖୀନ ହେବାକୁ ପଡ଼େ। ଯଦି ପ୍ରେମର ପଥ ଏତେ ଦୁର୍ଗମ ନ ହୋଇଥାଆନ୍ତା। ତାହାହେଲେ ସମସ୍ତେ ପ୍ରେମୀ ହୋଇଯାଆନ୍ତେ। କେହି କେହି ଏହି ପ୍ରେମକୁ ମହମର ଅଶ୍ୱ ଉପରେ ବସି ଅଗ୍ନିରେ ପ୍ରବେଶ କରିବା ଭଳି ବର୍ଣ୍ଣନା କରିଛନ୍ତି ତ କେହି ଏହାକୁ ଖଡ଼୍ଗର ଧାର ବୋଲି ବର୍ଣ୍ଣନା କରି ଅଛନ୍ତି। କେହି ଅଗାଧ ସମୁଦ୍ର ତ କେହି ବିନା ଶିରରେ ଶରୀର ଓ ଅନ୍ୟ କୌଣସି କବି 'ଲୋକ ବେଦ ବାହ୍ୟ ମାର୍ଗ'' ଅର୍ଥାତ୍ ଏହା ମନୁଷ୍ୟ ଜ୍ଞାନର ଊର୍ଦ୍ଧ୍ୱରେ ବା ଅଲୌକିକ, ଅପ୍ରାକୃତ ବୋଲି ବର୍ଣ୍ଣନା କରିଅଛନ୍ତି। ଏହାର ପୂର୍ଣ୍ଣ ଆସ୍ୱାଦିତ ବ୍ରଜର ଗୋପିଗଣ କରିଥିଲେ। ଏଥିପାଇଁ କବି ଗାଇଛନ୍ତି—''ଗୋପୀ ପ୍ରେମର ଧ୍ୱଜା'' ଅଟନ୍ତି।

ସୂତ କହିଲେ—''ମୁନିଗଣ ! ଯେଉଁ ଗୋପିଗଣଙ୍କ ମନକୁ ମନନ କରିବା ପାଇଁ ମାଧବ ମଦନ ମୋହନଙ୍କର ମଧୁର ମନୋହର ମୂର୍ତ୍ତି ବ୍ୟତୀତ ଅନ୍ୟ କୌଣସି ବସ୍ତୁ ନାହିଁ। ଯେଉଁମାନେ କି ତନୁ, ମନ, ପ୍ରାଣ ଓ ସର୍ବସ୍ୱ ଶ୍ୟାମସୁନ୍ଦରଙ୍କ ଚରଣରେ ହିଁ ସମର୍ପିତ କରି ଦେଇଛନ୍ତି, ଯାହାଙ୍କ ଚିତ୍ତ ଚିତ୍ତଚୋରଙ୍କ ବ୍ୟତୀତ ଅନ୍ୟ କାହାରିକୁ ଚିନ୍ତା କରେ ନାହିଁ, ଯେଉଁମାନେ ମୁହୂର୍ତ୍ତିକ ପାଇଁ ନିଜର ପ୍ରିୟତମଙ୍କର ବିୟୋଗ ସହନ କରିବାକୁ ସମର୍ଥ ହେଉ ନଥିଲେ, ଯେଉଁମାନେ ମୁହୂର୍ତ୍ତିକ ବ୍ୟବଧାନରେ ବି ବ୍ୟଗ୍ରବ୍ୟସ୍ତ ହୋଇପଡ଼ୁଥିଲେ। ସେମାନେ ଯେତେବେଳେ ଶ୍ୟାମ-ସୁନ୍ଦରଙ୍କୁ କୁରୁକ୍ଷେତ୍ରରେ ସମସ୍ତଙ୍କ ସମ୍ମୁଖରେ ଦେଖିଲେ, ସେତେବେଳେ ଲୋକଲଜ୍ଜା-ବଶତଃ ତାଙ୍କୁ ପ୍ରତ୍ୟକ୍ଷ ଆଲିଙ୍ଗନ ତ କରିପାରିଲେ ନାହିଁ। ସେମାନେ ନେତ୍ର ଦ୍ୱାରା ନନ୍ଦନନ୍ଦନଙ୍କର ମନୋହର ମୂର୍ତ୍ତିକୁ ନିଜର ହୃଦୟରେ ଗ୍ରହଣ କରିନେଲେ ଓ ସେଥିରେ

ତାଙ୍କର ସ୍ୱବଳାମୟ ଆଲିଙ୍ଗନ କରିବାକୁ ଲାଗିଲେ । ଭଗବାନଙ୍କର ମନୋମୟୀ ମୂର୍ତ୍ତିର ସ୍ପର୍ଶ ଓ ଆଲିଙ୍ଗନ ଦ୍ୱାରା ସେମାନେ ରୋମାଞ୍ଚିତ ହେଲେ । ସେମାନେ ପ୍ରେମରେ ଅଧୀର ହୋଇ ପଡ଼ିଥିଲେ । ଭଗବାନ ସେମାନଙ୍କର ଏପରି ଦଶା ଦେଖି ଦ୍ରବୀଭୂତ ହେଲେ । ସେ ସେମାନଙ୍କୁ ଏକାନ୍ତରେ ମିଳିତ ହେବାର ସୁଯୋଗ ଦେଲେ । ଯେଉଁଠାରେ ଅନ୍ୟ କେହି ନଥିଲେ, ଏପରି ଏକାନ୍ତ ସ୍ଥାନରେ ସେମାନଙ୍କ ସହିତ ମିଳିତ ହୋଇ ସେମାନଙ୍କୁ ଗାଢ଼ ଆଲିଙ୍ଗନ କଲେ ଓ ସେମାନଙ୍କ କୁଶଳ ପଚାରିଲେ । ଗୋପିକାଗଣ ଲଜ୍ଜା ଓ ସଂକୋଚରେ କିଛି ହେଲେ ତାଙ୍କୁ କହିପାରିଲେ ନାହିଁ । ସେମାନଙ୍କ ନେତ୍ରରୁ ଅଶ୍ରୁ ବହିବାକୁ ଲାଗିଲା । ସେମାନେ ଶ୍ୟାମସୁନ୍ଦରଙ୍କ ଚକ୍ଷୁରେ ଚକ୍ଷୁ ମିଳାଇ ପାରିଲେ ନାହିଁ ।

ଘଟଣା ଅତ୍ୟନ୍ତ କରୁଣ ଓ ଗମ୍ଭୀର ହେବାର ଦେଖି, ଶ୍ୟାମସୁନ୍ଦର ହସି ହସି କହିଲେ—"କ'ଣ ଗୋପିଗଣ ! ମୋ ଉପରେ ତୁମ୍ଭେମାନେ ଅପ୍ରସନ୍ନ ହେଲ କି ?"

ଆଖିରୁ ଲୁହ ପୋଛି ପୋଛି ଗୋପିଗଣ କହିଲେ—"ମହାରାଜ ! ଆମ୍ଭେମାନେ କାହିଁକି ଅପ୍ରସନ୍ନ ହେବୁ ? ଆମ୍ଭମାନଙ୍କର ଆପଣଙ୍କଠାରେ କି ଅଧିକାର ଅଛି ? ଆମ୍ଭେ-ମାନେ ଆପଣଙ୍କର କ'ଣ ଯେ, ଅପ୍ରସନ୍ନ ହେବୁ ?"

ଶ୍ୟାମସୁନ୍ଦର ହସି ହସି କହିଲେ—"ଏ ସତ୍ୟ ଅପ୍ରସନ୍ନ ହେବାର କଥା । ମୁଁ ଏବେ କିପରି ନିଜର ନିର୍ଦ୍ଦୋଷତା ପ୍ରମାଣିତ କରିବି, ମୋର ବୁଦ୍ଧି କାହିଁ ? ସତକଥା କହିବାକୁ ଗଲେ ମୁଁ ମଥୁରା କେବଳ ଏହି ଉଦ୍ଦେଶ୍ୟରେ ଯାଇଥିଲି ଯେ, ନିଜର ସ୍ୱଜନଙ୍କୁ ଓ ବନ୍ଧୁବାନ୍ଧବଙ୍କୁ କିପରି ସୁଖୀ କରିବି । ସମସ୍ତ ଯାଦବଙ୍କୁ କଂସ ମାମା ବଡ଼ କ୍ଳେଶ ଦେଉଥିଲେ । ଏଥିପାଇଁ ମୁଁ ତାଙ୍କୁ ସଭା ମଧ୍ୟରେ ମାରିଦେଲି କିନ୍ତୁ, ସେଠାରେ ମୋର ଅନେକ ଶତ୍ରୁ ହୋଇଗଲେ । ସେମାନଙ୍କ ସହିତ ବହୁତ ଦିନ ଧରି ଯୁଦ୍ଧ କରିବାକୁ ପଡ଼ିଲା । ଆଜି ଏଠାକୁ ଗଲି ତ କାଲି ସେଠାକୁ ଯିବାକୁ ପଡ଼ିଲା । ସେହିଦିନଠାରୁ ଏ ପର୍ଯ୍ୟନ୍ତ ବଡ଼ ଅଡ଼ୁଆରେ ମୁଁ ପଡ଼ିଛି । ଏଥିପାଇଁ ବ୍ରଜ ମଧ୍ୟ ଯାଇପାରି ନାହିଁ । ତୁମ୍ଭମାନଙ୍କ ସହିତ ସାକ୍ଷାତ୍ କରିପାରି ନାହିଁ । ବହୁଦିନର ବ୍ୟବଧାନ ହୋଇଯାଇ ଥିବାରୁ ମୈତ୍ରୀ ଶିଥିଳ ପଡ଼ିଯାଇଛି । କିନ୍ତୁ ମୁଁ ତ ନିରନ୍ତର ତୁମ୍ଭମାନଙ୍କୁ ସ୍ମରଣ କରୁଛି । ତୁମ୍ଭେମାନେ ମୋତେ ମନେ ପକାଉ ଥିଲ ତ ।"

ଏହା ଶୁଣି ଜଣେ ପ୍ରେମ ମିଶ୍ରିତ କୋପରେ କହିଲେ—"ମହାରାଜ ! ଆପଣଙ୍କୁ ତ ସେହି କୁବୁଜା ସ୍ମରଣ କରୁଥିବ କିମ୍ବା ଷୋଳ ସହସ୍ର ଏକଶହ ଆଠ ରାଜକୁମାରୀ ସ୍ମରଣ କରୁଥିବେ । ଆମ୍ଭମାନଙ୍କ ସହିତ ଆପଣଙ୍କର କି ସମ୍ବନ୍ଧ ? ଆମେ ବା କାହିଁକି ଆପଣଙ୍କୁ ସ୍ମରଣ କରିବୁ ? ଆମେ ତ ବୁଝୁଁ ଯେ ଆପଣ କେବେହେଲେ ମନେ କି ପଡ଼ିବ । ସେ

ସବୁ ପୁରୁଣା ସ୍ୱପ୍ନ କଥା ଆପଣ ଭୁଲି ଯାଆନ୍ତୁ । ଆମ୍ଭମାନଙ୍କ ପାଖରେ ରୂପ, ଗୁଣ ନା କୌଣସି ବିଦ୍ୟା ଅଛି ଯେ ଆମ୍ଭେମାନେ ଆପଣଙ୍କୁ ପ୍ରସନ୍ନ କରିବାକୁ ସକ୍ଷମ ହେବୁ ?''

ଭଗବାନ ଅତ୍ୟନ୍ତ ମମତା ଭରା କଣ୍ଠରେ କହିଲେ—''ତୁମ୍ଭେମାନେ ମୋର ଯେପରି ସେବା କରୁଛ, ସଂସାରରେ ଏପରି ତ କେହି କରି ପାରିବେ ନାହିଁ । କିନ୍ତୁ ମୁଁ ତାହାର କିଛି ପ୍ରତ୍ୟୁପକାର କରିପାରି ନାହିଁ । ଏଥିପାଇଁ ତୁମ୍ଭେମାନେ ମୋତେ କୃତଘ୍ନ ବୋଲି ଭାବୁଥିବ । ନିଜ ନିଜ ମଧ୍ୟରେ ମୋ ଅକୃତଜ୍ଞତା ବିଷୟ ଆଲୋଚନା କରୁଥିବ ଓ ମୋତେ ଦୋଷୀ ସାବ୍ୟସ୍ତ କରୁଥିବ । କିନ୍ତୁ ଦେଖ ! ଏଥିରେ ମୋର କୌଣସି ଦୋଷ ନାହିଁ । ଆମେ ସବୁ ଭାଗ୍ୟର ଅଧୀନ । ଭଗବାନ ପରସ୍ପରଙ୍କ ମଧ୍ୟରେ ସଂଯୋଗ କରାନ୍ତି ଓ ସେ ଯେତେବେଳେ ଇଚ୍ଛା କରନ୍ତି ପୁନଶ୍ଚ ପୃଥକ୍ କରାଇ ଦିଅନ୍ତି । ଆମେ ସମସ୍ତେ ଦୈବାଧୀନ ହୋଇ କଥାବାର୍ତ୍ତା ହେଉଥାଉଁ । ମୋର ଇଚ୍ଛା ନଥିଲା ଯେ, ମୁଁ ତୁମ୍ଭଠାରୁ ଦୂର ପୃଥକ୍ ହୋଇ ଆସିବି; କିନ୍ତୁ ଭାଗ୍ୟ ମୋତେ ପୃଥକ୍ କରାଇଲା । ସଂସାରରେ ସର୍ବଦା କେହି ସର୍ବଦା ମିଳିତ ହୋଇ ରହି ପାରନ୍ତି ନାହିଁ । ଯେଉଁମାନେ ମିଳିତ ହୋଇ ରହି ଥାଆନ୍ତି, ପୁନଶ୍ଚ ସେମାନଙ୍କର ବିଚ୍ଛେଦ ହୁଏ । ମିଳନ ହେବ ପାଇଁ ତ ବିଚ୍ଛେଦ ହୁଏ । ଆକାଶରେ ମେଘମାଳାରୁ ଏକ ଅନ୍ୟ ଏକ ବାଦଲ ସହିତ ମିଶିଯାଆନ୍ତି, ଯେତେବେଳେ ପ୍ରବଳ ବେଗରେ ବାୟୁ ବହେ ସେତେବେଳେ ସେମାନେ ତୁରନ୍ତ ଛିନ୍ନ ଭିନ୍ନ ହୋଇ ଯାଆନ୍ତି । କେଉଁଠାକୁ ହେଲେ ତ ସେମାନଙ୍କୁ ଯିବାକୁ ପଡ଼େ ? କ୍ଷେତରେ କେତେ ପ୍ରକାରର ବୀଜ ଆସି ଯେ ଉତ୍ପନ୍ନ ହୁଏ, ତାହା କହିହେବ ନାହିଁ । ପକ୍ୱ ହେଲେ କେଉଁ ବୀଜ କାହା ପେଟରେ ପଡ଼େ ତାହା କହିବା ମଧ୍ୟ ସହଜ ନୁହେଁ । ସବୁ ଇତସ୍ତତଃ ହୋଇଯାଏ । ଗୁରୁକୁଳରେ, ପାଠଶାଳାରେ ନାନା ଅଞ୍ଚଳରୁ ଛାତ୍ରମାନେ ଆସି ପାଠ ପଢ଼ନ୍ତି, ସମସ୍ତେ କେତେ ପ୍ରେମରେ କୋଳାହଳ କରି ପଢ଼ନ୍ତି । ପଢ଼ା ସରିବା ପରେ ସମସ୍ତଙ୍କର ପ୍ରାରବ୍ଧ ସେମାନଙ୍କୁ ପୃଥକ୍ କରି ଦିଏ । ସମସ୍ତେ ବିଭିନ୍ନ ଦିଗ ଆଡ଼କୁ ନେଇ ଚାଲି ଯାଆନ୍ତି । ନଦୀର ବେଗରେ କେତେ କୁଟାକାଠି ଭାସି ଆସେ । ଭାସି ଆସିଲା ବେଳେ ସେଗୁଡ଼ିକ କେଉଁଠି ମିଳିତ ହୋଇ ଯାଆନ୍ତି ତ କେଉଁଠି ଛାଡ଼ି ଯାଆନ୍ତି । କିଛି ମିଳିତ ହୋଇ ଯାଇ ସେଗୁଡ଼ିକ ପୁଣି ତୀବ୍ର ସ୍ରୋତରେ ନାନା ଦିଗକୁ ପୃଥକ୍ ହୋଇ ନାନା ଦିଗକୁ ଭାସିଯାଆନ୍ତି । ଝଡ଼ ତୋଫାନରେ କେତେ ପତ୍ର ଏକତ୍ରିତ ହୋଇଯାଏ । ପୁନଶ୍ଚ ତାହା ସେହି ଝଡ଼ ତୋଫାନରେ ବିଭିନ୍ନ ଆଡ଼େ ଖେଳାଇ ହୋଇ ଉଡ଼ି ଯାଆନ୍ତି । ମରୁଭୂମିରେ ପବନରେ ବାଲୁକା ରାଶି ଏକତ୍ର ସ୍ତୂପ ଆକାରରେ ଜମିଯାଏ । ଅନ୍ୟ ଦିନ ସେହି ପବନ ବେଗରେ ତାହା ସେଠାରେ ଆଉ ଦେଖିବାକୁ ମିଳେ ନାହିଁ । ସେହି ବାଲିକଣା ଗୁଡ଼ିକ କେଉଁଆଡ଼େ ଉଡ଼ିଯାଏ ତାହା କଣ ହୁଏ ନାହିଁ । ବିଭିନ୍ନ ସ୍ଥାନରୁ ପଶୁମାନେ ଆସି ଜଙ୍ଗଲରେ ଘାସ ଚରନ୍ତି, ସନ୍ଧ୍ୟା ହେଲେ କିଏ କେଉଁ-ଆଡ଼େ ଚାଲି ଯାଆନ୍ତି । ବିଭିନ୍ନ ସ୍ଥାନରୁ ଲୋକମାନେ ଆସି ନୌକାରେ ବସନ୍ତି, ନଦୀରେ

ସାଥୀ ହୋଇ ଯାଆନ୍ତି, ଯେତେବେଳେ ପାର ହୋଇ ଯାଆନ୍ତି, ସେତେବେଳେ କିଏ କୁଆଡ଼େ ଚାଲିଯାଆନ୍ତି । ବଗିଚାରେ ଏକ ସଙ୍ଗେ ଫୁଲସବୁ ଫୁଟନ୍ତି, ଫୁଲ ଫୁଟିଗଲେ ମାଳୀ ଆସି ତୋଳି ନିଏ । କାହାକୁ ଦେବତା ଉପରେ ଚଢ଼ାଯାଏ ତ କାହାକୁ କାମିନୀଗଣ ବ୍ୟବହାର କରନ୍ତି, କୌଣସି ଫୁଲ ପାଦତଳେ ମଡ଼ାଯାଏ ତ କାହାକୁ ବିଦେଶ ପଠାଯାଏ । ବୃକ୍ଷରେ ଏକ ସଙ୍ଗେ ଫଳ ଧରେ, ତୋଳାହେଲା ପରେ ତାହା ଭାଗ୍ୟବଶତଃ କିଏ କୁଆଡ଼େ ଚାଲି ଯାଆନ୍ତି । ଏହିପରି ଭଗବାନ ପ୍ରାଣୀମାନଙ୍କୁ ଜଣଙ୍କ ସଙ୍ଗରେ ବାରମ୍ବାର ଅନ୍ୟ ଜଣଙ୍କୁ ସଂଯୋଗ କରାନ୍ତି ଓ ବିଯୋଗ କରାନ୍ତି । ପୁନଶ୍ଚ କାଳାନ୍ତରରେ ମିଳିତ କରାନ୍ତି । ଏବେ ଦେଖ, ମୁଁ ତୁମ୍ଭମାନଙ୍କ ଠାରୁ ପୃଥକ୍ ହୋଇଥିଲି । ଆମ୍ଭମାନଙ୍କୁ ଭାଗ୍ୟ ପୁନଶ୍ଚ ଏକତ୍ରିତ କଲା । ପୁନଶ୍ଚ ମୁଁ ତୁମ୍ଭମାନଙ୍କ ସହିତ ମିଳିତ ହୋଇ ସୁଖୀ ହେଲି ।

ସଂସାରରେ ଯାହାକୁ ବି ପ୍ରେମ କର, ତାହାହିଁ ବନ୍ଧନର କାରଣ ହୁଏ । ମୃଗକୁ ପ୍ରେମ କଲେ ମୃଗ ହେବାକୁ ପଡ଼େ । ପତ୍ନୀକୁ ପ୍ରେମ କଲେ ପୁନଶ୍ଚ ଅନ୍ୟ ଜନ୍ମରେ ପୁନଶ୍ଚ ପତି ହେବାକୁ ପଡ଼ିବ । ପୁତ୍ରକୁ ପ୍ରେମ କଲେ ପୁନଶ୍ଚ ତୁମକୁ ପୁତ୍ର ହେବାକୁ ପଡ଼ିବ । ସାରକଥା ଏହି ଯେ, ଯାହା ସହିତ ପ୍ରେମ କରିବ ତାହାର ବନ୍ଧନରେ ବନ୍ଦୀ ହେବାକୁ ହେବ । କେବଳ ମୋର ଭକ୍ତିର ମହିମା ଏପରି ଯେ, ତାହା ସମସ୍ତ ବନ୍ଧନରୁ ମୁକ୍ତ କରି ଭବସାଗରରୁ ପାରି କରି ଦିଏ । ଯାହାକୁ ମୋର ଭକ୍ତି ମିଳିଯାଇଛି ତାକୁ ସବୁ କିଛି ପ୍ରାପ୍ୟ ହୋଇଯାଇଛି । ଯିଏ ମୋର ଭକ୍ତି ଲାଭ କରି ନାହିଁ, ତାକୁ କିଛି ହେଲେ ମିଳି ନାହିଁ । ଏହା ଅତି ସୌଭାଗ୍ୟର ବିଷୟ ଯେ, ଯଦିଚ ମୁଁ ତୁମ୍ଭମାନଙ୍କ ଠାରୁ ଦୂରକୁ ଚାଲି ଆସିଛି, ତୁମ୍ଭେମାନେ ବିୟୋଗ ଜନିତ ଦୁଃଖ ପାଇଛ, କିନ୍ତୁ ଏହି ବିୟୋଗରେ ମଧ୍ୟ ତୁମ୍ଭମାନଙ୍କୁ ମୋର ପ୍ରାପ୍ତି କରାଇ ଥିବା ମୋ ପ୍ରେମ ଭକ୍ତି ମିଳିଛି । ଦେଖ, ଶରୀରର ମିଳନ ଅନିତ୍ୟ ତୁଚ୍ଛ । ମିଳନରେ ମନର ମିଳନ ହିଁ ଶ୍ରେଷ୍ଠ । ମନ ଯଦି ମିଳିଥାଏ, ଶରୀର ଯେଉଁଠାରେ ଥିଲେ ମଧ୍ୟ ସଦା ମିଳିତ ହେଉଥାଏ । ମନ ଯଦି ମିଳି ନଥାଏ, ତାହେଲେ ଶରୀରର ମିଳନରେ ମଧ୍ୟ ତାହା ମିଳିତ ହୁଏ ନାହିଁ ।

ତୁମେ ଏହା ଭାବ ନାହିଁ ଯେ, ମୁଁ ବୃନ୍ଦାବନରେ ନାହିଁ । ଏପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ କି ମୁଁ ନାହିଁ । ଯେପରି ସମସ୍ତ ଭୌତିକ ପଦାର୍ଥରେ ଆକାଶ ବିଦ୍ୟମାନ, ତୁମ୍ଭେମାନେ ଏପରି କୌଣସି ଜିନିଷ ମୋତେ କହ, ଯେଉଁଥିରେ ଜଳ, ତତ୍ତ୍ୱ ନାହିଁ, ବାୟୁ ତତ୍ତ୍ୱ ନାହିଁ, ଅଗ୍ନି ତତ୍ତ୍ୱ ନାହିଁ, ବ୍ୟୋମ ତତ୍ତ୍ୱ ନାହିଁ ଓ କ୍ଷିତି ତତ୍ତ୍ୱ ନାହିଁ । ଏହି ପଞ୍ଚଭୂତ ଯେପରି ସବୁ ଘଟରେ ବିଦ୍ୟମାନ, ମୁଁ ମଧ୍ୟ ସେହିପରି ସର୍ବତ୍ର ବିଦ୍ୟମାନ । ମୁଁ ସର୍ବାନ୍ତର୍ଯାମୀ, ସର୍ବଗତ, ସର୍ବତ୍ର ସବୁଥିରେ ସବୁ କାଳରେ, ସମସ୍ତର କର୍ତ୍ତା ହେଲା

ରୂପରେ ହିଁ ବିଦ୍ୟମାନ । ମୁଁ ସମସ୍ତଙ୍କ ବାହାରେ ଓ ସମସ୍ତଙ୍କ ଭିତରେ ବିଦ୍ୟମାନ । ମୁଁ ସମସ୍ତଙ୍କ ଅନ୍ତରରେ ମଧ୍ୟ ବିଦ୍ୟମାନ ଓ ସର୍ବତ୍ର ପରିବ୍ୟାପ୍ତ ।

ଏହି ଶରୀରରେ କ'ଣ ଅଛି ? ମୁଁ କାରଣ ରୂପରେ ତ ପଞ୍ଚଭୂତ ବ୍ୟାପ୍ତ, ତଥା ଭୋକ୍ତା ରୂପରେ ଆତ୍ମା ବ୍ୟାପ୍ତ । ମୁଁ ପରମ ଆତ୍ମାରୂପେ ଅକ୍ଷର । ବ୍ରହ୍ମରେ ଏ ଦୁଇ କ୍ଷର ଓ ଅକ୍ଷର ତତ୍ତ୍ୱ ନିହିତ ଅଛି । ତେଣୁ ମୋତେ ହିଁ ଉତ୍ତମ ପୁରୁଷ ପରମାତ୍ମା ବୋଲି ତୁମ୍ଭେମାନେ ଜ୍ଞାନ କର । ଏବେ ବୁଝି, କିଛି ବୁଝିପାରିଲ ତ ।"

ସୂତ କହିଲେ—"ମୁନିଗଣ ! ଭଗବାନ୍ ଯେତେବେଳେ ଏତେ ଉଚ୍ଚ ଧରଣର ଆଧ୍ୟାତ୍ମଜ୍ଞାନ ଶିକ୍ଷା ଦେଲେ, ସେତେବେଳେ ସେମାନେ ହିଁ କିମ୍ବା ନା କିଛି କହିପାରିଲେ ନାହିଁ । ସେମାନେ ନିରନ୍ତର ଭଗବାନଙ୍କ ନାମ ଓ ତାଙ୍କର ମନମୋହନ ରୂପ ସ୍ମରଣ କରୁଥିଲେ । ସେମାନେ ତାଙ୍କ ଧ୍ୟାନ କରି କରି ନିଜ ଶରୀରକୁ ଭୁଲିଗଲେ । ସେମାନଙ୍କର ସ୍ତ୍ରୀ ପୁରୁଷ ଭେଦଭାବ ତୁଟି ଯାଇଥିଲା । ସେମାନେ ଭଗବାନଙ୍କ ସ୍ୱରୂପରେ ତଲ୍ଲୀନ ହୋଇ ଯାଇଥିଲେ । ତନ୍ମୟ ହୋଇ ଯାଇଥିବାରୁ ସେମାନେ ସବୁ ବୋଧ ଶକ୍ତି ହରାଇଥିଲେ । ସେମାନଙ୍କର ଏ ପ୍ରକାର ବିଚିତ୍ର ଅଲୌକିକ ଦଶା ଦେଖି ଭକ୍ତବତ୍ସଳ ଭଗବାନଙ୍କର ଅତ୍ୟନ୍ତ ଦୟା ହେଲା । ସେ ଚିନ୍ତା କଲେ—"ମୁଁ ଏମାନଙ୍କୁ ପରିବ୍ରାଜ ସନ୍ୟାସୀ-ମାନଙ୍କର ଦୁର୍ଲଭ ଗତି ଦେଇ ଦେବି । ଏମାନଙ୍କୁ ଦେହ ବନ୍ଧନରୁ ବିମୁକ୍ତ କରିଦେବି । ତେଣୁ ସେମାନଙ୍କୁ ଭଗବାନ କୋଳ ଦେଇ କହିଲେ—"ଗୋପିକାଗଣ ! ତୁମ୍ଭେମାନେ କାହାକୁ ଧ୍ୟାନ କରୁଅଛ ? ଏବେ ତୁମ୍ଭେମାନେ ମୋଠାରୁ ସର୍ବଶ୍ରେଷ୍ଠ ବର ମାଗି ନିଅ ।"

ଏହା ଶୁଣି ସମସ୍ତେ ଏକ ସ୍ୱରରେ କହିଲେ—"ହେ କମଳନାଭ ! ଆପଣ ଯଦି ଆମ୍ଭମାନଙ୍କୁ ବର ଦେବାକୁ ଇଚ୍ଛୁକ ଅଛନ୍ତି, ତାହାହେଲେ ଗୋଟିଏ ବର ଦିଅନ୍ତୁ ।"

ଭଗବାନ ପଚାରିଲେ—"ତାହା କି ପ୍ରକାର ବର ? ତୁମ୍ଭେମାନେ ସଙ୍କୋଚ ତ୍ୟାଗ କରି ତାହା ମାଗିନିଅ ।"

ଗୋପିଗଣ କହିଲେ—"ଆପଣ ଏବେ କହିଲେ ଯେ, 'ମୁଁ ଅଗାଧ ବୋଧ, ପରମଜ୍ଞାନ ସମ୍ପନ୍ନ, ଯୋଗୀମାନେ ମୋତେ ସେମାନଙ୍କ ହୃଦୟ କମଳରେ ଚିନ୍ତା କରନ୍ତି ଓ ମୁଁ ସଂସାର କୂପରେ ପତିତ ପ୍ରାଣୀମାନଙ୍କୁ ଉଦ୍ଧାର କରେ । ମୁଁ ହିଁ ସମସ୍ତଙ୍କର ଏକମାତ୍ର ଅବଲମ୍ବନ ।' ଆମ୍ଭେମାନେ ଆପଣଙ୍କ କଥା ଅବିଶ୍ୱାସ କରୁ ନାହୁଁ । ଆପଣ ନିଶ୍ଚୟ ସବୁକିଛି ହୋଇଥାଇ ପାରନ୍ତି । ଆପଣ ନିର୍ବିକାର, ନିରାକାର ରୂପରେ ଯୋଗୀ ଓ ପରମହଂସମାନଙ୍କ ଦ୍ୱାରା ଅବଶ୍ୟ ଚିନ୍ତନ କରାଯାଉଥିବେ । କିନ୍ତୁ ଆମ୍ଭେମାନେ ତ ଘରେ ରହିବା ଲୋକ, ଗୃହିଣୀ ଅଟୁ । ଏଥିପାଇଁ ଆମ୍ଭମାନଙ୍କର ଏତିକି ପ୍ରାର୍ଥନା ଯେ, ଏହି କମଳ ସଦୃଶ କୋମଳ ଆପଣଙ୍କର ଚରଣ କମଳରେ ନିରନ୍ତର ଆମ୍ଭମାନଙ୍କର ମନ ରହୁ । ଆମ୍ଭମାନଙ୍କ ହୃଦୟରେ ଚିନ୍ତାମଣି ସଦୃଶ ତାହା ସ୍ଥାନପାଉ । ତାହା ଦର୍ଶନ କରିବା ପାଇଁ

ଆମ୍ଭମାନଙ୍କର ଅନ୍ୟ କୌଣସି ଅଭୀଷ୍ଟ ଆବଶ୍ୟକ ନ ହେଉ । ସେହି ସାକ୍ଷାତ୍ ଚରଣାରବିନ୍ଦ ଆମ୍ଭମାନଙ୍କ ମନମନ୍ଦିରରେ ସତତ ସ୍ଥାପିତ ହୋଇଥାଉ । ଆମ୍ଭେମାନେ ଅହର୍ନିଶି ତାହା ପୂଜା କରୁଥାଉଁ । ଏହା ହିଁ ଆପଣଙ୍କ ପାଦପଦ୍ମରେ ଆମ୍ଭମାନଙ୍କର ଭିକ୍ଷା, ଏହା ହିଁ ଆପଣଙ୍କ ଶିକ୍ଷାଦୀକ୍ଷାର ସାରକଥା ବୋଲି ଆମ୍ଭେମାନେ ମନେ କରୁଁ । ଆମ୍ଭେମାନେ ଶ୍ରୀ ବୃନ୍ଦାବନରେ ପଡ଼ି ରହିଛୁ । ସେହିଠାରେ ହିଁ ଆପଣଙ୍କ ଚରଣାରବିନ୍ଦ ଆମ୍ଭମାନଙ୍କ ହୃଦୟରେ ଜାଜ୍ଜ୍ୱଲ୍ୟମାନ ହେଉଥାଉ, ଏହି ବର ଆମ୍ଭମାନଙ୍କୁ ପ୍ରଦାନ କରନ୍ତୁ ।"

ସୂତ କହିଲେ—"ମୁନିଗଣ ! ଗୋପିମାନଙ୍କର ଏପରି ପ୍ରେମଭାବ ଦେଖି ଭଗବାନଙ୍କ ହୃଦୟ ତରଳିଗଲା । ଗୋପିମାନଙ୍କର ଏକମାତ୍ର ଗୁରୁ ତାଙ୍କର ସର୍ବସ୍ୱ ସେହି ଗୋପିଜନବଲ୍ଲଭ ଭଗବାନ ସେମାନଙ୍କ ଉପରେ କୃପା କଲେ । ସେ ଏପରି ପ୍ରେମାଳାପ କରୁଥିଲେ ଯେ, ରୁକ୍ମିଣୀ ଆସି ତାଙ୍କୁ କହିଲେ—'ଆପଣ ଏଠାରେ ବସି ପ୍ରେମାଳାପ କରୁଛନ୍ତି, ତେଣେ ଧର୍ମରାଜ ବନ୍ଧୁ ସମସ୍ତଙ୍କୁ ଧରି ଆପଣଙ୍କୁ ପ୍ରତୀକ୍ଷା କରି ବସିଛନ୍ତି ।"

ଏବେ ଭଗବାନଙ୍କ ଧ୍ୟାନ ଭାଙ୍ଗିଲା । ରସଭଗ୍ନ ହୋଇଗଲା । ସେ ଗୋପି-ମାନଙ୍କୁ କହିଲେ,—"ଠିକ୍ ଅଛି, ଆମ୍ଭେମାନେ ତ ଏଠାରେ ଅନେକ ଦିନ ଏକତ୍ର ରହିବା, ପୁଣିଥରେ ମିଳିତ ହୋଇ କଥାବାର୍ତ୍ତା ହେବା ।" ଏହା କହି ସମସ୍ତଙ୍କଠାରୁ ବିଦାୟ ନେଇ ଭଗବାନ ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ଦେଖା କରିବାକୁ ଗଲେ । ଏବେ ଧର୍ମରାଜଙ୍କ ସହିତ ଭଗବାନଙ୍କର ଯେପରି ଭେଟ ହେବ, ସେହି ପ୍ରସଙ୍ଗ ମୁଁ କହୁଛି ଶୁଣନ୍ତୁ ।"

## ଛପ୍ପୟ

ଭରି ନୟନନ ଜଲ କହେଁ ଗୋପିକା ହରି ତୁମ ଜ୍ଞାନୀ ।
ଜା ସମୁଝେଁ ହମ ଯୋଗ ଜ୍ଞାନଯୁତ ତୁମରି ବାନୀ ॥
କୀୟୋ ଜୋ ଉପଦେଶ ସା ତ ହମ ତାକୂଁ ମାନେଂ ।
କନ୍ତୁ ନ ଜସୁମତି ତନୟ୍ଁ ଛାଡ଼ି ହମ ଜଗ କଛୁ ଜାନେଂ ।
ବରଦାତା ! ବର ଦେହୁ କିହୁ, ଜାଇ ନ ହମରୀ ଅନତ ମତି ।
ତବ ମୂରତି ହିୟ ମହଁ ବସୈ, ଚରନ କମଲ ମହଁ ହୋହୁ ରତି ॥

●

## ଯୁଧିଷ୍ଠିରଙ୍କ ସହିତ ଭେଟ

ତଥାନୁଗୃହ୍ୟ ଭଗବାନ୍ ଗୋପୀନାଂ ସ ଗୁରୁର୍ଗତିଃ ।
ଯୁଧିଷ୍ଠିରମଥାପୃଚ୍ଛତ୍ ସର୍ବାଂଶ୍ଚ ସୁହୃଦୋଽବ୍ୟୟମ୍ ॥ *
( ଶ୍ରୀ ଭାଃ ୧୦ ସ୍କ. ୮୩ ଅ. ୧ ଶ୍ଲୋକ )

### ଛପ୍ପୟ

କରି କୃପା କରୁଣେଶ ସବନକୁଁ ଧୀର ବଁଧାୟୋ ।
ଧରମରାଜକନେ ଦରଶ ହେତୁ ସନ୍ଦେଶ ପଠାୟୋ ॥
ଗୋପିନକୁଁ କର ଖଡା ଦ୍ୱାରପୈ ଯଦୁବର ଆୟେ ।
କର ସ୍ୱାଗତ ସତ୍କାର ନୃପଙ୍କ ପାଂଡ଼ବ ବୈଠାୟେ ॥
କୁଶଲ କ୍ଷେମ ପୂଛୀ ତବହି, କହହିଁ ଧରମସୁତ ନୟନ ଭର ।
ଭଇ କୁଶଲ ଅବ ଦୟାମୟ ! ତବ ଚରନନକେ ଦରଶ କର ॥

ଯେତେବେଳେ ଅଧିକ ପୁଣ୍ୟ ଉଦୟ ହୁଏ, ସେତେବେଳେ ଭଗବାନ ତଥା ଭଗବଦ୍‌ଭକ୍ତଙ୍କର ଦର୍ଶନ ମିଳିଥାଏ । ଶରୀର ସୁସ୍ଥ ସବଳ ରହେ, ଯଥେଷ୍ଟ ଧନଧାନ୍ୟ ମିଳେ । କେବଳ ସେଥିକି କୁଶଳ ଲଭ ହୁଏ ନାହିଁ; ଯଥାର୍ଥ କୁଶଳ ତ ତାହାକୁ କୁହାଯାଏ ଯେ, ଭଗବାନଙ୍କ ଦର୍ଶନ ହେବା ଓ ଭଗବାନ ଆମକୁ ଆପଣାର କରିନେବା । ସେ ସେତେବେଳେ ଆମକୁ ଆତ୍ମୀୟ ବୋଲି ସ୍ୱୀକାର କରି ନିଅନ୍ତି । ଭଗବାନ ଆମକୁ ନିଜର କରି ନେବାଦ୍ୱାରା ଆମେ ଭଗବଦୀୟ ଅଥବା ଭାଗବତ ହୋଇଯାଉ । ସେତେବେଳେ ଆମ୍ଭ ଅକୁଶଳ ରହେ ନାହିଁ । ସର୍ବଦା କୁଶଳ ବିରାଜମାନ କରେ ।

---

* ଅଖିଳ ଜନ ସୁଖ କରି । ବ୍ରଜକାମିନୀ ବୋଧ କରି ॥
ଧର୍ମନନ୍ଦନ ଭୁଲେ ଯେତେ । ସୁହୃଦ ବାନ୍ଧବ ସମେତେ ॥
ତାହାଙ୍କୁ ଗୃହେଁ ନନ୍ଦବାଳ । ହରଷେ ପୁଛନ୍ତି କୁଶଳ ॥
(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୮୧ ଅ)

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଭଗବାନ୍ ଗୋପିଜନବଲ୍ଲଭ ଗୋପୀମାନଙ୍କୁ ସାନ୍ତ୍ୱନା ଦେଇ, ଭଲଭାବରେ ବୁଝାଇ ସୁଝାଇ ତାଙ୍କ ନିକଟରୁ ବିଦାୟ ନେଇ ଆସିଲେ । ତେଣରେ ପଞ୍ଚପାଣ୍ଡବ ତାଙ୍କୁ ଅପେକ୍ଷା କରିଥିଲେ । ଭଗବାନ ସେଠାକୁ ଆସିବା ମାତ୍ରେ ସମସ୍ତଙ୍କ ସହିତ ପ୍ରେମପୂର୍ବକ ମିଳିତ ହେଲେ । ସେ ଧର୍ମରାଜଙ୍କୁ ପଚାରିଲେ—କହନ୍ତୁ ଭାଇ ! ସମସ୍ତ କୁଶଳ ତ ? ଆମର ଆଉ ସମସ୍ତ ବନ୍ଧୁ ବାନ୍ଧବ କୁଶଳରେ ଅଛନ୍ତି ତ ?"

ପ୍ରେମରେ ଧର୍ମରାଜ ଯୁଧିଷ୍ଠିରଙ୍କର ହୃଦୟ ସେତେବେଳେ ଦ୍ରବିତ ହୋଇ ଯାଇଥିଲା । ଭଗବାନଙ୍କ ଚରଣାରବିନ୍ଦ ଦର୍ଶନରେ ସେ ନିଜକୁ ପରମ ପୁଣ୍ୟବାନ ବୋଲି ଅନୁଭବ କରୁଥିଲେ । ତାଙ୍କ ମନ ପରମ ପ୍ରମୁଦିତ ହୋଇଥିଲା । କଣ୍ଠ ଅବରୁଦ୍ଧ ହୋଇଥିଲା । ସେ ବଡ଼ କଷ୍ଟରେ ରହି ରହି କହିଲେ—"ପ୍ରଭୋ ! ଆମ କୁଶଳ ବିଷୟ ଅବା ମୁଁ କ'ଣ କହିବି, ଏପର୍ଯ୍ୟନ୍ତ ଆମ୍ଭମାନଙ୍କର କୁଶଳ ବୋଲି କିଛି ଆମେ ଜାଣି ନ ଥିଲୁ; କିନ୍ତୁ ବର୍ତ୍ତମାନ କୁଶଳରେ ଅଛୁ ବୋଲି ମଧ୍ୟ କହି ହେଉ ନାହିଁ ।"

ଭଗବାନ ହସି କରି କହିଲେ—"କାହିଁ ଏବେ ଆପଣଙ୍କର କ'ଣ ହୋଇଛି ?

ଧର୍ମରାଜ କହିଲେ—"କ'ଣ ବା ହୁଅନ୍ତା ? ଆମ୍ଭମାନଙ୍କୁ ମନୁଷ୍ୟ ଜନ୍ମ ପାଇବାର ଲାଭ ମିଳିଗଲା । ଦେବ ! ଏ ଜୀବ କେବେଠାରୁ ଏହି ସଂସାର ରୂପୀ ଭବାଟବୀରେ ଘୂରି ବୁଲୁଛି । ଏ ଭ୍ରମଣ ବିସ୍ତାର କଦାପି ଶେଷ ନାହିଁ । ଗୋଟିକ ପରେ ଗୋଟିଏ ଜନ୍ମ ତାକୁ ନେବାକୁ ପଡ଼ୁଛି । ଜୀବ ଅଜ୍ଞାନର ବଶୀଭୂତ ହୋଇ ଚୌରାଅଶୀ ଲକ୍ଷ ଯୋନି ଭ୍ରମଣ କରୁଛି; କିନ୍ତୁ ତାହାର ଅଜ୍ଞାନ ନାଶ ହେଉ ନାହିଁ । ଯେ ପର୍ଯ୍ୟନ୍ତ ଅଜ୍ଞାନ ରହୁଛି, ସେ ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁର ଚକ୍ରରେ ଘୂରିବାକୁ ପଡ଼ୁଛି । ଏହି ଜନ୍ମ ମରଣର ଚକ୍ର ସେତେବେଳେ ସମାପ୍ତ ହେବ । ଯେତେବେଳେ ଏହି ପ୍ରାଣୀଙ୍କର କର୍ଣ୍ଣପୁଟରେ ମହାପୁରୁଷଙ୍କ ବାଣୀରେ ପ୍ରକାଶ ପାଉଥିବା ଆପଣଙ୍କର ଚରଣାରବିନ୍ଦର ମହିମା ରୂପକ ସୁଧା ଭରିଯିବ । ଏଥିରେ ହୃଦୟ ପରିପ୍ଲାବିତ ହେବ । ଯିଏ ଏହି ସରସ ସୁଧା ପ୍ରେମପୂର୍ବକ ପାନ କରିଛି, ତାହାର କଦାପି ଅମଙ୍ଗଳ ହୋଇ ନ ପାରେ । ସେ ଜନ୍ମ ମୃତ୍ୟୁ ଚକ୍ରରୁ ଚିରଦିନ ପାଇଁ ଉଦ୍ଧାର ହୋଇପାରେ । ତେଣୁ ହେ ଦେବ ! ଆମେ ତ ଆପଣଙ୍କର ପ୍ରତ୍ୟକ୍ଷ ଦର୍ଶନ ଏବେ କଲୁ ।"

ଭଗବାନ କହିଲେ—"ଧର୍ମରାଜ ! ଏବେ ସେ କଥା ଛାଡ଼ନ୍ତୁ, ଆପଣଙ୍କ ସମାଚାର ମୋତେ ଶୁଣାନ୍ତୁ, ବର୍ତ୍ତମାନ ଆପଣଙ୍କ ରାଜ୍ୟର ପରିସ୍ଥିତି କ'ଣ ? ଦୁର୍ଯ୍ୟୋଧନାଦି କୌରବଗଣ ଆପଣଙ୍କ ସହିତ କିପରି ବ୍ୟବହାର କରୁଛନ୍ତି ?"

ଧର୍ମରାଜ କହିଲେ—"ସେ ବିଷୟରେ ମୁଁ ଆପଣଙ୍କୁ କ'ଣ କହିବି ପ୍ରଭୋ ! ଆପଣ ସବୁକଥା ଜାଣନ୍ତି, ଆପଣ ସର୍ବଜ୍ଞ ଓ ସର୍ବାନ୍ତର୍ଯ୍ୟାମୀ ଅଟନ୍ତି । ଯେଉଁ ସମୟରେ

ସଂସାରରେ ଅଧର୍ମ ବୃଦ୍ଧି ଘଟେ; ସେତେବେଳେ ଆପଣ ଅବତୀର୍ଣ୍ଣ ହୋଇ ଦୁଷ୍ଟଜନ ସଂହାର ଓ ଶିଷ୍ଟଜନଙ୍କୁ ରକ୍ଷାକରି ଆସନ୍ତି । କାଳକ୍ରମେ ନଷ୍ଟ ହୋଇଥିବା ବେଦକୁ ରକ୍ଷା କରିବା ନିମିତ୍ତ ଆପଣ ନିଜର ଯୋଗମାୟାଙ୍କ ସହାୟତାରେ ମନୁଷ୍ୟ ଶରୀରରେ ଅବତାର ଧାରଣ କରନ୍ତି । ଆପଣ ପରମହଂସଙ୍କର ଏକମାତ୍ର ଗତି, ନିତ୍ୟାନନ୍ଦ ସ୍ୱରୂପ । ଆପଣ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ଏହି ତିନି ଅବସ୍ଥାର ଊର୍ଦ୍ଧ୍ୱରେ । ଆପଣ ଆନନ୍ଦମୟ, ଅଖଣ୍ଡ, ଅକୁଣ୍ଠିତ ଓ ବିଜ୍ଞାନସ୍ୱରୂପ ଅଟନ୍ତି । ଆପଣଙ୍କ ଚରଣରେ ପ୍ରଣାମ କରିବାରେ ହିଁ ଆମ୍ଭେମାନେ ନିଶ୍ଚିନ୍ତ ହୋଇଗଲୁ । ଆପଣ ଦୁଷ୍ଟମାନଙ୍କୁ ଦମନ କରିବେ ଓ ଶିଷ୍ଟଙ୍କୁ ସ୍ୱୟଂ ପାଳନ କରିବେ ।"

ଭଗବାନ କହିଲେ—ରାଜନ୍ : ଏ ପୃଥିବୀରେ ରାଜା ରୂପରେ ଅନେକ ଅସୁର ଉତ୍ପନ୍ନ ହୋଇଛନ୍ତି । ଯେପର୍ଯ୍ୟନ୍ତ ସେମାନଙ୍କର ସଂହାର ନହୋଇଛି, ସେ ପର୍ଯ୍ୟନ୍ତ ସଂସାରରେ ଶାନ୍ତି ସ୍ଥାପନ ହେବା ଅସମ୍ଭବ । ଏବେ ମୋର ଇଚ୍ଛା, ମୁଁ ଏବେ କିଛିଦିନ ପାଇଁ ଇନ୍ଦ୍ରପ୍ରସ୍ଥରେ ଆପଣଙ୍କ ପାଖରେ ଯାଇ ରହିବି ।"

ଧର୍ମରାଜ କହିଲେ—"ତାହାହେଲେତ ଆମ୍ଭମାନଙ୍କର ଅହୋଭାଗ୍ୟ ପ୍ରଭୋ ! ଆମ୍ଭେସବୁ ତ ଆପଣଙ୍କର ଯନ୍ତ୍ର, ଆପଣ ଆମ୍ଭମାନଙ୍କୁ ଯେପରି ଚଳାଇବେ, ସେପରି ଚାଲିବୁ ।"

ଭଗବାନ୍ କହିଲେ—"ରାଜନ୍ ! ଯେପର୍ଯ୍ୟନ୍ତ ଗୋଟିଏ ଗୋଟିଏ ଘୋର ଯୁଦ୍ଧ ନ ହୋଇଛି ସେ ପର୍ଯ୍ୟନ୍ତ ଶାନ୍ତି ଆସି ପାରିବ ନାହିଁ । ସର୍ବତ୍ର ରାଗ, ଦ୍ୱେଷ, କଳହ ଓ ଦମ୍ଭର ପ୍ରାବଲ୍ୟ ହୋଇ ଯାଇଛି । ଜଣା ପଡ଼ୁଛି ଏ ବସୁନ୍ଧରା ରକ୍ତ ପିପାସୁ ହୋଇଛନ୍ତି । ମୁଁ ଅନୁଭବ କରୁଛି, ନିକଟ ଭବିଷ୍ୟତରେ ଏହି କୁରୁକ୍ଷେତ୍ରରେ ଏକ ମହାନ୍ ଯୁଦ୍ଧ ହେବ । ସେହି ଯୁଦ୍ଧରେ ଭୂଭାର ଦେଇଥିବା ଅନେକ ଦୁଷ୍ଟ ମୃତ୍ୟୁବରଣ କରିବେ । ଏବେ ଆବଶ୍ୟକତାରୁ ଅଧିକ ସୈନ୍ୟଶକ୍ତି ବଢ଼ିଗଲାଣି । ପ୍ରତ୍ୟେକ ଜଣେ ଅନ୍ୟ ଜଣକୁ ପରାସ୍ତ କରିବାକୁ ଚାହିଁଲେଣି । ପ୍ରଜାମାନଙ୍କୁ ପୁତ୍ରଭଳି ପାଳିବା ପାଇଁ ବାସ୍ତବ ରାଜା ଖୁବ୍ କମ୍ ଅଛନ୍ତି । ଏବେ ସବୁ ରାଜା ଦସ୍ୟୁଙ୍କ ଭଳି ପ୍ରଜାଙ୍କ ସମ୍ପତ୍ତି ଲୁଟିବାରେ ଲାଗିଛନ୍ତି । ଯେପର୍ଯ୍ୟନ୍ତ ସେମାନଙ୍କର ସଂହାର ନ ହୋଇଛି, ସେ ପର୍ଯ୍ୟନ୍ତ କୌଣସି ସଜ୍ଜନ ସୁଖରେ ଶ୍ୱାସନେଇ ପାରିବେ ନାହିଁ । ଆଚ୍ଛା, କହନ୍ତୁ ଏବେ ତ ଆପଣ ଆସିଲେ, ପିଉସୀ ପ୍ରାତଃ କାଳରେ ଆସିଥିଲେ । ଦ୍ରୌପଦୀ କାହାନ୍ତି ?

ଅର୍ଜୁନ କହିଲେ—"ସେ ଭିତରକୁ ଯାଇଛନ୍ତି ।"

ଏହାଶୁଣି ଭଗବାନ୍ ହସି ହସି କହିଲେ—"ସବୁ ଲୋକ ନିଜ ସମାଜକୁ ପାଇ ଅବସ୍ଥାନ କରି ସୁଖି ହୁଅନ୍ତି । ଦେଖନ୍ତୁ ସେଥିପାଇଁ କପର ସେ ସ୍ତ୍ରୀଲୋକମାନଙ୍କ ନିକଟକୁ ଗଲେ ।"

ଧର୍ମଧ୍ୱଜ ସହଦେବଙ୍କୁ କହିଲେ—"ସହଦେବ ! ତୁମେ ଭିତରକୁ ଯାଇ ଦ୍ରୌପଦୀଙ୍କୁ ସୂଚନା ଦିଅ ଯେ, ଭଗବାନ୍ ଆସିଗଲେଣି । ସେ ଆସି ତାଙ୍କୁ ପ୍ରଣାମ କରି ଯାଆନ୍ତୁ ।"

ଭଗବାନ୍ ସଙ୍ଗେ ସଙ୍ଗେ କହିଲେ—"ନା, ତାଙ୍କୁ ଏଠାକୁ ଡାକିବା ଦରକାର ନାହିଁ, ମୁଁ ନିଜେ ଭିତରକୁ ଯିବି । ସେ ଏଠାକୁ ସମସ୍ତଙ୍କ ସମ୍ମୁଖକୁ ଆସିଲେ ସଂକୋଚବୋଧ କରିବେ । ମୋର ତ ସବୁଠାରେ ଅବାଧ ପ୍ରବେଶ । ଆପଣମାନେ ବସନ୍ତୁ ମୁଁ ଭିତରକୁ ଯାଇ ସଙ୍ଗେ ସଙ୍ଗେ ଫେରି ଆସୁଛି ।" ଏହା କହି ଭଗବାନ୍ ଭିତରକୁ ଯାଇ ଦେଖିଲେ ଯେ, ସ୍ତ୍ରୀଲୋକମାନଙ୍କର ଖୁବ୍ ଭଲ ରକମ ଆଲୋଚନା ଚାଲିଛି । ସମସ୍ତେ ସୁନ୍ଦର ପାଲଙ୍କ ଉପରେ ବସି ପାନଖାଇ ପରସ୍ପର ମଧ୍ୟରେ ହସଖୁସି ହୋଇ କଥାବାର୍ତ୍ତା ହେଉଛନ୍ତି । ସମସ୍ତଙ୍କ ମଝିରେ ଦ୍ରୌପଦୀ ବସିଥାଆନ୍ତି । ତାଙ୍କୁ ଘେରିକରି ଭଗବାନଙ୍କର ଷୋଳ ସହସ୍ର ଏକଶହ ଆଠ ରାଣୀ ବସିଥାଆନ୍ତି । ଦ୍ରୌପଦୀ ଜଣକ ପରେ ଜଣେ ରାଣୀଙ୍କ ସଙ୍ଗେ କଥାବାର୍ତ୍ତା ହେଉଥାଅନ୍ତି । ସେହି ସଭା ମଧ୍ୟରେ କୌଣସି ବୟସ୍କ ସ୍ତ୍ରୀଲୋକ ନଥାନ୍ତି । ସମସ୍ତେ ବୋହୂ ଭୁଆସୁଣୀ । ଭଗବାନ୍ ଭିତରକୁ ଯିବାମାତ୍ରେ ସମସ୍ତେ ମୁଣ୍ଡରେ ଓଢ଼ଣା ଦେଲେ ଓ ଉଠି ଠିଆହେଲେ ।

ଦ୍ରୌପଦୀ ଲାଜ ଲାଜ ହୋଇ ଉଠିଯାଇ ଭଗବାନଙ୍କୁ ପ୍ରଣାମ କଲେ । ତାଙ୍କ ସଭାର ରଙ୍ଗ ଢଙ୍ଗ ହୋଇଗଲା । ସମସ୍ତେ ସାବଧାନ ହୋଇଯାଇ ଭଗବାନଙ୍କୁ ସମ୍ମାନ ପ୍ରଦର୍ଶନ କଲେ ।

ଭଗବାନ ଦ୍ରୌପଦୀଙ୍କୁ କହିଲେ—"କୁହ ପାଞ୍ଚାଳୀ ! ତୁମର ସମସ୍ତ କୁଶଳ ତ ? ମୁଁ ଅସମୟରେ ଆସି ତୁମ୍ଭମାନଙ୍କ କଥାବାର୍ତ୍ତାରେ ବିଘ୍ନ କଲି । ମୁଁ ଏହିପରି ତୁମ ସହିତ ସାକ୍ଷାତ ଉଦ୍ଦେଶ୍ୟରେ ଚାଲି ଆସିଲି । ଏବେ ତୁମେ ଯେପରି କଥାବାର୍ତ୍ତା ହେଉଥିଲ ହୁଅ, ମୁଁ ଏବେ ଯାଉଛି ବାହାରେ ଦେଖା କରିବି । ପରେ ଦେଖାହେବ ।" ଏହା କହି ଭଗବାନ୍ ସେଠାରୁ ଫେରି ଆସିଲେ । ଭଗବାନ ଫେରି ଯିବାରୁ ସମସ୍ତେ ବସି ପୁଣି ହସ ଖୁସିରେ ମଧୁର ଆଲୋଚନା କରିବାରେ ଲାଗିଲେ ।

ଶୌନକ ପଚାରିଲେ—"ହେ ସୂତ ! ଦ୍ରୌପଦୀଙ୍କ ସହିତ ଭଗବାନଙ୍କର ପତ୍ନୀଗଣ କି କି କଥାବାର୍ତ୍ତା ହେଉଥିଲେ ? ଆମ୍ଭମାନଙ୍କୁ ତାହା ମଧ୍ୟ କହନ୍ତୁ । ସେମାନଙ୍କ

ହସ୍ତ ଖୁସି ହୋଇ କେଉଁ ବିଷୟରେ ଆଲୋଚନା କରୁଥିଲେ ତାହା ଶୁଣିବାକୁ ଆମେ ଚାହୁଁଛୁ ।"

ଏହାଶୁଣି ସୂତ କହିଲେ—"ମହାରାଜ ! ସ୍ତ୍ରୀମାନେ ଅନେକ କଥାବାର୍ତ୍ତା କରିଥାନ୍ତି । ସେମାନଙ୍କର କଥାବାର୍ତ୍ତା ତିନୋଟି ବିଷୟ ଉପରେ ସାଧାରଣତଃ ଆଧାରିତ । ପ୍ରଥମତଃ ନିଜ ପତିଙ୍କ ସ୍ୱଭାବ ବିଷୟରେ, ଦ୍ୱିତୀୟରେ ନିଜର ବିବାହ ବିଷୟରେ ତଥା ବସ୍ତ୍ର ଆଭୂଷଣ ବିଷୟରେ ଓ ତୃତୀୟରେ ନିଜ ନିଜର ଘର କରଣା ବିଷୟରେ । ଏଠାରେ ସେମାନେ ଯଦି ନିଜ ନିଜର ବିବାହ ବିଷୟରେ କଥାବାର୍ତ୍ତା ହେଉଥିଲେ । ଆପଣମାନେ ତ୍ୟାଗୀ ମହାତ୍ମା ହୋଇ ସ୍ତ୍ରୀଲୋକମାନଙ୍କ ବିବାହ ବିଷୟରେ କ'ଣ ଶୁଣିବେ ?"

ଶୌନକ କହିଲେ—"ନା, ସୂତ ! ଯଦି ସାଧାରଣ ସଂସାରୀ ଲୋକଙ୍କ ବିବାହ ବିଷୟ ହୋଇଥାନ୍ତା, ତାହାହେଲେ ଆମେ ଶୁଣିବାକୁ ଚାହାନ୍ତୁ ନାହିଁ । ଭଗବାନଙ୍କର ପତ୍ନୀମାନେ ତ ଏହି କଥା କହୁଥିବେ ଯେ, ଭଗବାନ୍ ଆମ୍ଭମାନଙ୍କ ସହିତ କପରି ବିବାହ କଲେ ? ଏହା ତ ଭଗବାନଙ୍କ କଥା ପ୍ରସଙ୍ଗ ଅନ୍ତର୍ଗତ । ଭଗବାନଙ୍କ ବିବାହ କଥା ଶୁଣିବା ଦ୍ୱାରା ତ ପାପ ନାଶହୁଏ । ଆପଣ ଆମ୍ଭମାନଙ୍କୁ ସେହି କଥା କହନ୍ତୁ ।"

ସୂତ କହିଲେ—"ଆଚ୍ଛା, ଠିକ୍ ଅଛି ମହାରାଜ ! ଯେତେବେଳେ ଆପଣ ଆଜ୍ଞା ଦେଲେଣି, ମୁଁ ନିଶ୍ଚୟ ତାହା କହିବି । ଦ୍ରୌପଦୀ ଯେତେବେଳେ ସବୁ ରାଣୀଙ୍କୁ ସେମାନଙ୍କ ବିବାହ ବିଷୟରେ ପ୍ରଶ୍ନ କଲେ ଓ ସେମାନେ ଯେପରି ଉତ୍ତର ଦେଲେ, ସେହିକଥା ମୁଁ କହୁଅଛି ଆପଣମାନେ ମନଧ୍ୟାନ ଦେଇ ଶୁଣନ୍ତୁ ।"

## ଛପ୍ପୟ

ଇତ ଯଦୁନନ୍ଦନ ପାଣ୍ଡୁସୁତନ ସଁଗ ପ୍ରେମ ବଢ଼ାବେଂ ।
ଉତ ପାଞ୍ଚାଲୀ ପ୍ରଭୁପତ୍ନୀନ ସଁଗ ମିଲ ବତରାବେଂ ।।
ନିଜ ବିବାହ କୀ ବାତ୍ ଚଲଇ ସବ ଉକସାଇଂ ।
ପୂଛେଂ ସବତେଂ କହୈଂ ଯା କୃଷ୍ଣ ତୁମ କସ ଅପନାଇଂ ।।
ରୁକ୍ମିଣ ! ସତ୍ୟେ ! ଲକ୍ଷ୍ମଣେ ! ହେ ଭଦ୍ରେ ! ହେ ଜାମ୍ବବତୀ ।
ମିତ୍ରବିନ୍ଦେ ! ରୋହିଣୀ କହୋ, ଅପନାଇଂ କୈସେଂ ଜଗତପତି ।।

•

# ଦ୍ରୌପଦୀ ଓ ଶ୍ରୀକୃଷ୍ଣଙ୍କ ପତ୍ନୀଗଣ

ହେ ବୈଦର୍ଭ୍ୟଚ୍ୟୁତୋ ଭଦ୍ରେ ହେ ଜାମ୍ବବତି କୌଶଲେ ।
ହେ ସତ୍ୟଭାମେ କାଳିନ୍ଦି ଶୈବ୍ୟେ ରୋହିଣି ଲକ୍ଷ୍ମଣେ ॥
ହେ କୃଷ୍ଣପତ୍ନ୍ୟ ଏତନ୍ନୋ ବ୍ରୂତ ବୋ ଭଗବାନ୍ ସ୍ୱୟମ୍ ।
ଉପୟେମେ ଯଥା ଲୋକମନୁକୁର୍ବନ୍ ସ୍ୱମାୟୟା ॥*

(ଶ୍ରୀ ଭା. ୧୦ ସ୍କ. ୮୩ଅ. ୬-୭ ଶ୍ଳୋକ)

## ଛପ୍ପୟ

କୃଷ୍ଣା ତେଁ ସବ କହେଁ ବ୍ୟାହ କୀ ଅହଁସି କହାନୀ ।
ସତ ଅରୁ ସୋଲହ ସହସ ଆଠ ଶ୍ରୀହରି କୀ ରାନୀ ॥
ରୁକ୍ମିନି ନେ ନିଜ ହରନ ସତ୍ୟଭାମା ମନି ଚୋରୀ ।
ଜାମ୍ବବତୀ ନେ କହୀ ମିଲୀ ହର ତେଁ ଜ୍ୟୋଂ ଜୋରୀ ॥
କାଲନ୍ଦୀ ତପ କୀ କଥା, ସତ୍ୟା ନେ ବୃଷ ନାଥିବୋ ।
କହ୍ୟୋ ମିତ୍ରବନ୍ଦା ସ୍ୱୟଂ, ବଲପୂର୍ବକ ହଥିୟାୟବୋ ॥

ସ୍ତ୍ରୀ ଓ ପୁରୁଷଙ୍କ ଜୀବନରେ ଅନେକ ସୁଖଦ ଓ ଦୁଃଖଦ ପ୍ରସଙ୍ଗ ଆସିଥାଏ । ଏପରି ଅନେକ ଜୀବନ ପ୍ରସଙ୍ଗ ସମୟ ସମୟରେ ବିସ୍ମରଣ ମଧ୍ୟ ହୋଇଯାଏ । କିନ୍ତୁ ବିବାହ ଏପରି ଏକ ସରସ ପ୍ରସଙ୍ଗ ଯେ, ତାହା କେବେହେଲେ ଭୁଲି ହୁଏନାହିଁ ।

---

* କୃଷ୍ଣକାମିନୀଗଣ ବୃନ୍ଦ । ପ୍ରଚ୍ଛେ ଦ୍ରୌପଦୀ ବୋଲଇ ॥
ହେ ବଇଦର୍ଭି ରୂପଶୀଳେ । ହେ ଜାମ୍ବବତୀ କଉଶଲେ ॥
ହେ ସତ୍ୟଭାମା ରତ୍ନସୁତେ । ଶୈବ୍ୟା ଲକ୍ଷ୍ମଣା ଆଦି ଯେତେ ॥
ଭଦ୍ରା ରୋହିଣୀ ଆଦି କରି । ଷୋଳ ସହସ୍ର ଯେତେ ନାରୀ ॥
କେମନ୍ତେ କୃଷ୍ଣଙ୍କୁ ବରିଲ । ଏ ମାୟାବନ୍ତ ନନ୍ଦବଲ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ : ୮୯ ଅ.)

ଯେତେବେଳେ ଦୁଇଟି ହୃଦୟ ପରସ୍ପର ମିଳିଯାଏ, ସେ କାଳ ତ ଗଳିଯାଏ; କିନ୍ତୁ ତାହା ହୃଦୟରେ ସେହି କାଳର ମଧୁର ସ୍ମୃତି ରହି ଯାଇଥାଏ । ଯେପରି କି, ମିଶ୍ରୀ ଖାଇବା ସମୟରେ ତାହା ମିଠାଲାଗେ ଓ ପରେ ଯେତେବେଳେ ସେ କଥା ମନେପଡ଼େ, ସେତେବେଳେ ମୁଖରେ ପାଣି ଭରି ଆସେ । ଯଦି ବିବାହ ହେବାର ଅନୁରାଗରେ ଉଭୟଙ୍କ ଇଚ୍ଛା ଅନୁସାରେ ବିବାହ ହୋଇଥାଏ, ତାହାହେଲେ ତ ତାହାର ସ୍ମୃତି ଅତ୍ୟନ୍ତ ମଧୁର ହୁଏ । ସ୍ତ୍ରୀ ପୁରୁଷ ପରସ୍ପର ମିଳିତ ହୁଅନ୍ତି, ମନ ବିନୋଦ ପାଇଁ ଏପରି ସରସ ସୁଖଦ ପ୍ରସଙ୍ଗ ସେମାନେ ରଖି ଯାଆନ୍ତି, ଯାହାକି, ଅନ୍ତରର ସୁଖଦ ସ୍ମୃତିକୁ ଜାଗ୍ରତ କରେ । ଏଥିରେ ପ୍ରେମର ମଧୁରତା ଉତ୍ପନ୍ନ ହୁଏ । ଏଥିପାଇଁ ପତିପତ୍ନୀଙ୍କ ମିଳନର ସୁଖଦ ପ୍ରସଙ୍ଗକୁ ଅଧିକ ପରିପୁଷ୍ଟ କରିବା ପାଇଁ ସମବୟସ୍କ ସ୍ତ୍ରୀ ପୁରୁଷମାନେ ମନୋରଞ୍ଜନ ଆଦିରେ ଭାଗ ନିଅନ୍ତି । ଉତ୍ସବ, ପର୍ବ ଆଦିରେ ପରସ୍ପର ମଧ୍ୟରେ ଯେଉଁ ସମ୍ମିଳନ ହୁଏ, ତାହା ସାଧାରଣତଃ ଏପରି ପ୍ରେମପ୍ରସଙ୍ଗକୁ ସୁଖଦ କରାଇଥାଏ ।

ସୂତ କହିଲେ—"ମୁନିଗଣ ! ଶ୍ରୀକୃଷ୍ଣଙ୍କ ପତ୍ନୀଗଣଙ୍କ ସହିତ ଦ୍ରୌପଦୀ ପ୍ରେମପୂର୍ବକ ମିଳିତ ହୋଇ କୁଶଳ ସମାଚାର ପଚାରି ବୁଝିଲେ । ରୁକ୍ମିଣୀଙ୍କ ଦ୍ୱାରା ପ୍ରଥମେ ତ ସେ ପଚାରିଥିଲେ—"ଏମାନଙ୍କର ସବୁ ପୁଅ ଝିଅ କେତୋଟି କରି ?"

ରୁକ୍ମିଣୀ ହସି ହସି କହିଲେ—"ଆମର ଏମାନେ ତ ପାତର ଅନ୍ତର କରିବା ଜାଣନ୍ତି ନାହିଁ । ଯେପରି ବିବାହ ଉତ୍ସବ ଆଦିରେ ଖାଦ୍ୟପଦାର୍ଥ ପରସିବା ସମୟରେ ସମସ୍ତଙ୍କୁ ଚାରି ଚାରି ଲଡ଼ୁ, ଆଠ ଆଠ କଚୋଡ଼ି ଆଦି ସମଭାବରେ ପରସା ଯାଏ, ସେହିପରି ଆମ ସମସ୍ତଙ୍କର ଦଶ ଦଶ ପୁତ୍ର ଓ ଏକ ଏକ କନ୍ୟା । ପ୍ରଭେଦ ଏତିକି ଯେ, ତୁମର ପାଞ୍ଚପତି ଓ ପାଞ୍ଚ ପୁତ୍ର, କିନ୍ତୁ ଆମ୍ଭମାନଙ୍କର ଏକ ପତି ଓ ଆମ ସମସ୍ତଙ୍କର ଦଶ ଦଶ ପୁତ୍ର ।"

ଦ୍ରୌପଦୀ ହସି ହସି କହିଲେ—"ଭଉଣି ତୁମ୍ଭେମାନେ ତ ଜଗତ୍‌ପତିଙ୍କର ପତ୍ନୀ ? ଆମଠାରୁ ତୁମ୍ଭମାନଙ୍କର ଆହୁରି ଅଧିକ ପୁତ୍ର କନ୍ୟା ହେବା ଉଚିତ୍ । ମୁଁ ଆପଣମାନଙ୍କୁ ଏହା ପଚାରିବାକୁ ଚାହୁଁଛି ଯେ, ତୁମ୍ଭମାନଙ୍କର ଭଗବାନଙ୍କ ସହିତ କିପରି ବିବାହ ହେଲା ? ନିଜ ନିଜ ଇଚ୍ଛାରେ ତୁମ୍ଭେମାନେ ଭଗବାନଙ୍କୁ ବିବାହ କଲ ନା ଭଗବାନ ତୁମ୍ଭମାନଙ୍କୁ ବଳାତ୍କାରରେ ଧରିଆଣି ବିବାହ କଲେ ? ତୁମ୍ଭେମାନେ ମୋତେ ତୁମ୍ଭମାନଙ୍କ ବିବାହ କଥା କୁହ ।"

ଏହା ଶୁଣି ସେମାନଙ୍କ ମଧ୍ୟରୁ ପ୍ରଥମେ ଲକ୍ଷ୍ମଣା କହିଲେ—ନାନୀ ! ତୁମେ ପ୍ରଥମେ ତୁମର ପାଞ୍ଚ ପାଣ୍ଡବଙ୍କ ସହିତ କିପରି ବିବାହ ହେଲା, ଆମ୍ଭମାନଙ୍କୁ କୁହ ।"

ଏହା ଶୁଣି ଦ୍ରୌପଦୀ ସଙ୍କୋଚ କରି କହିଲେ—"ଭଉଣୀ ! ମୋ ବିବାହ ବୃତ୍ତାନ୍ତ ବଡ଼ ବିଚିତ୍ର । ମୁଁ କୌଣସି ମାନବୀସ୍ତ୍ରୀଙ୍କ ଉଦରରୁ ଉତ୍ପନ୍ନ ହୋଇ ନାହିଁ । ମୁଁ ଅଯୋନି ସମ୍ଭୂତା । ମୁଁ ଅଗ୍ନି କୁଣ୍ଡରୁ ଜାତ ହୋଇଥିଲି । ଯେତେବେଳେ ମୁଁ ବଡ଼ ହୋଇଗଲି, ସେତେବେଳେ ମୋର ପିତା ମହାରାଜ ଦ୍ରୁପଦ ମୋର ବିବାହ ମଧ୍ୟମ ପାଣ୍ଡବ ଗାଣ୍ଡୀବ ଧନୁର୍ଧାରୀ ଅର୍ଜ୍ଜୁନଙ୍କ ସହିତ କରିବାକୁ ଚାହିଁଥିଲେ । ସେତେବେଳେ ପାଣ୍ଡବମାନେ ଅଜ୍ଞାତବାସରେ ଛଦ୍ମରୂପରେ ରହୁଥିଲେ । ମୋର ପିତା ଏକ କୃତ୍ରିମ ମତ୍ସ୍ୟ ତିଆରି କରାଇ ପଣ କରିଥିଲେ ଯେ, ଏହାକୁ ଯିଏ ଶରବିଦ୍ଧ କରିପାରିବ, ମୋର କନ୍ୟାକୁ ସେ ବିବାହ କରିବ । ସାଧୁବେଶରେ ଗାଣ୍ଡୀବ ଧନୁର୍ଦ୍ଧାରୀ ଭରତ ସେହି ମତ୍ସ୍ୟକୁ ଶରବିଦ୍ଧ କଲେ । ସେ ମୋତେ ନେଇଗଲେ । ମୋର ଶାଶୁଘରେ ମୁଁ ଆସି ପହଞ୍ଚିବା କ୍ଷଣି ଘର ଭିତରେ ସେ ଥାଇ କହିଦେଲେ—"ଭିକ୍ଷାରେ ଆଜି ଯାହା ମିଳିଛି, ତାହା ତୁମେ ପାଞ୍ଚଭାଇ ବାଣ୍ଟି ନିଅ । ଏହା ପରେ ବେଦବ୍ୟାସ ଆସି ଆମ୍ଭମାନଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ଆମକୁ କହିଲେ । ସେ କହିଲେ—ପାଞ୍ଚାଳୀ ପଞ୍ଚ ପାଣ୍ଡବଙ୍କର ପତ୍ନୀ ହେବେ । ଏହାକୁ କେହି ଅନ୍ୟଥା କରିପାରିବେ ନାହିଁ । ତାଙ୍କ ଉପଦେଶରେ ସମସ୍ତେ ସମ୍ମତ ହୋଇ ମୋତେ ବିବାହ କଲେ । ମୁଁ ପଞ୍ଚ ପାଣ୍ଡବଙ୍କର ପତ୍ନୀ ହେଲି । ଏବେ ତୁମ୍ଭେମାନେ ନିଜ ନିଜ ବିବାହ ପ୍ରସଙ୍ଗ ମୋତେ କୁହ । ସର୍ବପ୍ରଥମେ ରୁକ୍ମିଣୀ ନାମୀ ତାଙ୍କ କଥା କହନ୍ତୁ ।"

ଏହା ଶୁଣି ରୁକ୍ମିଣୀ କହିଲେ—"ମୋର ବିବାହ ବି ଭଗବାନଙ୍କ ସହିତ ବିଚିତ୍ର ଭାବରେ ହୋଇଥିଲା । ମୁଁ ପ୍ରଥମେ ନାରଦଙ୍କ ଠାରୁ ଭଗବାନଙ୍କର ପ୍ରଶଂସା ଶୁଣିଥିଲି । ସେହିଦିନଠାରୁ ଭଗବାନଙ୍କ ରୂପ ମୋ ମନରେ ସ୍ଥାନ ଅଧିକାର କରିଥିଲା । ମୋର ପିତା ମୋ ଇଚ୍ଛା ବିରୁଦ୍ଧରେ ମୋତେ ଶିଶୁପାଳ ସହିତ ବିବାହ କରିଦେବାକୁ ଉଦ୍ୟତ ହୋଇ ବର ଓ ବରଯାତ୍ରୀଙ୍କୁ ଅଣାଇ ଥିଲେ । ମୋର ଅନୁରାଗ ବୁଝିପାରି ଭଗବାନ ସଙ୍ଗେ ସଙ୍ଗେ ଆସି ସମସ୍ତ ଅସ୍ତ୍ରଶସ୍ତ୍ରଧାରୀ ରାଜା ଓ ସୈନ୍ୟମାନଙ୍କ ଉପସ୍ଥିତିରେ ସେମାନଙ୍କ ପ୍ରତିରୋଧ ସତ୍ତ୍ୱେ ମୋତେ ସଙ୍ଗରେ ନେଇ ଆସିଲେ । ସମସ୍ତେ ଉପାୟ ଶୂନ୍ୟ ହୋଇ ତାହା ଦେଖିଲେ; କିନ୍ତୁ କେହି ପ୍ରତିରୋଧ କରିପାରିଲେ ନାହିଁ । ସେ ମୋତେ ଦ୍ୱାରକାପୁରୀକୁ ଆଣି ବିବାହ କରି ମୋର ମନୋକାମନା ପୂର୍ଣ୍ଣ କଲେ । ମୁଁ ସେହି ଅଚ୍ୟୁତଙ୍କର ଚରଣର ପାଇଁ ଦାସୀ । ଜନ୍ମଜନ୍ମାନ୍ତରରେ ମଧ୍ୟ ମୁଁ ଏହିପରି ଦାସୀ ହୋଇ ରହିବି । ତୁମେ ମୋତେ ଆଶୀର୍ବାଦ କର ଯେ, ସେହି ପୂଜିତ ପାଦପଦ୍ମକୁ ମୁଁ ସର୍ବଦା ପ୍ରେମପୂର୍ବକ ଯେପରି ପୂଜା କରୁଥାଏ ।' ଏହା କହି ରୁକ୍ମିଣୀ ଚୁପ୍ ହୋଇଗଲେ ।

ଏହାପରେ ଦ୍ରୌପଦୀ କହିଲେ—"ଭଉଣୀ ସତ୍ୟଭାମା ! ତୁମେ ବି ତୁମ ବିବାହ କଥା କୁହ ।"

ଏହା ଶୁଣି ସତ୍ୟଭାମା ସଂକୋଚରେ ସହିତ କହିଲେ—"ମୋର ପିତା ନିଜର କଳଙ୍କ ଛଡ଼ାଇବା ପାଇଁ ମୋତେ ଭଗବାନଙ୍କୁ ଦାନ କରିଥିଲେ । କାରଣ ମୋ ପିତାଙ୍କ ପାଖରେ ଏକ ସ୍ୟମନ୍ତକ ମଣି ଥିଲା, ତାଙ୍କ ଭାଇ ତାକୁ ପିନ୍ଧି ବନକୁ ଯାଇଥିଲେ । ବନ ମଧ୍ୟରେ ଗୋଟିଏ ସିଂହ ତାଙ୍କୁ ମାରିଦେଲା । ଏଥିପାଇଁ ପିତା ଅତ୍ୟନ୍ତ ଦୁଃଖୀ ହେଲେ । ଏହି ଦୁଃଖରେ ସେ କହି ବୁଲିଲେ ଯେ "ମୋ ଭାଇକୁ ଭଗବାନ ମାରିଦେଲେ । ଭଗବାନ ଯେତେବେଳେ ଏହା ଶୁଣିଲେ ସେ ଏହି ମିଥ୍ୟା ଅପବାଦରୁ ରକ୍ଷା ପାଇବା ପାଇଁ ବନକୁ ଗଲେ ଓ ଭଉଣୀ ଜାମ୍ବବତୀଙ୍କ ପିତା ଭଲ୍ଲୁକ ରାଜ ଜାମ୍ବବାନଙ୍କୁ ପରାସ୍ତ କରି ତାଙ୍କଠାରୁ ମଣି ଆଣି ମୋର ପିତାଙ୍କୁ ଦେଲେ । ଏହାପରେ ସେ ନିଜର ମିଥ୍ୟା କଳଙ୍କ ଦୂର କରିଦେଲେ । ତାଙ୍କ କଳଙ୍କ ତ ଦୂର ହେଲା । କିନ୍ତୁ ମୋ ପିତାଙ୍କ ଶିର ଉପରେ ଓଲଟା କଳଙ୍କ ଟୀକା ଲଗାଇ ଦିଆଗଲା । ମୋର ପିତା ଏଥିରେ ଡରିଗଲେ । ଭାବି ଭାବି ଶେଷକୁ ଏହା ସ୍ଥିର କଲେ ଯେ, ମୁଁ ମୋ କନ୍ୟାକୁ ଶ୍ୟାମସୁନ୍ଦରଙ୍କୁ ବିବାହ ଦେବି । ତାହାହେଲେ ମୋର କଳଙ୍କ ଦୂର ହୋଇଯିବ । ଯଦିଓ ମୋର ପିତା ମୋତେ ଅନ୍ୟଠି ବିବାହ କରିଦେବା ପାଇଁ ପୂର୍ବରୁ ସ୍ଥିର କରିଥିଲେ, କନ୍ୟା ପିତାଙ୍କ ଅଧୀନ ହୋଇଥିବାରୁ ମୋର କିଛି ଉପାୟ ନଥିଲା । ମୁଁ ଯେତେବେଳେ ଶୁଣିଲି ଯେ, ସେ ମୋତେ ଶ୍ୟାମସୁନ୍ଦରଙ୍କ ସହିତ ବିବାହ ଦେବାକୁ ଚାହୁଁଛନ୍ତି, ସେତେବେଳେ ମୁଁ ଅତ୍ୟନ୍ତ ପ୍ରସନ୍ନ ହେଲି । ମୋର ପିତା ମୋତେ ଶ୍ୟାମସୁନ୍ଦରଙ୍କ ସହିତ ବିବାହ କରିଦେଲେ । ପରବର୍ତ୍ତୀ କଥା ଅତ୍ୟନ୍ତ କାରୁଣିକ, ତେଣୁ ତାହା ମୁଁ ପରେ କେବେବେଳେ କହିବି ।" ଏହା କହି ସତ୍ୟଭାମା ନେତ୍ରରୁ ନୀର ଗଡ଼ାଇଲେ ।

ତାହାପରେ ଦ୍ରୌପଦୀ ଜାମ୍ବବତୀଙ୍କୁ ପଚାରିଲେ—"ଭଉଣୀ ! ତୁମ ବିବାହ କିପରି ହୋଇଥିଲା ?"

ଜାମ୍ବବତୀ କହିଲେ—"ନାନୀ ! ମୋର ପିତା ଚିରଞ୍ଜୀବୀ । ଶ୍ରୀ ରାମାବତାରରେ ମୁଁ ଏହି ଶ୍ୟାମସୁନ୍ଦରଙ୍କୁ ଯେତେବେଳେ ଦେଖିଥିଲି, ସେତେବେଳେ ମୁଁ ତାଙ୍କ ପାଦରେ ଆତ୍ମ ସମର୍ପଣ କରି ଦେଇଥିଲି । ସେତେବେଳେ ସେ ଅତ୍ୟନ୍ତ ସୁନ୍ଦର ଥିଲେ । କିନ୍ତୁ ସେହି ସୌନ୍ଦର୍ଯ୍ୟରସ ଆସ୍ୱାଦନ କରୁଥିଲେ ଏକମାତ୍ର ଭଗବତୀ ଜନକନନ୍ଦିନୀ ସୀତା । ଶ୍ରୀରାମ କେବଳ ତାଙ୍କୁ ହିଁ ବିବାହ କରିଥିଲେ । ମୋର ତା ପ୍ରାର୍ଥନା କରିଥିଲେ, ହେ ପ୍ରଭୋ ! ମୋର କନ୍ୟା ଆପଣଙ୍କର ଦାସୀ ହେବାକୁ ଇଚ୍ଛା କରୁଛି । ତାହାକୁ ଆପଣ ଗ୍ରହଣ କରନ୍ତୁ ।"

ସେତେବେଳେ ଶ୍ରୀରାମଚନ୍ଦ୍ର କହିଥିଲେ—"ମୁଁ ଏ ଅବତାରରେ ଏକପତ୍ନୀବ୍ରତ ନିୟମ ନେଇଛି । ଆଚ୍ଛା, ଠିକ୍ ଅଛି । ପରେ ଯେତେବେଳେ ମୁଁ ପ୍ରେମାବତାର ନେବି ସେତେବେଳେ ତୁମ କନ୍ୟାକୁ ବିବାହ କରିବି । ସେହିଦିନଠାରୁ ମୁଁ ଏହି ସରସ

ଅବତାରଙ୍କୁ ପ୍ରତୀକ୍ଷା କରି ରହିଥିଲି । ମୋର ପିତା ଗୁହା ମଧ୍ୟରେ ରହୁଥିଲେ । ସିଂହକୁ ମାରି ସେ ସ୍ୟମନ୍ତକ ମଣି ନେଇ ଆସିଥିଲେ । ସେହି ମଣିକୁ ଖୋଜି ଖୋଜି ଶ୍ୟାମସୁନ୍ଦର ଆମ ଗୁହା ମଧ୍ୟରେ ପ୍ରବେଶ କଲେ । ମୋର ପିତାଙ୍କର ନିଜ ବଳର ଅଭିମାନ ଥିଲା । ସେ ଭଗବାନଙ୍କୁ ଚିହ୍ନି ପାରିଲେ ନାହିଁ ଯେ, ମୋର ପ୍ରଭୁ ଶ୍ରୀରାମ ଏହି କୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇ ମଣି ଖୋଜିବାକୁ ଆସିଛନ୍ତି । ମୋର ପିତା ତାଙ୍କ ସହିତ ଅଠେଇଶ ଦିନ ଯୁଦ୍ଧ କଲେ । ସେହି ଯୁଦ୍ଧରେ ଭଗବାନ ମୋର ପିତାଙ୍କୁ ମାରି ପାରିଲେ ତ ନାହିଁ; କିନ୍ତୁ ତାଙ୍କ ଦର୍ପ ଦୂର କରିଦେଲେ । ଏବେ ମୋର ପିତା ଜାଣି ପାରିଲେ ଯେ, ଇଏ ହେଉଛନ୍ତି ମୋର ପ୍ରଭୁ ସେହି ରଘୁଦେନ୍ଦ୍ର । ଆଉ ତାଙ୍କର କ୍ରୋଧ କରିବାର କାରଣ ନ ଥିଲା । ତାଙ୍କ କ୍ରୋଧ ପ୍ରେମରେ ପରିଣତ ହୋଇଗଲା । ସେ ପ୍ରଭୁଙ୍କ ପାଦତଳେ ପଡ଼ି ମୋତେ ଅର୍ଘ୍ୟ ରୂପେ ତାଙ୍କୁ ଅର୍ପଣ କଲେ ଓ ଯୌତୁକ ଆକାରରେ ସେହି ମଣି ପ୍ରଦାନ କଲେ । ପ୍ରଭୁ ଏହିପରି ମୋର ଚିରଦିନର ଅଭିଳାଷ ପୂର୍ଣ୍ଣ କଲେ । ଏବେ ମୁଁ ତାଙ୍କ ଚରଣର ଏକ ତୁଚ୍ଛ ଦାସୀ ହୋଇ ରହିଛୁ ।"

ଏହାପରେ ଦ୍ରୌପଦୀ ସୂର୍ଯ୍ୟ ତନୟା କାଳିନ୍ଦୀଙ୍କୁ କହିଲେ—"ଭଉଣୀ ! ତୁମେ ବି ତୁମ କଥା ଶୁଣାଅ ।"

କାଳିନ୍ଦୀ କହିଲେ—"ନାନୀ ! ମୁଁ ନିଜକୁ ଉପଯୁକ୍ତ ବୋଲି ଭାବୁ ନଥିଲି ଯେ, ମୁଁ ଭଗବାନଙ୍କର ଏକ ପାଟରାଣୀ ହୋଇ ପାରିବି । କିନ୍ତୁ ମୋର ଇଚ୍ଛା ଥିଲା, ମୋତେ ଭଗବାନ ଯଦି ତାଙ୍କ ଭବନର ଗୋଟିଏ କିଙ୍କରୀ କରନ୍ତେ, ତାହାହେଲେ ମୋ ଜୀବନ ଧନ୍ୟ ହୁଅନ୍ତା । ଏଥିପାଇଁ ମୁଁ ମୋର ପିତା ଯମୁନା ନଦୀ ଭିତରେ ନିର୍ମାଣ କରିଥିବା ଏକ ଭବନରେ ରହି ତପସ୍ୟା କରୁଥିଲି । ମୋର ଅଭିପ୍ରାୟକୁ ଜାଣିପାରି ଶ୍ରୀହରି ତାଙ୍କର ସଖା ତଥା ତୁମ ପତି ଶ୍ରୀ ଅର୍ଜ୍ଜୁନଙ୍କ ଦ୍ୱାରା ମୋତେ ଡକାଇଲେ । ତାଙ୍କର ଚରଣ ସ୍ପର୍ଶ କରିବାକୁ ମୋର ଇଚ୍ଛା ଥିବାର ଜାଣି ସେ ମୋତେ ନିଜର କରିନେଲେ ଓ ମୋତେ ବିବାହ କଲେ । ନାନୀ ! ମୁଁ ତ ରାଣୀ ଫାଣୀ କିଛି ନୁହେଁ, ମୁଁ କିନ୍ତୁ ଭଗବାନଙ୍କ ଭବନର ଝାଡ଼ୁକାରିଣୀ । ମୁଁ ତାଙ୍କର ଭବନକୁ ପରିଷ୍କାର ପରିଚ୍ଛନ୍ନ ରଖିବା କାର୍ଯ୍ୟରେ ଦାସୀ ହୋଇ ରହିଛୁ ।"

ତାହାପରେ ଦ୍ରୌପଦୀ ମିତ୍ରବିନ୍ଦାଙ୍କୁ କହିଲେ—ଭଉଣୀ ! ତୁମେ ମଧ୍ୟ ନିଜ ବିବାହ କଥା ଶୁଣାଅ ।"

ମିତ୍ରବିନ୍ଦା କହିଲେ—"ନାନୀ ! ମୁଁ ତୁମକୁ କ'ଣ ବା କହିବି ? ମୋର ଭାଇ ମୁଁ ଶ୍ୟାମସୁନ୍ଦରଙ୍କୁ ବରଣ କରିବାକୁ ଆଦୌ ଚାହୁଁ ନ ଥିଲେ । ତାଙ୍କର ଇଚ୍ଛା ଥିଲା ମୋତେ ଦୁର୍ଯ୍ୟୋଧନ ସହିତ ବିବାହ ଦେବେ । ସେଥିପାଇଁ ମୋର ସ୍ୱୟମ୍ବର ହେଲା । ମୁଁ

ରହୁଁ ଥିଲି ମୋତେ କୌଣସି ପ୍ରକାରେ ଶ୍ୟାମସୁନ୍ଦର ମିଳନ୍ତୁ । ମୋର ଭାବକୁ ଜାଣି ଭଗବାନ ଅକସ୍ମାତ ସ୍ୱୟମ୍ବର ସଭାରେ ଉପସ୍ଥିତ ହୋଇ ସମସ୍ତ ରାଜାଙ୍କୁ ଓ ମୋର ଭାଇମାନଙ୍କୁ ପଛରେ ପକାଇ ମୋତେ ସିଂହ ଯେପରି ଶିକାର ନେଇ ପଳାଏ, ସେହିପରି ନେଇ ଦ୍ୱାରକା ପଳାଇ ଆସିଲେ । ଏଠାରେ ମୋର ବିବାହ ବିଧିବଦ୍ଧ ଭାବରେ ହେଲା । ଏବେ ମୁଁ ଭଗବାନଙ୍କ ଚରଣ ଧୋଇବା ପାଇଁ ଦାସୀ ହୋଇ ରହିଛି ଓ ନିତ୍ୟ ତାଙ୍କ ଚରଣ ପ୍ରକ୍ଷାଳନ କରୁଛି, ତାଙ୍କୁ ମୁଁ ଏହି ପ୍ରାର୍ଥନା କରୁଛି ଯେ, ଏହି କୈଙ୍କର୍ଯ୍ୟ ସେବା ମୋତେ ତାଙ୍କ ଚରଣରେ ଜନ୍ମଜନ୍ମାନ୍ତର ମିଳୁଥାଉ ।"

ଏହା ଶୁଣି ଦ୍ରୌପଦୀ କହିଲେ—"ସତ୍ୟା ! ତୁମେ ଏଥର ତୁମ ବିବାହ କଥା କୁହ ।"

ସତ୍ୟା କହିଲେ—"ନାମି ! ମୋର ପିତା ଅତ୍ୟନ୍ତ ମାରଣା, ହୃଷ୍ଟପୁଷ୍ଟ, ତୀକ୍ଷ୍ଣ ଶିଂଘ ବଳିଷ୍ଠ ସାତଟି ଷଣ୍ଢ ରାଜାମାନଙ୍କର ପୁରୁଷାର୍ଥ ପରୀକ୍ଷା କରିବାପାଇଁ ପାଳିଥିଲେ ।—

ସେ ପ୍ରତିଜ୍ଞା କରିଥିଲେ ଯେ, ଯିଏ ଏହି ସାତଟି ଷଣ୍ଢଙ୍କୁ ଧରି ତାଙ୍କ ନାକ ଫୋଡ଼ି ସେଥିରେ ଦଉଡ଼ି ଗଳାଇ ତାଙ୍କୁ ନଅତ କରି ପାରିବ, ତାଙ୍କ ସହିତ ମୋ କନ୍ୟାକୁ ମୁଁ ବିବାହ ଦେବି ।

ଭଗବାନ ମଧ୍ୟ ଏହି କଥା ଶୁଣିଥିଲେ । ସେ ମୋ ଅନ୍ତର କଥା ଜାଣିପାରିଲେ । ବ୍ରଜରେ ଥିବାବେଳେ ସେ ଷଣ୍ଢଙ୍କ ନାକ ଫୋଡ଼ିବା ଓ ରସିବାନ୍ଧ ଟାଣିବା କାର୍ଯ୍ୟ ଶିଖିଥିଲେ । ସେ ସଙ୍ଗେ ସଙ୍ଗେ ସାତଟି ଷଣ୍ଢଙ୍କୁ ଅପୂର୍ବକଳ ଗୋଟି ଗୋଟି କରି ନାକ ଫୋଡ଼ି ରସି ବାନ୍ଧିଦେଲେ ଓ ଛେଳିଛୁଆ ପରି ସେମାନଙ୍କୁ ନେଇ ବାନ୍ଧି ଦେଲେ । ତାଙ୍କ ପାଇଁ ଏହା ଏକ ଖେଳ ଥିଲା । ସେ ହସି ହସି ଅକ୍ଳେଶରେ ଏହି ଅସାଧ୍ୟ କାର୍ଯ୍ୟକୁ ସାଧି କଲେ । ମଝିରେ କେତେ ରାଜା ବିଘ୍ନ ଘଟାଇଲେ । ସେ ସେମାନଙ୍କୁ ମାରି ଚତୁରଙ୍ଗିଣୀ ସେନା ପିତାଙ୍କ ପ୍ରଦତ୍ତ ଯୌତୁକ ସହିତ ମୋତେ ନେଇ ଦ୍ୱାରକାପୁରୀକୁ ଚାଲି ଆସିଲେ । ସେହିଦିନଠାରୁ ମୁଁ ତାଙ୍କ ଚରଣ ସେବା କରୁଅଛି । ସମସ୍ତେ ତାଙ୍କର ରାଣୀ, କିନ୍ତୁ ମୁଁ ଏକ ତୁଚ୍ଛ ଦାସୀ । ତାଙ୍କୁ ମୁଁ ପ୍ରାର୍ଥନା କରୁଛି ଯେ, ଜନ୍ମ ଜନ୍ମାନ୍ତରର ଏହି ଦାସୀତ୍ୱ ମୋତେ ପ୍ରାପ୍ତ ହେଉଥାଉ ।"

ତାହାପରେ ଦ୍ରୌପଦୀ ଭଦ୍ରାଙ୍କୁ କହିଲେ—"ଭଉଣୀ ! ତୁମକୁ ଭଗବାନ କିପରି ଏଠାକୁ ଟାଣି ଓଟାଳି ଆଣିଲେ କୁହ ?

ଭଦ୍ରା ହସି ହସି କହିଲେ—"ନାମି ! ମୋ ପାଇଁ ଭଗବାନଙ୍କୁ ଟଣା ଓଟରା କରିବାକୁ ପଡ଼ି ନାହିଁ । ମୁଁ ତ ତାଙ୍କ ମାଉସୀ ଝିଅ । ମୋର ତାଙ୍କପ୍ରତି ଅତ୍ୟନ୍ତ ଅନୁରାଗ

ହୋଇଯାଇ ଥିଲି । ମୋ ପିତା କହିଲେ କିଛି ଚିନ୍ତା ନାହିଁ, ଘରଜ୍ୱାଁଇଁ ତ ଘରେ ରହିବ । ତେଣୁ ସେ ତାଙ୍କୁ ଡକାଇ ମୋତେ ବିଧିବଦ୍ଧ ତାଙ୍କୁ ପ୍ରଦାନ କଲେ । ତାଙ୍କୁ ଅକ୍ଷୌହିଣୀ ସେନା, ବହୁତ ଦାସ ଦାସୀ ଓ ଅନେକ ଯୌତୁକ ଦେଲେ । ଏବେ ମୁଁ ନିତ୍ୟ ତାଙ୍କ ଚରଣ ସେବାର ସୌଭାଗ୍ୟ ଲାଭ କରୁଛି । ତାଙ୍କୁ ମୋର ପ୍ରାର୍ଥନା ଯେ, ଜନ୍ମ ଜନ୍ମାନ୍ତରରେ ମୋତେ ଏହିପରି ସୌଭାଗ୍ୟ ମିଳୁଥାଉ । ଏଥିରେ ଜୀବର କଲ୍ୟାଣ ହୁଏ । ଏହା ହିଁ ପରମ ପୁରୁଷାର୍ଥ, ଏହା ହିଁ ଶ୍ରେଷ୍ଠ ଓ ଏହା ହିଁ ପ୍ରାପ୍ୟ ସ୍ଥାନ ।"

ଦ୍ରୌପଦୀ କହିଲେ—ଭଉଣୀ ଲକ୍ଷ୍ମଣା ! ତୁମେ ତ ମୋ ବିବାହ କଥା ମୋତେ ପଚାରିଥିଲ, ଏବେ ତୁମେ ତୁମ ବିବାହ କଥା କୁହ । ଅନ୍ୟମାନଙ୍କ ପରି ସଂକ୍ଷେପରେ ନ କହି ଲଜ୍ଜା ତ୍ୟାଗକରି ବିସ୍ତୃତ ଭାବରେ କୁହ । ତୁମେ ତ କଥା କହିବାରେ ଦକ୍ଷ ଭଳି ଜଣା ପଡୁଛି । ତେଣୁ ପ୍ରାଞ୍ଜଳ ଭାବରେ ସାହିତ୍ୟିକ ଢଙ୍ଗରେ ତାହା ବର୍ଣ୍ଣନ କର ।"

ଏହା ଶୁଣି ଲକ୍ଷ୍ମଣା ହସି ହସି କହିଲେ—"ନାନୀ ! ଆପଣ ତ ଆପଣଙ୍କ ବିବାହ କଥା ସଂକ୍ଷେପରେ କହିଲ । ଯଦି ଆପଣ ମୋ ବିବାହ କଥା ସମ୍ପୂର୍ଣ୍ଣ ଶୁଣିବାକୁ ଆଗ୍ରହ ପ୍ରକାଶ କଲେ, ତାହାହେଲେ କହୁଛି, ଶୁଣନ୍ତୁ । ଦେଖ ! ମୋ ଘରକୁ ନାରଦ ମୁନି ବାରମ୍ବାର ଆସୁଥିଲେ । ପିଲାଦିନେ ପିତାଙ୍କର ଅତି ଗେହ୍ଲାବସର ହୋଇ ଥିଲି । ଏପରିକି ସେ ରାଜଦରବାରରେ ମୋତେ କୋଳରେ ଧରି ବସୁଥିଲେ । ଦେବର୍ଷି ନାରଦ ଯେତେବେଳେ ଆମ ଘରକୁ ଆସୁଥିଲେ, ସେ ଭଗବାନଙ୍କ ଦିବ୍ୟ ଜନ୍ମ ଓ ଅଲୌକିକ ଲୀଳା ବର୍ଣ୍ଣନା କରୁଥିଲେ ଏବଂ ସ୍ତୁତିଅର ତାଙ୍କ ଭଜନ ଗାଇ ତନ୍ମୟ ହୋଇ ଯାଉଥିଲେ । ମୁଁ ଅବୋଧ ବାଳିକା ଥିଲି । ନାରଦଙ୍କ ମୁଖରୁ ଭଗବାନଙ୍କ ଚରିତ ଶ୍ରବଣ କରି ଅତ୍ୟନ୍ତ ଆନନ୍ଦିତ ହେଉଥିଲି । ମୋ ମନରେ ବାରମ୍ବାର ଏହି ପ୍ରଶ୍ନ ଉଠୁଥିଲା—"ଭଗବାନ ଶ୍ରୀନିବାସ କେତେ ସୁନ୍ଦର ହୋଇ ନଥିବେ ? ମୁଁ କିପରି ତାଙ୍କ ଦର୍ଶନ ପାଆନ୍ତି କି ?" ତାଙ୍କ କଥା ଭାବି ଭାବି ମୁଁ ତନ୍ମୟ ହୋଇଯାଉଥିଲି । ତା'ପରେ ଧୀରେ ଧୀରେ ମଦନମୋହନଙ୍କ ପ୍ରତି ମୋର ଅନୁରାଗ ବଢ଼ିବାକୁ ଲାଗିଲା । ମୁଁ ନିରନ୍ତର ଚିନ୍ତା କରୁଥିଲି—"ଲକ୍ଷ୍ମୀ ନିବାସ ସତେ କ'ଣ ମୋତେ ନିଜର କରିନେବେ ? ସେ କ'ଣ ମୋତେ ତାଙ୍କ ଚରଣରେ ଦାସୀ କରି ରଖିବେ ? ମୋର ଚିରକାଳର ଆଶା କ'ଣ ସେ ପୂର୍ଣ୍ଣ କରିବେ ? ନାନୀ ! ମୁଁ ଅଧିକ କ'ଣ କହିବି; ମୋର ଚିତ୍ତ ଭଗବାନ ବାସୁଦେବଙ୍କ ପ୍ରତି ଆସକ୍ତ ହେବାକୁ ଲାଗିଲା ।"

ମୋର ପୂଜ୍ୟ ପିତା ବି ମୋତେ ପ୍ରାଣଠାରୁ ବଳି ଅଧିକ ସ୍ନେହ କରୁଥିଲେ । ସଖୀଙ୍କ ଦ୍ୱାରା ମୋର ମନର ଭାବ ମୋ ମାତାଙ୍କୁ ବିଦିତ ହୋଇଗଲା । ମାତା ପିତାଙ୍କୁ ସବୁକଥା କହିଲେ । ମୋର ପିତା ମହାରାଜ ବୃହତ୍ସେନ ବଡ଼ ଚିନ୍ତିତ ହେଲେ । ତାଙ୍କୁ ଏକ ଉପାୟ ଦେଖାଗଲା । ସେ ସ୍ୱୟମ୍ବର କରିବାକୁ ସ୍ଥିର କଲେ । ଯେଉଁ ରାଜା ତାଙ୍କ

ପଣକୁ ପୂର୍ଣ୍ଣ କରିବେ, ସେହି ମୋର ପତି ହେବେ । ସେ ଏହିପରି ସ୍ଥିର କଲେ ଯେ, "ଭଗବାନ୍ ଶ୍ୟାମସୁନ୍ଦର ନିଶ୍ଚୟ ବଳ ଓ ବୀର୍ଯ୍ୟରେ ଶ୍ରେଷ୍ଠ । ତାଙ୍କ ପକ୍ଷେ କୌଣସି କାର୍ଯ୍ୟ ଅସାଧ୍ୟ ନୁହେଁ । ସେ ତାଙ୍କର ବଳବୀର୍ଯ୍ୟ ଓ ପରାକ୍ରମରେ ସମସ୍ତ ରାଜାଙ୍କୁ ପରାସ୍ତ କରି ମୋ କନ୍ୟାକୁ ବିବାହ କରିବେ । ଏହାଦ୍ୱାରା ତାଙ୍କର ଯଶ ବଢ଼ିବ, ମୋ କନ୍ୟାର ଖ୍ୟାତି ବଢ଼ିବ ଓ ମୋ ଜାତି କୁଟୁମ୍ବଙ୍କର ଗୌରବ ବଢ଼ିବ ।" ଏହିସବୁ କଥା ଚିନ୍ତା କରି ମୋର ପିତା ସେହି ଉପାୟ ସ୍ଥିର କଲେ ଯେଉଁ ଉପାୟକୁ ତୁମ ପିତା ତୁମ ସ୍ୱୟମ୍ବରରେ ଅର୍ଜ୍ଜୁନଙ୍କୁ ଜାମାତାରୂପେ ପାଇବା ପାଇଁ ସ୍ଥିର କରିଥିଲେ । ତୁମ ପିତା ଯେପରି ମତ୍ସ୍ୟକୁ ଶର ବିଦ୍ଧ କରିବାର ବ୍ୟବସ୍ଥା କରାଇଥିଲେ, ମୋର ପିତା ମଧ୍ୟ ସେହିପରି ତାଠାରୁ ଅଧିକ ବିଶେଷତ୍ୱ ପୂର୍ଣ୍ଣ ଏକ ବ୍ୟବସ୍ଥା କଲେ । ସେ ଆପଣଙ୍କ ପିତାଙ୍କ ପରି ଖମ୍ବ ଉପରେ ଥିବା ମତ୍ସ୍ୟକୁ ଖୋଲା ନ ରଖି ତା ଉପରେ ଏକ ଢାଙ୍କୁଣୀ ଦେଇଥିଲେ । ମତ୍ସ୍ୟଟି ଘୂରୁଥିବା ଚକ ଉପରକୁ ରହିଥିଲା ଓ ତଳେ ସେହିପରି ଜଳକୁଣ୍ଡ ରଖା ଯାଇଥିଲା । ମତ୍ସ୍ୟର ପ୍ରତିବିମ୍ବ କେବଳ ଜଳ ଭିତରେ ପଡୁଥିଲା । ସେହି ପ୍ରତିବିମ୍ବକୁ ଦେଖି ଉପରେ ଥିବା ମାଛର ମୁଣ୍ଡଟି କାଟି ଦେବାର ପଣ ରଖା ଯାଇଥିଲା । ଏହା ସାମାନ୍ୟ କାର୍ଯ୍ୟ ନଥିଲା; କିନ୍ତୁ ମୋର ପିତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ଶ୍ୟାମସୁନ୍ଦର ନିଶ୍ଚୟ ଲକ୍ଷ ଭେଦ କରି ମତ୍ସ୍ୟର ମୁଣ୍ଡକୁ କାଟି ପାରିବେ । ଅନ୍ୟକେହି ତାହା ପାରିବେ ନାହିଁ । ସେହି ସ୍ୱୟମ୍ବର ପାଇଁ ପିତା ସମସ୍ତ ରାଜାଙ୍କୁ ନିମନ୍ତ୍ରଣ କଲେ ।

ମୋ ସ୍ୱୟମ୍ବରର ସୁଖଦ ସମାଚାର ଶୁଣି ବିଭିନ୍ନ ରାଜ୍ୟରୁ ଅନେକ ରାଜା ସେନାଗଣ ସହ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ସ୍ୱୟମ୍ବର ସଭାକୁ ଆସିଲେ । ସେମାନେ ନିଜ ନିଜ ପୁରୋହିତଙ୍କୁ ସଙ୍ଗରେ ମଧ୍ୟ ଆଣି ଆସିଥିଲେ । ଦେବୀ ! ସେ ସମୟରେ ରାଜା ଓ ରାଜକୁମାର ବହୁତ ସଂଖ୍ୟାରେ ଆସି ପହଞ୍ଚିଥିଲେ । ଚତୁର୍ଦ୍ଦିଗରେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ସୈନ୍ୟଗଣ ଜଗି ରହିଥିଲେ । ତୂରୀ ବାଜୁଥିଲା, ଅପ୍ସରାଗଣ ନୃତ୍ୟ କରୁଥିଲେ । ମଙ୍ଗଳାଷ୍ଟକ ପାଠ କରାଯାଉଥିଲା । ପ୍ରଥମେ ମୋର ପିତାଙ୍କ ପୁରୀରେ ମୋତେ ବେଶଭୂଷା କରି ସଜାଇ ବସାଯାଇଥିଲା । ମୋ ପିତା ସେଦିନ ଖୁବ କାର୍ଯ୍ୟବ୍ୟସ୍ତ ଥିଲେ । ସେ ଆଗତ ରାଜାମାନଙ୍କର ସ୍ୱାଗତ ସତ୍କାରରେ ଯେପରି ତ୍ରୁଟି ନ ହୁଏ, ତାହା ଦେଖୁଥିଲେ । ଯେତେ ରାଜା ଆସିଥିଲେ ସମସ୍ତେ ମୋତେ ବିବାହ କରିବା ପାଇଁ ଇଚ୍ଛା କରୁଥିଲେ । ମୁଁ ସେମାନଙ୍କ ଭିତରୁ କାହାରିକୁ ଚାହୁଁ ନଥିଲି । ମୋ ମନରେ ତ ମଦନ ମୋହନଙ୍କର ମନମୋହିନୀ ମନୋହର ମୂର୍ତ୍ତି ବିରାଜମାନ କରିଥାଏ । ମୁଁ ନିରନ୍ତର ତାଙ୍କୁ ହିଁ ଚିନ୍ତା କରୁଥିଲି ।

ନାରୀ ! ଆଉ ଅଧିକ ବର୍ଣ୍ଣନା କରି କି ଲାଭ ? ସ୍ୱୟମ୍ବର ଦିନ ଶ୍ୟାମସୁନ୍ଦର ବି ଆସିଥିଲେ । ତାଙ୍କୁ ଦେଖି ମୋର ଆନନ୍ଦର ସୀମା ରହିଲା ନାହିଁ । ଆଶା କରୁଣା

ମଧ୍ୟରେ ମୁଁ ବ୍ୟାକୁଳିତ ହେଉଥିଲି । ସେ ମୋତେ ତାଙ୍କ ହୃଦୟରେ ଗ୍ରହଣ କରିବେ କି ନାହିଁ, ସେହି ଚିନ୍ତା ମୋ ମନରେ ଘାର ହେଉଥିଲା । ମୋ ହୃଦୟ ସାଗରରେ ତୀବ୍ର ହିଲ୍ଲୋଳ ଉଠୁଥିଲା । ସେତେବେଳର ମୋ ଦଶା ଅବର୍ଣ୍ଣନୀୟ ।

ସ୍ୱୟମ୍ବର ମଣ୍ଡପ ଅତ୍ୟନ୍ତ କାରୁକାର୍ଯ୍ୟ ମଣ୍ଡିତ ହୋଇ ସଜା ଯାଇଥିଲା । ସୁନ୍ଦର ସୁନ୍ଦର ସିଂହାସନମାନ ରଖା ଯାଇଥିଲା । ସବୁ ସିଂହାସନରେ ନିମନ୍ତ୍ରିତ ରାଜାମାନଙ୍କର ନାମ ଲେଖାଯାଇଥିଲା । ସମସ୍ତେ ଆସି ନିଜ ନିଜ ସିଂହାସନରେ ବସିଥିଲେ । ମତ୍ସ୍ୟବେଧ ସ୍ଥାନରେ ବଳୁଡ଼ ଧନୁବାଣ ରଖା ଯାଇଥିଲା । କ୍ରମାନୁସାରେ ରାଜାମାନେ ସେଠାକୁ ଯାଇ ଲକ୍ଷ୍ୟଭେଦ କରିବାକୁ ପ୍ରଯତ୍ନ କରିବାକୁ ଲାଗିଲେ । କେତେକ ରାଜା ଧନୁଷ ଉଠାଇ ପାରିଲେ ନାହିଁ ତ, କେତେକ ଉଠାଇ ମଧ୍ୟ ଗୁଣ ଚଢ଼ାଇବାରେ ଅସମର୍ଥ ହୋଇ ନିଜ ନିଜ ଆସନକୁ ଫେରି ଆସିଲେ । କେତେକ ରାଜା ବଳପୂର୍ବକ ଡୋରକୁ ଟାଣି ଅଳ୍ପ ବେଣୀରେ ଶିର ପର୍ଯ୍ୟନ୍ତ ଉଠାଇଲେ; କିନ୍ତୁ ହାତରେ ଭିଡ଼ିଲା ବେଳକୁ ଡୋର ଛୁଟିଗଲା ଓ ଧନୁଷ ଆଘାତରେ ଚିତ୍‌ପଟାଙ୍ଗ ହୋଇ ପଡ଼ିଗଲେ । ସେମାନେ ଚେତା ହେବାକୁ ନିଜ ନିଜ ଆସନରେ ଆସି ବସିଲେ । ତାଙ୍କୁ ଦେଖି ଅନ୍ୟ ରାଜାମାନେ ହସୁଥିଲେ । ଲଜ୍ଜାରେ ସେମାନେ କାହାର ମୁହଁକୁ ଚାହିଁ ପାରିଲେ ନାହିଁ । ଯେଉଁ ରାଜାମାନଙ୍କର ନିଜ ନିଜ ବଳବୀର୍ଯ୍ୟ ଅଧିକ ବୋଲି ଅତ୍ୟନ୍ତ ଅଭିମାନ ଥିଲା, ସେମାନେ ଏହି ଧନୁଷ ଧରିବାକୁ ଆସିଲେ । ସେମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ, କର୍ଣ୍ଣ, ଜରାସନ୍ଧ, ଶିଶୁପାଳ, ଅମ୍ବଷ୍ଠ ଓ ତୁମର ଦ୍ୱିତୀୟ ପତି ଭୀମସେନ ଆଦି ମୁଖ୍ୟ ଥିଲେ । ଏହି ବିଶ୍ୱ ପ୍ରସିଦ୍ଧ ବୀରମାନେ ଅତ୍ୟନ୍ତ ସାବଧାନତାର ସହିତ ଧନୁଷରେ ଡୋର ଭିଡ଼ି ତହିଁରେ ବାଣ ମଧ୍ୟ ଚଢ଼ାଇଲେ, କିନ୍ତୁ ଜଳରେ ମତ୍ସ୍ୟର ପ୍ରତିବିମ୍ବ ଦେଖି ଯେତେବେଳେ ସେମାନେ ବାଣ ଛାଡ଼ିଲେ ସେମାନେ ଲକ୍ଷ୍ୟଭ୍ରଷ୍ଟ ହେଲେ । ବାଣ ଯାଇ ଅନ୍ୟତ୍ର ବାଜିଲା ।

ସର୍ବଶେଷରେ ତୁମର ତୃତୀୟ ପତି ଅର୍ଜୁନ ଉଠିଲେ । ସମସ୍ତେ ଆଶା କରୁଥିଲେ ଯେ, ସେ ନିଶ୍ଚୟ ଲକ୍ଷ୍ୟଭେଦ କରିପାରିବେ । ମୁଁ ସେତେବେଳେ ସଖୀଗଣଙ୍କ ଗହଣରେ ବସି ଏହା ଦେଖୁଥିଲି । ସେତେବେଳେ ମୋର ମଧ୍ୟ ଭୟ ହେଉଥିଲା ଯେ ଯଦି ସେ ଲକ୍ଷ୍ୟଭେଦ କରନ୍ତି, ତାହାହେଲେ ମୋର ସବୁ ଆଶା ପାଣି ଫୋଟକା ପରି ମିଳାଇ ଯିବ ।"

ଦ୍ରୌପଦୀ ହସି ହସି କହିଲେ—"ତୁମେ ହତାଶ କାହିଁକି ହେଉଥିଲ, ସେ ଯଦି ଲକ୍ଷ୍ୟଭେଦ କରିଥାଆନ୍ତେ ତ ତୁମେ ମୋର ସପତ୍ନୀ ହୋଇଥାଆନ୍ତ, ମୋ ସଉତୁଣୀ ଧାଡ଼ିରେ ପଡ଼ି କ'ଣ ତୁମ ଉପଯୁକ୍ତ ହୋଇ ନଥାନ୍ତେ ?

ଲକ୍ଷ୍ମଣା ସଙ୍ଗେ ସଙ୍ଗେ କହିଲେ—"ନାନୀ ! ଏଠାରେ ଉପଯୁକ୍ତ ଅନୁପଯୁକ୍ତର ପ୍ରଶ୍ନ ଉଠୁନାହିଁ, ଏ ସଂସାରରେ କେହି ଉପଯୁକ୍ତ ନୁହନ୍ତି କି ଅନୁପଯୁକ୍ତ ନୁହନ୍ତି । ଭଲ

ମନ୍ଦ ମନୁଷ୍ୟ ମନ ଉପରେ ନିର୍ଭର କରେ । ଜଣେ ମନରେ ଯାହାକୁ ଭଲ ବୋଲି ଭାବେ, ଅନ୍ୟ ଜଣେ ତାକୁ ଘୃଣା କରେ । ମନୁଷ୍ୟ ଯେବେ ଯାହାକୁ ସବୁଠାରୁ ଭଲ ବୋଲି ମନରେ ସ୍ଥିର କରି ନେଇଥାଏ, ସେ ତାହାର ଗ୍ରହଣ ଯୋଗ୍ୟ । କିନ୍ତୁ ତାହାଙ୍କ ଅପେକ୍ଷା ଅନ୍ୟ ଯିଏ ଯେତେ ଅଧିକ ଭଲ ହୋଇଥିଲେ ମଧ୍ୟ ତା ଦୃଷ୍ଟିରେ ସେ ନ୍ୟୂନ । ବିଷର କୀଟକୁ ବିଷ ହିଁ ଭଲ ଲାଗେ । ଘରଚଟିଆ ଘାଟର ଜଳ ବିନ୍ଦୁକୁ ଗ୍ରହଣ ଅମୃତ ଥିଲେ ମଧ୍ୟ ତାକୁ ଚାହେଁ ନାହିଁ । ଚକୋର ଚନ୍ଦ୍ରମାଙ୍କୁ ହିଁ ଚାହିଁ ରହେ । ଯଦି ତ ସେ ଜାଣିଥାଏ ଯେ ଚନ୍ଦ୍ରମା ବହୁତ ଦୂରରେ, ତଥାପି ସେ ଚନ୍ଦ୍ରମାଙ୍କୁ ଭଲ ପାଉଥିବାରୁ ଦୂରତା ତାକୁ ଅତି ନିକଟ ଜଣାପଡ଼େ । ସେ କୌଣସି ଉପାୟରେ ତା ପ୍ରିୟ ସହିତ ମିଶିବା ପାଇଁ ଚେଷ୍ଟା କରୁଥାଏ । ଦେଖ ! ଚକୋର ଚନ୍ଦ୍ରଙ୍କୁ ଧନ୍ନୁଖରେ ଦେଖି ଯେତେବେଳେ ତାଙ୍କୁ ନ ପାଏ, ସେତେବେଳେ ଶ୍ମଶାନକୁ ଯାଇ ଜଳୁଥିବା ଚିତା ମଧ୍ୟରୁ ଅଗ୍ନି ନେଇ ଆସି ଖାଇବାରେ ଲାଗେ । ସେ ଅଗ୍ନି ଭକ୍ଷଣ କରି ସେହିଠାରେ ଭସ୍ମ ହୋଇଯିବାକୁ ଚେଷ୍ଟା କରେ । ଏହି କାରଣରୁ ଶ୍ମଶାନର ଭସ୍ମକୁ ଶିବ ନିଜ ଶରୀରରେ ଲଗାନ୍ତି ଓ ଶିବଙ୍କ ମସ୍ତକ ଉପରେ ଚନ୍ଦ୍ରମା ରହନ୍ତି । ତେଣୁ ମୁଁ ଭାବୁଥିଲି ସେହିପରି ଭସ୍ମ ହୋଇ ମୁଁ ମଧ୍ୟ ମୋ ପ୍ରିୟତମକୁ ପାଇ ପାରିବି ।”

ଏହା ଶୁଣି ଦ୍ରୌପଦୀ ହସି ହସି କହିଲେ—“ବାସ୍ତବରେ ତୁମେ ତ କବିତା ରଚନା କରିବାରେ ଲାଗିଗଲଣି । ହେ କୃଷ୍ଣଚନ୍ଦ୍ରଙ୍କ ଚକୋରୀ ! ଏବେ ତୁମ ସ୍ୱୟମ୍ବର କଥା କୁହ । ମୋ ପତିଙ୍କୁ ତୁମେ ଚାହୁଁ ନଥିଲ ବୋଲି ମୁଁ ବିଶ୍ୱାସ କଲି । ତାହାପରେ କ'ଣ ହେଲା ମୋତେ କୁହ । ତୁମ ଚନ୍ଦ୍ରଙ୍କର କିପରି ଉଦୟ ହେଲା, ମୁଁ ଶୁଣିବାକୁ ଚାହେଁ ।”

ଲକ୍ଷ୍ମଣା ହସି ହସି କହିଲେ—“ନା, ମୁଁ ସେକଥା କହୁ ନାହିଁ, ତୁମ ପତି ଅତ୍ୟନ୍ତ ବୁଦ୍ଧିମତ୍ତାର ସହିତ ବାଣ ନିକ୍ଷେପ କରିଥିଲେ । ଜଳରେ ମାଛର ପ୍ରତିବିମ୍ବ ଦେଖି ଲକ୍ଷ୍ୟର ସ୍ଥିତି ବି ଭଲଭାବେ ବୁଝି ପାରିଥିଲେ । ବାଣ ଲକ୍ଷ୍ୟ ସ୍ଥଳରେ ବାଜିଲା; କିନ୍ତୁ ତାକୁ ସ୍ପର୍ଶ କରି ଆଗକୁ ଚାଲିଗଲା । ତାହା ମତ୍ସ୍ୟ ଦେହରେ ବିଦ୍ଧ ହୋଇପାରିଲା ନାହିଁ ।

ଏବେ ଯେତେବେଳେ ସମସ୍ତେ ଶାନ୍ତ ହୋଇଗଲେ, ଆଉ କେହି ଉଠିଲେ ନାହିଁ । ସର୍ବଶେଷରେ ଶ୍ୟାମସୁନ୍ଦର ହସି ହସି ଉଠି ଆସିଲେ । ତାଙ୍କର ହସ ବିଶ୍ୱ-ବିମୋହକ ଥିଲା । ମୁଁ ସେତେବେଳେ ଧୀରସ୍ଥିର ହୋଇ ବସିଗଲି । ମୋର ଶରୀର ଥରୁଥିଲା । ଦେହରୁ ଝାଳ ବହି ପଡ଼ୁଥିଲା । ବାରମ୍ବାର ମୁଁ ମୋର ବିକମ୍ପିତ ଅଳକା-ବଳୀକୁ ସମ୍ଭାଳି ନେଉଥିଲି । ମୋର ଏପରି ଅବସ୍ଥା ଦେଖି ସଖୀମାନେ ମୁରୁକି ମୁରୁକି ହସୁଥିଲେ । ସେମାନେ ଫୁସୁ ଫୁସୁ ହୋଇ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଉଥିଲେ । ସେମାନଙ୍କ ଆଡ଼କୁ ମୋର ଧ୍ୟାନ ନଥିଲା । ମୁଁ ମାଧବଙ୍କ ମଧୁର ମୁଖ ମକରନ୍ଦକୁ ଭ୍ରମର

ହୋଇ ଅଙ୍ଗାଗ୍ର ସ୍ୱରରେ ପାନ କରୁଥିଲି । ଅଭିମାନୀ ରାଜାମାନେ ମନକୁ ମନ ଜଳଯାଉ-
ଥିଲେ । ମୋର ହିତୈଷୀମାନଙ୍କର ମୁଖକମଳ ବିକଶିତ ହୋଇ ଉଠୁଥିଲା ।
ମଦନମୋହନ ଅତ୍କ୍ଷଣରେ ଲୀଳାଛଳରେ ଧନୁଷକୁ ଉଠାଇ ତହିଁରେ ବାଣ ଚଢ଼ାଇଲେ ।
କ୍ଷଣକ ମଧ୍ୟରେ ଲକ୍ଷ୍ୟ ନିର୍ଣ୍ଣୟ କରି ଶର ନିକ୍ଷେପ କଲେ । ଶର ବାଜିବା ମାତ୍ରେ ମତ୍ସ୍ୟ
କଟିଯାଇ ଭୂମି ଉପରେ ପଡ଼ିଗଲା । ଲକ୍ଷ୍ୟଭେଦ ହେବାକ୍ଷଣି ସମସ୍ତଙ୍କ ମୁଖରୁ ଏକ ସଙ୍ଗେ
ଜୟ ଜୟ ଧ୍ୱନି ବାହାରି ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇଗଲା । ଆକାଶରେ ଦେବଗଣ ଦୁନ୍ଦୁଭି
ବାଦ୍ୟ ବାଦନ କଲେ ଓ ପାରିଜାତ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ । ସର୍ବତ୍ର ଆନନ୍ଦ
ଉଲ୍ଲାସ ଭରିଗଲା । ସେହି ସମୟରେ ମୋର ଦଶା ଯାହା ହୋଇଥିଲା, ତାହା
ବର୍ଣ୍ଣନାତୀତ । ଅନୁଭବୀ ହିଁ ତାହା କେବଳ ଅନୁଭବ କରିପାରିବେ ।

ସଖୀଗଣ ମୋତେ ଶୃଙ୍ଗାର କରି ସଜାଇ ଦେଲେ । ଅତି ସୁନ୍ଦର ରେଶମୀବସ୍ତ୍ର
ପିନ୍ଧିବାକୁ ଦେଲେ । ମୋର ଚୁଟିକୁ ଅତ୍ୟନ୍ତ କଳାପୂର୍ଣ୍ଣ ଢଙ୍ଗରେ ବାନ୍ଧି ଦେଲେ ।
ସେଥିରେ ରଙ୍ଗ ବେରଙ୍ଗ ପୁଷ୍ପ ଖୋସି ଦେଲେ । ସୁଗନ୍ଧିତ ଦିବ୍ୟ ପୁଷ୍ପର ମାଳା ମୋତେ
ପିନ୍ଧାଇ ଦେଲେ । ମୋତେ ସେମାନେ ସବୁପ୍ରକାର ସଜାଇ, ଷୋଡ଼ଶ ଶୃଙ୍ଗାର କରାଇ
ମଣ୍ଡପକୁ ନେବାଯୋଗ୍ୟ ବେଶ କରିଦେଲେ । ମୋର ମନ ପ୍ରାଣ ପୁଲକିତ ହୋଇ
ଉଠୁଥିଲା । ମୁଁ ନିଜକୁ ସଂଯତ କରି ନେଉଥିଲି । ଆଖିରେ ଲଜ୍ଜାଦେବୀ ଅଧିକାର ସାବ୍ୟସ୍ତ
କରିବାକୁ ବସିଲେ, ମୁଖର ମନ୍ଦ ମନ୍ଦ ହସକୁ ମୁଁ ଲୁଚି ରଖିବାକୁ ବାଧ୍ୟ ହେଲି । ମୁଁ
ସଖୀମାନଙ୍କ ଗହଣରେ ଝଟକି ଉଠୁଥିବା ମଣିମୟ ବିଜୟମାଳା ଧାରଣ କରି ନିଜ
ଚରଣର ନୂପୁରରେ ପଥକୁ ମୁଖରିତ କରୁଥିଲି । ତାହା ଶୁଣି ପରାଜିତ ନୃପତିଗଣଙ୍କ
ମନରେ କ୍ଷୋଭ, ଗ୍ଲାନି ଓ ଈର୍ଷା ଜାତ ହେଉଥିଲା । ମୁଁ ଲାଜ ଲାଜ ହୋଇ ସଙ୍କୋଚରେ
ମାଳାକୁ ଧରି ରଙ୍ଗଶାଳା ଆଡ଼କୁ ଅଗ୍ରସର ହେଲି ।

ମୋର ନୟନ ଉତ୍ତଯିବାକୁ ଚାହୁଁଥିଲା; କିନ୍ତୁ ମୁଖ ଉପରକୁ ଉଠାଇ ପାରୁ
ନଥିଲି । ସଖୀମାନଙ୍କ ସହାୟତାରେ ଶ୍ୟାମସୁନ୍ଦରଙ୍କର ସୁନ୍ଦର ସିଂହାସନ ସମୀପରେ ମୁଁ
କେତେବେଳେ ଯାଇ ପହଞ୍ଚିଗଲି, ତାହା ଜାଣି ପାରିଲି ନାହିଁ । ମୋ ମୁଖ ଆଗରେ ମୋ
କର୍ଣ୍ଣକୁଣ୍ଡଳର କମନୀୟ କାନ୍ତି ଝଲସି ଉଠୁଥିଲା । ତାହାକୁ ଘୋଡ଼ାଇ ଦେବାପାଇଁ ମୋର
କୁଟିଳ କେଶ ହଲି ହଲି ସେହି ସ୍ଥଳକୁ ଚାଲିଆସୁଥିଲା । ହାତରେ ତାହା ମୁଁ ସଙ୍ଗେ
ସଙ୍ଗେ ସଜାଡ଼ି ନେଉଥିଲି । କିନ୍ତୁ ସେଗୁଡ଼ିକ ବାରମ୍ବାର ଖସିଆସି ମୁଖମଣ୍ଡଳକୁ ଆବୃତ
କରି ଦେଉଥିଲେ । ମୋ ନିକଟରେ ଥିବା ଏକ ସଖୀ ମୋତେ ଧୀରେ ଚିମୁଟି ଦେଲା ।
ସେ ତରବର କରି ମୋ ମୁହଁକୁ ଉପରକୁ ଉଠାଇବା ମାତ୍ରେ ମୁଁ ତାକୁ ତାଡ଼ନା
କରିବା ଆଳରେ ହାସ୍ୟଯୁକ୍ତ କଟାକ୍ଷ ଭଙ୍ଗୀରେ ଚାହିଁଲି । ତାହାପରେ ସିଂହାସନରେ
ବସିଥିବା ସମସ୍ତ ରାଜାଙ୍କ ଆଡ଼େ ବହିରଙ୍ଗ ଦୃଷ୍ଟି ନିକ୍ଷେପ କରି ସମ୍ମୁଖକୁ ଚାହିଁବା ମାତ୍ରେ

ମୋ ସମ୍ମୁଖରେ ବରଗନମାନ କରଥିବା ବନମାଳୀଙ୍କୁ ଦେଖିପାରନ୍ତି । ତାଙ୍କୁ ଦର୍ଶନ କରିବା କ୍ଷଣି ମୋର ଚିତ୍ତ ଅନୁରାଗରେ ପରିପ୍ଳାବିତ ହୋଇ ଉଠିଲା । ମୋର ହସ୍ତଦ୍ୱୟ ସ୍ୱତଃ ଉପରକୁ ଉଠିଗଲା । ତାଙ୍କର କଣ୍ଠ ଦେଶରେ ମୋ ହସ୍ତର ମାଳା କେତେବେଳେ ଯେ ପଡ଼ିଗଲା, ମୁଁ ତାହା ଜାଣିପାରିଲି ନାହିଁ । ତାହା ମୁଁ ସେତେବେଳେ ଜାଣିଲି, ଯେତେବେଳେ କି ହଠାତ୍ ଏକସଙ୍ଗେ ମୃଦଙ୍ଗ, ପଣବ, ପଟହ, ଶଙ୍ଖ, ଭେରୀ ଓ ଆନକ ଆଦି ଅସଂଖ୍ୟ ମଙ୍ଗଳ ବାଦ୍ୟ ବାଜି ଉଠିଲା । ନର୍ତ୍ତକ-ନର୍ତ୍ତକୀ ନିଜ ନିଜର କଳା ପ୍ରଦର୍ଶନ କରିବାକୁ ଲାଗିଲେ । ଗାୟକମାନେ ସୁମଧୁର ଗାନ କଲେ ଓ ସୂତ, ମାଗଧ ବନ୍ଦୀ ଗଣ ସ୍ତୁତି ପାଠ କରିବାକୁ ଲାଗିଲେ । ମୁଁ ନୟନ ଭରି ଶ୍ୟାମସୁନ୍ଦରଙ୍କୁ ଦର୍ଶନ କଲି । ସେ ମଧ୍ୟ ତାଙ୍କର ବଡ଼ ବଡ଼ କମଳ ସଦୃଶ ଅନୁରାଗଭରା ନେତ୍ରରେ ମୋତେ ନିରୀକ୍ଷଣ କଲେ । ଯୁଗଳ ଆଖିର ମିଳନ ହେବା କ୍ଷଣି ମୋ ଆଖି ଅପେ ଆପେ ବୁଜି ହୋଇ ଆସିଲା । ମୁଁ ବାରମ୍ବାର ତାଙ୍କୁ ଦେଖିବାକୁ ଚାହୁଁଥିଲି; କିନ୍ତୁ ଦେଖି ପାରିଲି ନାହିଁ । ଏହି ସମୟରେ ରାଜସଭା ମଧ୍ୟରୁ ଚାରିଆଡ଼େ ଶୁଭିଲା—"ଦେଖ ! ସାବଧାନ ! ସାବଧାନ ! ରାଜକୁମାରୀଙ୍କୁ ଧର ଆଣ । ଗୋପାଳ ଯେପରି ରାଜକୁମାରୀଙ୍କୁ ନେଇ ନ ପାରେ ।" ଏହାପରେ ଅନେକ ରାଜା ଯାଚି ତୁଣ୍ଡ କରୁଥିଲେ ଓ ଅନେକ ଧାଇଁ ଆସୁଥିଲେ । କେତେକ ରାଜା ଆସି ମୋ ସମ୍ମୁଖରେ ଉପସ୍ଥିତ ହୋଇଗଲେ । ସେମାନେ ମୋତେ ଉଠାଇ ନେବାକୁ ଚାହୁଁଥିଲେ । ମୁଁ ସେଠାରେ କାଠ ପିତୁଳା ଭଳି ଠିଆ ହୋଇଥିଲି । ମୋତେ ଭୟ ଲାଗୁଥିଲା । ମୁଁ କୌଣସି ଉପାୟ ପାଇଲି ନାହିଁ । ମୋତେ ଭୟଭୀତ ହେଉଥିବାର ଦେଖି ଶ୍ୟାମସୁନ୍ଦର ସଙ୍ଗେ ସଙ୍ଗେ ଚତୁର୍ଭୁଜ ହୋଇଗଲେ । ମୋ ସମ୍ମୁଖରେ ସେ କମଳାନାଭଙ୍କ ସଦୃଶ ତାଙ୍କର ଦୁଇ ବିଶାଳ ଭୁଜ ସୃଷ୍ଟି କରି ସଙ୍ଗେ ସଙ୍ଗେ ଦୁଇ ଭୁଜରେ ମୋତେ ଉଠାଇ ନେଇ ନିଜର ଉତ୍ତମ ଚତୁଃ ଅଶ୍ୱ ବିଶିଷ୍ଟ ରଥରେ ବସାଇଦେଲେ ଓ ଦୁଇ ହାତରେ ଧନୁର୍ବାଣ ଧରି ମୋତେ ଧରିନେବାକୁ ଆସୁଥିବା ରାଜାମାନଙ୍କୁ ଅଟକାଇ ଦେଲେ ।

ସାନ୍ତ୍ୱନା ଦେବା ନିମିତ୍ତ ସେ ମୋତେ ଦୁଇ ହାତରେ ଧରିଥିଲେ ଓ ଅନ୍ୟ ଦୁଇ ହାତରେ ଧନୁର୍ବାଣ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ସେ ସଙ୍ଗେ ସଙ୍ଗେ ସାରଥୀକୁ ସଂକେତ ଦେଲେ । ମହାବୁଦ୍ଧିମାନ ଦାରୁକ ସାରଥୀ ସଙ୍କେତ ପାଇବା ମାତ୍ରେ ଭଗବାନଙ୍କର ସେହି ସୁବର୍ଣ୍ଣମଣ୍ଡିତ ଗରୁଡ଼ ଧ୍ୱଜ ବିଶିଷ୍ଟ ବିଶାଳ ରଥକୁ ଚାଳନା କଲା । ଗ୍ରାମ୍ୟସିଂହମାନେ ଯେପରି ଦୌଡ଼ି ଦୌଡ଼ି ଯାଇ ସିଂହକୁ ଧରିବାକୁ ଚାହାନ୍ତି, ସେହିପରି ଅନେକ ନୃପତି ଅସ୍ତ୍ରଶସ୍ତ୍ର ଧରି ଶ୍ୟାମସୁନ୍ଦରଙ୍କ ରଥ ପଛେ ପଛେ ଧାଉଁଥିଲେ । ନାନୀ ! ମୁଁ ତୁମକୁ କ'ଣ ଅବା କହିବି ତାଙ୍କର ସେହି ଚତୁରତା କଥା ? ସେ ଏଣେ ହସୁ ଥାଆନ୍ତି ଓ ତେଣେ ଧନୁରୁ ଶର ନିକ୍ଷେପ କରୁଥାଆନ୍ତି । ସେହି ଅମୋଘ ବାଣରେ କେତେକ ରାଜାଙ୍କର ହାତ କଟି ଯାଉଥାଏ ତ କେତେକଙ୍କର ଗୋଡ଼ କଟି

ଯାଉଥାଏ । ଆଉ କେତେକଙ୍କର ଗଣ୍ଡିରୁ ମୁଣ୍ଡ ଅଲଗା ହୋଇ ଯାଉଥାଏ । ତାଙ୍କ ବାଣ ତ ସମସ୍ତଙ୍କ ଦେହରେ ବାଜୁଥିଲା; କିନ୍ତୁ ସେହି ରାଜାମାନଙ୍କର ବାଣ ମଧ୍ୟରୁ ଗୋଟିଏ ହେଲେ ଏହାଙ୍କ ଶରୀରରେ ବାଜି ପାରୁ ନଥିଲା । କବଚ ଧାରଣ କରି ଧନୁଷରେ ସେ ଏପରି ବାଣ ଗୁଡ଼ାଏ ଆଆନ୍ତି ଯେ; ସତେ ଯେପରି ତାହା ଶ୍ରାବଣ ମାସରେ ଇନ୍ଦ୍ର ବୃଷ୍ଟି କରୁଛନ୍ତି । ସେହି ହତଭାଗ୍ୟ ନୃପତିଗଣ ଆଉ ଅଧିକକାଳ ପଛରେ ଗୋଡ଼ାଇ ନପାରି ସଙ୍ଗେ ସଙ୍ଗେ ପଛଘୁଞ୍ଚା ଦେଇ ଚାଲିଗଲେ ।

ରଥ ଖୁବ୍ ବେଗରେ ଦ୍ୱାରକାପୁରୀ ଅଭିମୁଖେ ଚାଲିଲା । ରଥ ଯେପରି ମାର୍ଗରେ ବୃକ୍ଷବୁଦାକୁ ପଛକୁ ପକାଇ ଆଗେଇ ଚାଲୁଥାଏ, ମୁଁ ସେହିପରି ନିଜର ପୂର୍ବ ସ୍ମୃତି ପଛକୁ ପକାଇ ଚାଲିଥାଏ । ଦ୍ୱାରକାପୁରୀର ବିଶାଳ ସୁବର୍ଣ୍ଣ ମଣ୍ଡିତ ଭବନଗୁଡ଼ିକ ଉପରେ ଧ୍ୱଜା ଉଡ଼ୁଥିବାର ମୋତେ ଦୂରରୁ ଦେଖାଗଲା । ଏହା ଦେଖି ମନମୟୂର ନୃତ୍ୟ କରିବାକୁ ଲାଗିଲା । ଶ୍ୟାମସୁନ୍ଦରଙ୍କ ସଙ୍ଗେ ରଥରେ ବସି ମୋତେ ଯେପରି ଆନନ୍ଦ ଲାଗୁଥିଲା, ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ । ନାନି ! ତୁମେ ଏଥିରୁ ମୋ ମନୋଭାବ ବୁଝିନିଅ । ସାୟଂକାଳରେ ସୂର୍ଯ୍ୟ ଯେପରି ଅସ୍ତାଚଳରେ ପ୍ରବେଶ କରନ୍ତି, ଦ୍ୱାରକାନାଥ ସେହିପରି ନିଜର ତ୍ରିଭୁବନ ପ୍ରଶଂସିତ ଦ୍ୱାରକାପୁରୀରେ ପ୍ରବେଶ କଲେ । ଆମେ ଦ୍ୱାରକାପୁରୀରେ ପହଞ୍ଚିବା ମାତ୍ରେ ଦାସୀମାନଙ୍କ ଦ୍ୱାରା ପରିବେଷ୍ଟିତ ଏକ ଭବ୍ୟ ଭବନରେ ମୁଁ ଯାଇ ରହିଲି, ଶ୍ୟାମସୁନ୍ଦର ଅନ୍ୟତ୍ର ଚାଲିଗଲେ । ସେହି ରାତି ମୁଁ ଯେପରି ବିକଳ ଭାବରେ କଟାଇଲି, ତାହା ମୁଁ ଜାଣେ ।

ପରଦିନ ମୋର ପୂଜ୍ୟପାଦ ପିତା, ଭାଇ, ସୁହୃଦ୍ ଓ ସମ୍ବନ୍ଧୀୟ ଲୋକମାନେ ଦ୍ୱାରକାରେ ଆସି ପହଞ୍ଚିଲେ । ଏଣେ ମୋର ଭାଇ ଆଦି ଆସି ମୋତେ ସଜାଇବାରେ ଲାଗିଥାଆନ୍ତି, ତେଣେ ଯାଦବଗଣ ଦ୍ୱାରକା ପୁରୀ ସାଜସଜ୍ଜା କରୁଥାଆନ୍ତି । ସେଥିରେ ଏତେ ରଙ୍ଗ ବିରଙ୍ଗୀ ସାନ ବଡ଼ ବିଚିତ୍ର ପ୍ରକାରର ଧ୍ୱଜା ଓ ତୋରଣ ଆଦି ସଜା ଯାଇଥାଏ ଯେ, ତାହାର ଛାୟାରେ ସୂର୍ଯ୍ୟ ମଧ୍ୟ ଦୃଷ୍ଟିଗୋଚର ହେଉ ନଥା'ନ୍ତି । ପୁରୀର ସମସ୍ତ ରାସ୍ତାଘାଟ ପରିଷ୍କାର ପରିଚ୍ଛନ୍ନ କରାଯାଇଥାଏ । ସମସ୍ତେ ଆନନ୍ଦରେ ବିଭୋର ହୋଇ ମହୋତ୍ସବରେ ମାତି ଥାଆନ୍ତି । ବେଦଜ୍ଞ ବ୍ରାହ୍ମଣମାନେ ବିଧିବଦ୍ଧ ଭାବରେ ମୋର ବିବାହ ଦ୍ୱାରକାନାଥଙ୍କ ସହିତ କରାଇଲେ । ମୋର ପିତା ନାନା ପ୍ରକାର ଅମୂଲ୍ୟ ବସ୍ତ୍ର ଆଭୂଷଣ, ଶଯ୍ୟା, ଆସନ, ପାତ୍ର ଓ ଅନ୍ୟାନ୍ୟ ଗୃହୋପକରଣ ଯୌତୁକ ଆକାରରେ ଆଣିଥିଲେ । ତାହା ଯଥା ସ୍ଥାନରେ ସଜା ହୋଇ ରହିଥାଏ । ପିତା ନାନାପ୍ରକାରର ଅନୁନୟ ବିନୟ କରି ଭଗବାନଙ୍କର ସମ୍ମାନ ପ୍ରଦର୍ଶନ କରୁଥାଆନ୍ତି । ପିତାଙ୍କର ମୁଁ ଅତ୍ୟନ୍ତ ଗେଲବସର ଝିଅ ଥିଲି, ପିତା ପ୍ରଭୁଙ୍କ ହସ୍ତରେ ମୋର ହସ୍ତରଖି ଏପରି ପ୍ରସନ୍ନ ହେଉଥାଆନ୍ତି ଯେ, ସତେ ଯେପରି ତାଙ୍କୁ ଅନେକ ଅମୂଲ୍ୟ ନିଧି ମିଳିଗଲା । ସେ ଆମର

ସେବା କରିବା ପାଇଁ ସହସ୍ର ସୁନ୍ଦରୀ ଦାସୀ, ସମସ୍ତ ପ୍ରକାରର ସୁଖ ସମ୍ପତ୍ତି, ହାତୀ, ଘୋଡ଼ା, ଓଟ, ବାଳୁଗୀ, ରଥ ଓ ପାଲିଙ୍କି ଆଦି ମୋ ବିବାହ ଉପଲକ୍ଷେ ଯୌତୁକ ଦେଇଥିଲେ । ମୁଁ ଏବେ ଭଗବାନଙ୍କର ପତ୍ନୀ ହୋଇଛୁ । ବରଯାତ୍ରୀମାନେ ନିଜ ନିଜ ଘରକୁ ଫେରିଗଲେ । ଦୁଇଦିନ ପର୍ଯ୍ୟନ୍ତ ଉତ୍ସବ ଚହଳରେ ପରିସମାପ୍ତି ଘଟିଲା । କିନ୍ତୁ ଆମର ପ୍ରେମ ସମାପ୍ତ ହେଲା ନାହିଁ । ସେତେବେଳେ ପ୍ରେମ ଦ୍ୱିଗୁଣିତ ହୋଇ ବଢ଼ିଗଲା । ନାନୀ ! ମୁଁ ମୋର ସୌଭାଗ୍ୟପ୍ରତି ଗର୍ବିତ । ଭଗବାନଙ୍କୁ ପତିରୂପେ ପାଇବା ସାଧାରଣ ପୁଣ୍ୟର ଫଳ ନୁହେଁ । ଆମେ ସବୁ ଭଉଣୀ ପୂର୍ବଜନ୍ମରେ ଅବଶ୍ୟ କୌଣସି ଘୋର ତପ କରିଥିଲୁ । କୌଣସି ବ୍ରତ, ଅନୁଷ୍ଠାନ ଆଦି କରିଥିଲୁ । ତାହା ପ୍ରଭାବରୁ ତ ଆମ୍ଭେମାନେ ଏହି ଆତ୍ମାରାମ, ଆପ୍ତକାମ, ସଚ୍ଚିଦାନନ୍ଦ ଘନ ଭଗବାନ ଶ୍ୟାମସୁନ୍ଦରଙ୍କର ଚରଣରେ ଦାସୀ ହୋଇ ପାରିଲୁ । ନାନୀ ! ମୁଁ କିଛି ଲେଖାପଢ଼ା କରି ନାହିଁ, କହିବାରେ ଯାହା ଭୁଲ୍ ହୋଇଥିବ, ତାହାକୁ ତୁମେ ମୋତେ ସାନ ଭଉଣୀ ଭାବି କ୍ଷମା କରିଦେବ ।"

ଏହା ଶୁଣି ଦ୍ରୌପଦୀ କହିଲେ—"ଭଉଣୀ ! ତୁମେ ତ ବଡ଼ ପଣ୍ଡିତା । ତୁମେ ତ ବଡ଼ ସରସ ଢଙ୍ଗରେ ନିଜର ବିବାହ କାହାଣୀ ମୋତେ ଶୁଣାଇଲ । ଭଗବାନ ତୁମ ସମସ୍ତଙ୍କୁ ସୁଖରେ ରଖନ୍ତୁ ।"

ତାହାପରେ ଦ୍ରୌପଦୀ ଷୋଳ ସହସ୍ର ଏକଶହ ରାଣୀଙ୍କୁ ଲକ୍ଷ୍ୟ କରି କହିଲେ—"ଭଉଣୀ ଗଣ ! ତୁମ୍ଭେମାନେ ମଧ୍ୟ ତୁମ ସମସ୍ତଙ୍କ ବିବାହ ବୃତ୍ତାନ୍ତ ଶୁଣାଅ ।"

ଏହା ଶୁଣି ସେମାନଙ୍କ ମଧ୍ୟରୁ ଯିଏ ସବା ବଡ଼ ରାଣୀ ଥିଲେ, ସେ କହିଲେ ନାନୀ ! ଏ ସମସ୍ତଙ୍କ ବୃତ୍ତାନ୍ତ ପୃଥକ ପୃଥକ ନୁହେଁ । ସମସ୍ତଙ୍କର ବୃତ୍ତାନ୍ତ ଗୋଟିଏ । ଆମେ ସମସ୍ତେ ଭଗବାନଙ୍କୁ ଏକ ସଙ୍ଗେ ବିବାହ କରିଛୁ । ପୃଥ୍ୱୀ ପୁତ୍ର ଭୌମାସୁର ଅତ୍ୟନ୍ତ ବଳବାନ ଥିଲା । ସେ ଆମ ସମସ୍ତଙ୍କୁ ଆମ୍ଭମାନଙ୍କ ପିତାମାନଙ୍କୁ ହରାଇ ନେଇ ଆସିଥିଲା । ସେ ଚାହୁଁଥିଲା, ଯେତେବେଳେ ବହୁତ ରାଜକନ୍ୟା ହୋଇଯିବେ, ସେତେବେଳେ ସେ ସମସ୍ତଙ୍କୁ ଏକ ସଙ୍ଗେ ବିବାହ କରିବ । ଏହି ସମାଚାର ଶୁଣି ଶ୍ୟାମସୁନ୍ଦର ତା ପୁରକୁ ଗଲେ ଓ ତାକୁ ମାରି ସେ ଆମ୍ଭମାନଙ୍କର ନିକଟକୁ ଗଲେ । ଆମ୍ଭମାନଙ୍କ ଇଚ୍ଛା ଜାଣିପାରି ସେ ପୂର୍ଣ୍ଣକାମ ହୋଇ ଥିବାରୁ ଆମ୍ଭମାନଙ୍କୁ ଆଦର ଦେଲେ । ଆମ୍ଭମାନଙ୍କର ପାଣିଗ୍ରହଣ କରି ସେ ଆମ୍ଭମାନଙ୍କୁ ନିଜ ଚରଣ ସେବା ପ୍ରଦାନ କରିଛନ୍ତି ! ଦେବୀ ! ଆମ୍ଭେମାନେ ସାମ୍ରାଜ୍ୟ ଇନ୍ଦ୍ରପଦ, ଅଥବା ଅନ୍ୟ ଦିବ୍ୟ ଲୋକ ଭୋଗ କିଛି ହେଲେ ଆଶା କରୁନାହୁଁ କିମ୍ବା ଅଣିମା, ଲଘିମା, ଗରିମା ଓ ମହିମା ଆଦି ସିଦ୍ଧି ବାଞ୍ଛା କରୁ ନାହୁଁ । ବ୍ରହ୍ମପଦ, ଐଶ୍ୱର୍ଯ୍ୟ, ସାଲୋକ୍ୟ, ସାରୂପ୍ୟ ସାମୀପ୍ୟ ଆଦି ମୋକ୍ଷ କାମନା ମଧ୍ୟ ଆମ୍ଭମାନଙ୍କର ନାହିଁ । ଆମେ ଏହି ଲକ୍ଷ୍ମୀନିବାସଙ୍କ ପାଦପଦ୍ମର ପରାଗକୁ ହିଁ ଚାହୁଁଛୁ, ଯାହା କି ଲକ୍ଷ୍ମୀଦେବୀଙ୍କ

ହୃଦୟର କେଶରର କର୍ଦ୍ଦମରେ ହଳଦୀ ବର୍ଣ୍ଣ ହୋଇ ଯାଇଛି । ସେହି ପୂଜନ ପଦ୍ମଗ ଯଦି ଆମ୍ଭମାନଙ୍କୁ ମିଳିଯାଏ ଓ ତାହାକୁ ଆମ୍ଭେମାନେ ନିଜ ନିଜ ମସ୍ତକରେ ଧାରଣ କରିପାରୁଁ, ତାହାହେଲେ ଆମ୍ଭମାନଙ୍କର ଜୀବନ ସଫଳ ହୋଇଯିବ ।

ଆମେ ଅନ୍ୟ କିଛି ଚାହୁଁନାହୁଁ । ଯେଉଁ ଚରଣରେ ଆମ ସ୍ୱାମୀ ବ୍ରଜରେ ମୋ ବତ୍ସା ପଛେ ପଛେ ବୁଲୁଥିଲେ, ଯାହାଙ୍କ ଇଚ୍ଛାକୁ ଗୋପୀ, ଗୋପାଳ, ଦୁବା ଅଥବା ଲତା ଆଦି ବ କାର୍ଯ୍ୟକାରୀ କରନ୍ତି, ସେହି ଚରଣରଜ ଆମ୍ଭମାନଙ୍କୁ ମିଳିଯାଉ । ନାନୀ ! "ମୁଁ ଆଉ କ'ଣ କହିବ ? ତୁମେ ଏହି ଆଶୀର୍ବାଦ ହିଁ ଆମ୍ଭମାନଙ୍କୁ ଦିଅ ।"

ସୂତ କହିଲେ—"ମୁନିଗଣ ! ଦ୍ରୌପଦୀ ଏହା ଶ୍ରବଣ କରି ଅତ୍ୟନ୍ତ ପ୍ରସନ୍ନ ହେଲେ ଓ ଭଗବାନଙ୍କ ପତ୍ନୀଗଣଙ୍କର ଭାଗ୍ୟକୁ ପ୍ରଶଂସା କରିବାକୁ ଲାଗିଲେ । ଯେତେବେଳେ ଦ୍ରୌପଦୀ ଭଗବାନଙ୍କ ପତ୍ନୀମାନଙ୍କ ସହିତ କଥାବାର୍ତ୍ତା ହେଉଥିଲେ ସେତେବେଳେ ସେଠାରେ କୌଣସି ଅତି ବୃଦ୍ଧା ସ୍ତ୍ରୀଲୋକ ନଥିଲେ । କିନ୍ତୁ ଭଗବାନଙ୍କ ବିବାହ କଥା ଶୁଣି କୁନ୍ତୀ, ଗାନ୍ଧାରୀ, ସୁଭଦ୍ରା ଓ ଅନ୍ୟ ରାଜପତ୍ନୀଗଣ ସେଠାକୁ ଆସିଗଲେ । ବ୍ରଜରେ ଗୋପିକାଗଣ ମଧ୍ୟ ଆସି ସେଠାରେ ବସିଗଲେ । ରୁକ୍ମିଣୀ ଆଦି ଭଗବାନଙ୍କର ସମସ୍ତ ପତ୍ନୀଙ୍କର ସର୍ବାନ୍ତର୍ଯ୍ୟାମୀ, ସର୍ବାତ୍ମା ଶ୍ୟାମସୁନ୍ଦରଙ୍କଠାରେ ଏପରି ପ୍ରେମବନ୍ଧନ ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ପ୍ରେମ କାରଣରୁ ସେମାନଙ୍କ ନେତ୍ରରୁ ସ୍ନେହାଶ୍ରୁ ବହିବାକୁ ଲାଗିଲା ଓ ସମସ୍ତେ ପ୍ରଭୁ ପତ୍ନୀମାନଙ୍କର ପ୍ରେମଭାବର ବାରମ୍ବାର ପ୍ରଶଂସା କରିବାକୁ ଲାଗିଲେ ।"

ଶୌନକ ପଚାରିଲେ—"ହେ ସୂତ ! ଆପଣ ତ ଡେରା ଭିତରେ ଥିବା ସ୍ତ୍ରୀ ଲୋକମାନଙ୍କ କଥା ଶୁଣାଇଲେ, ଏବେ ବାହାରେ ଥିବା ପୁରୁଷ ଲୋକଙ୍କ ସମ୍ବନ୍ଧରେ କିଛି କହନ୍ତୁ । ପାଣ୍ଡବ ଓ ଅନ୍ୟାନ୍ୟ ରାଜାଙ୍କ ସହିତ ଭଗବାନଙ୍କ କଥାବାର୍ତ୍ତା ହୋଇଥିଲେ ; ଭଗବାନଙ୍କୁ ଦର୍ଶନ କରିବାକୁ କେବଳ ରାଜାମାନେ ଆସିଥିଲେ ନା ଅନ୍ୟ କୌଣସି ମୁନି ଋଷି ଆସିଥିଲେ ?

ସୂତ କହିଲେ—"ମହାରାଜ ! ମୋଠାରୁ ଆପଣମାନେ ଭିତର ଓ ବାହାର ଯାହା କିଛି କଥା ଶୁଣିବାକୁ ମୋତେ ପଚାରିବେ, ତାହା ମୋର ଗୁରୁଦେବ ଭଗବାନ ଶୁକଙ୍କ କୃପାରୁ ହିଁ ମୁଁ ଆପଣମାନଙ୍କୁ କହିବ । ଭଗବାନଙ୍କୁ ଦର୍ଶନ କରିବା ପାଇଁ ମଧ୍ୟ ସମସ୍ତ ଶ୍ରେଷ୍ଠବଡ଼ ଲୋକମାନେ ଆସିଥିଲେ । ବହୁତ ମୁନି ଋଷି ମଧ୍ୟ ଆସିଥିଲେ । ଆପଣମାନେ ଯଦି ଶୁଣିବାକୁ ଇଚ୍ଛା କରୁଛନ୍ତି, ତାହାହେଲେ ମୁଁ ଅନ୍ତଃପୁରର କଥା ସମାପ୍ତ କରି ବାହାରର କଥା କହିବ ।"

ଶୌନକ କହିଲେ—"ହଁ, ସୂତ ! ଋଷିମାନଙ୍କର ରାଜା ଓ ଭଗବାନଙ୍କ ସହିତ ଯେଉଁ ଆଲୋଚନା ହୋଇଥିଲା, ତାହା ଏବେ ଆମ୍ଭମାନଙ୍କୁ କହନ୍ତୁ ।"

ସୂତ କହିଲେ—"ଠିକ୍ ଅଛି, ମହାରାଜ ! ଏବେ ମୁଁ ଆପଣମାନଙ୍କୁ ବ୍ୟାସାଦି ମୁନିଋଷିମାନଙ୍କ ସହିତ ଭଗବାନ ବାସୁଦେବଙ୍କର କୁରୁକ୍ଷେତ୍ରରେ ଯେଉଁ କଥାବାର୍ତ୍ତା ହୋଇଥିଲା, ତାହା କହୁଛି, ଆପଣମାନେ ତାହା ମନ ଧ୍ୟାନ ଦେଇ ଶୁଣନ୍ତୁ ।"

## ଛପ୍ପୟ

ଉଦ୍ଧାନେ ସଂକ୍ଷେପ ମାହିଁ ସବ ବାତ ବତାଇ ।
ପରମ ସରସତାଯୁକ୍ତ ଲକ୍ଷ୍ମଣା କଥା ସୁନାଇ ॥
ପୁନ ଜୋ ସୋଲହ ସହସ ଅଧିକଶତ ଛୁଭୂକୀ ପତନୀ ।
କହୀ ସବନ ଇକ ସଂଗ କଥା କରୁନାମୟ ଅପନୀ ॥
ହରି ପତ୍ନିନି ଅନୁରାଗ ଲଖି, ସବ ଅତି ଆନନ୍ଦିତ ଭଇଂ ।
ଭଗ୍ୟ ସରାହତ ସବନିକେ, ସବ ନିଜ ନିଜ ଡେରନି ଗଇଂ ॥

